# ଶିକ୍ଷକର ଜୀବନସ୍ମୃତି

## କାଶୀନାଥ ନାୟକ

**ପ୍ରକାଶକ**
ଶିକ୍ଷାସନ୍ଧାନ, ଏ-୧୨, ହାଉସିଂ ବୋର୍ଡ଼ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର -୭୫୧୦୦୩
ଫୋନ୍ : ୨୫୫୬୧୦୯ / ୨୫୫୦୬୫୬

ପ୍ରଥମ ପ୍ରକାଶନ : ଦୋଳପୂର୍ଣ୍ଣିମା, ୨୦୦୫

ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଭୁବନେଶ୍ୱର

ମୂଲ୍ୟ : ୭୫/-

# Sikshakara Jibanasmruti

author : Kasinath Nayak

Publisher:
Sikshasandhan, A-12, H.B.Colony
Baramunda, Bhubaneswar-751003
Tel: 2556109 / 2550656

Year of Publication : Dola Purnima, 2005

Printed at: Siksha Prakashani, Bhubaneswar

Price: 75/- only

# ସୂଚନା

ଓଡ଼ିଆ ଆତ୍ମଜୀବନୀ ସାହିତ୍ୟରେ ଏହି ଗ୍ରନ୍ଥ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ବୋଲି ମନେହୁଏ ।

ଓଡ଼ିଆରେ ଏଯାବତ୍ ପ୍ରକାଶିତ ଆତ୍ମଜୀବନୀର ସଂଖ୍ୟା ପ୍ରାୟ ଦେଢ଼ ଶହ। ପରିମାଣାତ୍ମକ ଦୃଷ୍ଟିରୁ ନହେଲେ ମଧ୍ୟ ଗୁଣାତ୍ମକ ଦୃଷ୍ଟିରୁ ଓଡ଼ିଆ ଆତ୍ମଜୀବନୀ ସାହିତ୍ୟ ସମୃଦ୍ଧ । ବହୁ ଲେଖକ, ରାଜନୀତିଜ୍ଞ, କଳାକାର, ବିଶ୍ୱବିଦ୍ୟାଳୟ ଅଧ୍ୟାପକ ସେମାନଙ୍କ ଆତ୍ମଜୀବନୀ ରଚନା କରିଛନ୍ତି । ମାତ୍ର କୌଣସି ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ ସ୍ୱୀୟ ଜୀବନାନୁଭୂତିକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ବୋଲି ଆପାତତଃ ମନେହୁଏ ନାହିଁ । ସୁନ୍ଦରଗଡ଼ ଜିଲ୍ଲାରେ ପ୍ରାଥମିକ ଶିକ୍ଷକତା କରିଥିବା କ୍ଷେତ୍ରବର ନାଏକଙ୍କ ଆତ୍ମଜୀବନୀ "କବିଙ୍କ ଜୀବନସ୍ମୃତି''ରେ ମାତ୍ର ସାତ /ଆଠ ପୃଷ୍ଠାରେ ତାଙ୍କ ଶିକ୍ଷକ ଜୀବନର ଅଭିଜ୍ଞତା ବର୍ଣ୍ଣିତ । କାଶୀନାଥ ନାୟକଙ୍କ ଜୀବନସ୍ମୃତି ଜଣେ ପ୍ରାଥମିକ ଶିକ୍ଷକଙ୍କ ଅନୁଭୂତିର ପ୍ରଥମ ପୁଙ୍ଖାନୁପୁଙ୍ଖ ବିବରଣୀ ।

କାଶୀନାଥ ନାୟକଙ୍କ ଜନ୍ମ ଭୁବନେଶ୍ୱର ନିକଟସ୍ଥ ଗୋବିନ୍ଦପୁର ଗ୍ରାମରେ, ୧୯୧୯ ମସିହାରେ । ମେଧାବୀ ଛାତ୍ର ଥିଲେ ମଧ୍ୟ ସୁଯୋଗ ଅଭାବରୁ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇ ପ୍ରାଥମିକ ଶିକ୍ଷକ ଭାବରେ ସେ ଦୀର୍ଘ ପଇଁଚାଳିଶିବର୍ଷ କାର୍ଯ୍ୟ କରିଛନ୍ତ – ମୁଖ୍ୟତଃ ନିମାପଡ଼ା ଓ ବାଲକାଟି ଅଞ୍ଚଳରେ। ଆତ୍ମଜୀବନୀ ରଚନା କରିବାର କଳ୍ପନା ତାଙ୍କର ନଥିଲା । ତାଙ୍କ ଜୀବନ ସଂପର୍କରେ ଅନ୍ୟମାନେ ଆଗ୍ରହୀ ହେବେ, ଏହା ସେ ବିଶ୍ୱାସ କରୁନଥିଲେ । କେତେକ ଛାତ୍ର ଓ ବନ୍ଧୁଙ୍କ ଅନୁରୋଧରେ କିନ୍ତୁ ସେ ନିଜ ସ୍ମରଣ ଶକ୍ତି ଉପରେ ନିର୍ଭର କରି ଆତ୍ମଜୀବନୀ ରଚନାରେ ପ୍ରବୃତ୍ତ ହେଲେ ପଞ୍ଚାଅଶୀ ବର୍ଷ ବୟସରେ। ୧୯୮୦ରେ ଶିକ୍ଷକ ଜୀବନରୁ ଅବସର ନେବା ପର୍ଯ୍ୟନ୍ତ ଅନୁଭୂତି ବର୍ଣ୍ଣନା କରିବା ପରେ ଆଉ ସେ ରଚନାରେ ଅଗ୍ରଗତି କରିପାରିଲେ ନାହିଁ – ଶାରୀରିକ ଅସୁସ୍ଥତା କାରଣରୁ ।

ଶିକ୍ଷକର ଜୀବନସ୍ମୃତିକୁ କିନ୍ତୁ ଏକ ସଂପୂର୍ଣ୍ଣ ଆତ୍ମଜୀବନୀ ଭାବରେ ଗ୍ରହଣ କରାଯାଇପାରେ । କାରଣ ଶିକ୍ଷକ ଜୀବନର ପୂର୍ଣ୍ଣାଙ୍ଗ ଅନୁଭୂତି ଏଥିରେ ଲିପିବଦ୍ଧ। ଅବଶ୍ୟ ଅବସର ପରେ କର୍ମଠ ରହି କାଶୀନାଥ ନାୟକ ବିଭିନ୍ନ ଗ୍ରନ୍ଥ ରଚନାରେ

ନିଜକୁ ନିୟୋଜିତ କରିଆସିଥିଲେ । କିନ୍ତୁ ଅବସର-ପରବର୍ତ୍ତୀ ଅନୁଭୂତି ସେ ଏ ଗ୍ରନ୍ଥରେ ଲିପିବଦ୍ଧ କରିପାରି ନାହାନ୍ତି ।

କାଶୀନାଥ ନାୟକ ଜଣେ ସାଧାରଣ ପ୍ରାଥମିକ ଶିକ୍ଷକ ବା ତାଙ୍କ ନିଜ ଭାଷାରେ 'ସରକାରୀ କର୍ମଚାରୀ' ନଥିଲେ । ମୂଳରୁ ସେ ଥିଲେ ଜଣେ ଗାନ୍ଧିବାଦୀ, ସ୍ୱାଧୀନଚେତା, ଆଦର୍ଶପରାୟଣ ବ୍ୟକ୍ତି । ଯେଉଁ ବିଦ୍ୟାଳୟରେ ସେ ଯୋଗ ଦେଉଥିଲେ, ସେ ବିଦ୍ୟାଳୟକୁ ସେ ନିଜ ଗୃହ ମନେକରୁଥିଲେ; ଛାତ୍ରଛାତ୍ରୀମାନଙ୍କୁ ସନ୍ତାନ ଭଳି ସ୍ନେହ କରୁଥିଲେ । ଏଭଳି ମନୋବୃତ୍ତି ପାଇଁ ତାଙ୍କ ଉପସ୍ଥିତି ବିଦ୍ୟାଳୟର ବାତାବରଣ ଓ କାର୍ଯ୍ୟକ୍ରମକୁ ପରିବର୍ତ୍ତିତ କରି ଦେଉଥିଲା । ବିଦ୍ୟାଳୟ ସମୟ ବାହାରେ ମଧ୍ୟ ଛାତ୍ରଛାତ୍ରୀମାନଙ୍କ ଗୃହକୁ ଯାଇ ସେ ସେମାନଙ୍କ ପାଠପଢ଼ାର ତତ୍ତ୍ୱାବଧାନ କରୁଥିଲେ – ସେଥିପାଇଁ କେବେ କୌଣସି ପାରିଶ୍ରମିକ ଗ୍ରହଣ କରୁନଥିଲେ । ଛାତ୍ରଛାତ୍ରୀମାନଙ୍କୁ ଉଦ୍ୟାନ କର୍ମ, ସଫେଇରେ ନିଯୁକ୍ତ କରୁଥିଲେ; ବିଭିନ୍ନ କୌଶଳ ଉଦ୍‌ଭାବନ କରି ଶିକ୍ଷାଦାନକୁ ଆକର୍ଷଣୀୟ କରୁଥିଲେ । ଛାତ୍ରଛାତ୍ରୀମାନଙ୍କ ପ୍ରତି କୌଣସି ଶାରୀରିକ ଦଣ୍ଡ ପ୍ରୟୋଗର ସେ ବିରୋଧୀ ଥିଲେ । ନିପଟ ମଫସଲ ଅଞ୍ଚଳରେ ନିରକ୍ଷର ଅଭିଭାବକମାନଙ୍କୁ ପ୍ରବର୍ତ୍ତାଉଥିଲେ ସେମାନଙ୍କ ପୁତ୍ରକନ୍ୟାମାନଙ୍କୁ ବିଦ୍ୟାଳୟକୁ ପଠାଇବା ପାଇଁ । ଦରିଦ୍ର ପିଲାମାନଙ୍କୁ ସେ ଯଥାସମ୍ଭବ ଆର୍ଥିକ ସହାୟତା ମଧ୍ୟ ପ୍ରଦାନ କରୁଥିଲେ ।

ପ୍ରାଥମିକ ଶିକ୍ଷାହିଁ ଯେକୌଣସି ଜାତିର ଉନ୍ନତିର ଭିତ୍ତିଭୂମି । ଅଥଚ ଆମ ଦେଶରେ ପ୍ରାଥମିକ ଶିକ୍ଷା ଯେ ଅବହେଳିତ, ଏହା ବୁଝାଇ କହିବାର ଆବଶ୍ୟକତା ନାହିଁ । କାଶୀନାଥ ନାୟକଙ୍କ କାର୍ଯ୍ୟକାଳରେ ଏହି ଶିକ୍ଷା ଯେ ଆହୁରି ଅବହେଳିତ ଥିଲା, ଏହା ତାଙ୍କ ଆତ୍ମଜୀବନୀ ପାଠ କଲେ ସ୍ପଷ୍ଟ ହୁଏ । ସେ ସମୟର ଶିକ୍ଷା ଓ ଶିକ୍ଷାୟତନ ସମ୍ପର୍କରେ ବହୁ ତଥ୍ୟ ପାଠକର ଗୋଚରକୁ ଆସେ । ଶିକ୍ଷା କ୍ଷେତ୍ରରେ ଅବଦାନପାଇଁ ସେ ରାଷ୍ଟ୍ରପତି ପୁରସ୍କାର ଏବଂ ଅଜସ୍ର ପ୍ରଶଂସା ଲାଭ କରିଥିଲେ, – ଏହା ଯେପରି ସତ୍ୟ, ଲକ୍ଷ୍ୟ ସାଧନ ପଥରେ ବହୁ ବାଧାବିଘ୍ନର ସମ୍ମୁଖୀନ ହେବା ସେହିପରି ସତ୍ୟ ।

କାଶୀନାଥ ନାୟକ ଜଣେ ସୁପରିଚିତ ପାଠ୍ୟପୁସ୍ତକ ଲେଖକ ତଥା ସାହିତ୍ୟିକ । ତାଙ୍କ ରଚିତ ସାହିତ୍ୟ, ଇତିହାସ, ଭୂଗୋଳ ଗ୍ରନ୍ଥ ଓଡ଼ିଶାର ଲକ୍ଷ ଲକ୍ଷ ଶିଶୁ ଅଧ୍ୟୟନ କରିଛନ୍ତି । ମୁଁ ଓ ମୋର ସମସାମୟିକମାନେ ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ଶ୍ରେଣୀ ଗୃହରେ ମୋତେ ସେ ପାଠ ପଢ଼ାଇନଥିଲେ ମଧ୍ୟ ତାଙ୍କ ରଚିତ ପାଠ୍ୟପୁସ୍ତକ ପଢ଼ି

ବିଦ୍ୟାଭ୍ୟାସ କରିଥିବାରୁ ସେ ମୋର ଗୁରୁ । ଉଲ୍ଲେଖ କରାଯାଇପାରେ, ପାଠ୍ୟପୁସ୍ତକର ଜାତୀୟକରଣ ହେବା ପୂର୍ବରୁ ଓଡ଼ିଶାର ସ୍ୱନାମଧନ୍ୟ ଲେଖକମାନେ ହିଁ ପାଠ୍ୟପୁସ୍ତକ ରଚନା କରୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ ମଧୁସୂଦନ ରାଓ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ନୀଳକଣ୍ଠ ଦାସ, କାଳିଚରଣ ପଟ୍ଟନାୟକ, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ରାମକୃଷ୍ଣ ନନ୍ଦ ପ୍ରଭୃତି ।

ପାଠ୍ୟପୁସ୍ତକ ବ୍ୟତୀତ କାଶୀନାଥ ନାୟକ ବହୁ କବିତା, ଉପନ୍ୟାସ, ଶିଶୁ ସାହିତ୍ୟ ରଚନା କରିଛନ୍ତି । ତାଙ୍କର ସମୁଦାୟ ପ୍ରକାଶିତ / ଅପ୍ରକାଶିତ ଗ୍ରନ୍ଥର ପରିମାଣ ପ୍ରାୟ ଚାଳିଶି । ସେଗୁଡ଼ିକ ସଙ୍କଳିତ ହୋଇ ପ୍ରକାଶିତ ହେବାର ଆବଶ୍ୟକତା ଅନୁଭୂତ ହେଉଛି ।

ଶିକ୍ଷକର ଜୀବନସ୍ମୃତିର କଥନଭଙ୍ଗୀ ସହଜ, ସ୍ୱଚ୍ଛ, ଶିକ୍ଷକସୁଲଭ । ଲେଖକଙ୍କ ଜୀବନର କେତେକ ତିକ୍ତ ଅନୁଭୂତି ଏଥିରେ ବର୍ଣ୍ଣିତ, କିନ୍ତୁ କାହାରି ପ୍ରତି ଦ୍ୱେଷଭାବ ପ୍ରକାଶିତ ହୋଇନାହିଁ । ଲେଖକଙ୍କ କର୍ମକ୍ଷେତ୍ର ସୀମିତ – ପୁରୀ ଜିଲ୍ଲାର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଶିକ୍ଷା ପ୍ରସାରରେ ତାଙ୍କର ସମସ୍ତ ଜୀବନ ନିୟୋଜିତ – କିନ୍ତୁ ଅନୁଭୂତିର ଗଭୀରତା, ବୃତ୍ତି ପ୍ରତି ପ୍ରତିବଦ୍ଧତା, ଛାତ୍ରଛାତ୍ରୀମାନଙ୍କ ପ୍ରତି ଅନାବିଳ ସ୍ନେହ ଓ ସହାନୁଭୂତି ପାଇଁ ଏ ଗ୍ରନ୍ଥଟି ଓଡ଼ିଆ ସାହିତ୍ୟରେ ଏକ ସ୍ମରଣୀୟ କୃତି ।

ଗଣେଶ୍ୱର ମିଶ୍ର
ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର
ଉତ୍କଳ ବିଶ୍ୱବିଦ୍ୟାଳୟ

ଯେଉଁ ଗ୍ରନ୍ଥ ମାନବ ଜୀବନର ଗତି ପଥକୁ ସରସ, ସୁନ୍ଦର ମାର୍ଜିତ ତଥା ଋଦ୍ଧିମନ୍ତ କରିବାରେ ପ୍ରେରଣାଦାୟକ ହୋଇଥାଏ, ଯାହାକୁ ପାଠକଲେ ହୃଦୟ ଯୁଗପତ୍ ହର୍ଷ, ବିଷାଦ, ଆଶ୍ଚର୍ଯ୍ୟ ଓ ଆବେଗ ସୃଷ୍ଟି କରିଥାଏ, ନିତ୍ୟ ନୂତନ ଶିକ୍ଷା ପ୍ରଦାନ କରି, ତଥା ଚରିତ୍ର ଗଠନରେ ପ୍ରମୁଖ ଭୂମିକା ଗ୍ରହଣର ମାର୍ଗ ପ୍ରସ୍ତୁତ କରିବାରେ ସହାୟକ ହୋଇଥାଏ, ତାହାହିଁ ବାସ୍ତବଧର୍ମୀ ଜୀବନୀ ସାହିତ୍ୟର ମାନ୍ୟତା ପ୍ରାପ୍ତ ହୋଇଥାଏ ।

ବିଶିଷ୍ଟ ବ୍ୟକ୍ତି, ମହାନ୍ ସାଧକ, ଅସାଧାରଣ ନିଃସ୍ୱାର୍ଥପର ଜନସେବା, ମହାନ ବୈଜ୍ଞାନିକଙ୍କ ଅକ୍ଳାନ୍ତ ସାଧନାର ଚମତ୍କାର ସଫଳତା, ସର୍ବସ୍ୱ ବିନିମୟରେ ଦେଶ-ମାତୃକାର ସେବାରେ ଜୀବନ-ଉତ୍ସର୍ଗ କରିବାର ଅଙ୍ଗୀକାରବଦ୍ଧତା ଏବଂ ସର୍ବୋପରି ମୁନୀ, ଋଷି ମାନଙ୍କର ତ୍ୟାଗପୂତ ଜୀବନର ଅଲୌକିକ ଏବଂ ଅସାଧାରଣ ସିଦ୍ଧିର ଚମତ୍କାରିତା ମାନବ ଜୀବନରେ ଗଭୀର ରେଖାପାତ କରିଥାଏ । ବିଶ୍ୱାସ ନହେଲେ ମଧ୍ୟ ଉଗ୍ର ସାଧନାଲବ୍ଧ ନାନା ଅଲୌକିକ ଘଟଣାବଳୀ ସଂପୂର୍ଣ୍ଣ ସତ୍ୟ ଉପରେ ଆଧାରିତ । ଏଣୁ ପ୍ରତ୍ୟେକ ଦିଗରୁ ଉପଯୁକ୍ତ ଜୀବନୀ ଗ୍ରନ୍ଥମାନ ମାନବକୁ ସତ୍‌ମାର୍ଗରେ ପରିଚାଳିତ କରିବାର ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା ରୂପେ ପ୍ରତିଭାତ ହୋଇଥାଏ ।

ସବୁ ମଣିଷର ଜୀବନ ଥିଲେ ମଧ୍ୟ ସେମାନଙ୍କର ଜୀବନ-ପ୍ରବାହର ଗତି ଜୀବନୀ ରୂପେ ଆଦୃତ ହୋଇନଥାଏ । ମାତ୍ର ଯେଉଁ କେତେକ ମହାପୁରୁଷ, ସିଦ୍ଧ ସାଧକ ଓ ଏକାନ୍ତ ଦେଶ ଓ ଜାତିପ୍ରାଣ ବ୍ୟକ୍ତି ମରି ମଧ୍ୟ ସବୁଦିନ ପାଇଁ ଅମର ହୋଇ ରହିଯାଇଛନ୍ତି, ସେମାନଙ୍କର ଜୀବନ ପ୍ରବାହର ଘଟଣାବଳୀରେ ସମୃଦ୍ଧ ଗ୍ରନ୍ଥ ଯୁଗେ ଯୁଗେ ଆଦୃତ ହୋଇଥାଏ ।

ପ୍ରତ୍ୟେକ ମାନବ ଜୀବନର ଗତିପଥ ଆଦୌ ସରଳ ରେଖା ଉପରେ ଆଧାରିତ ନୁହେଁ । ଅଙ୍କାବଙ୍କା ସର୍ପିଳ ଗତି ପଥରେ ଅଗ୍ରସର ହେଉଥିବା ସମୟରେ ମାନବ କେବେ ହର୍ଷ, କେବେ ବିଷାଦ, କେବେ ସଂଘର୍ଷ ପୁଣି କେତେ ଯେ ତିକ୍ତ ମଧୁର ଅନୁଭୂତିରେ ଆତ୍ମହରା ଓ ବ୍ୟସ୍ତବିବ୍ରତ ହୋଇ ଉଠୁଥିବା ବେଳେ ପୁଣି ପରମୁହୂର୍ତ୍ତରେ ଅନୁଶୋଚନା ଅନଳରେ ଦଗ୍ଧ ହୋଇଥାଏ । ସୀମିତ ସମୟ ମଧ୍ୟରେ ଚଲାପଥରେ ସୁଖ-ଦୁଃଖର ଫେଣ୍ଟାଫେଣ୍ଟି ଅନୁଭୂତି ପ୍ରତ୍ୟେକ ମାନବର ଅନୁଭବରେ ଆସିଥାଏ । ଏହି ଅନୁଭବର ସ୍ମୃତିଗୁଡ଼ିକ ମାନବର ମାନସ ମୁକୁରରେ ବାରମ୍ବାର ପ୍ରତିବିମ୍ବିତ ହେବାରେ ଲାଗିଥାଏ । ସମୟର ସର୍ବଗ୍ରାସୀ ସ୍ରୋତର ପ୍ରବାହରେ

ସେଥିରୁ ଅନେକ ଅନୁଭୂତି ଆପେ ଆପେ ଅଦୃଶ୍ୟ ହୋଇଯାଏ । ମାତ୍ର ଏପରି କେତେକ ସ୍ମୃତି ମାନସ ପଟରୁ ଆଦୌ ଲିଭି ନଥାଏ । ଏହାକୁ ଜୀବନର ଅଭୁଲା ସ୍ମୃତି କୁହାଯାଏ । ଏହି ଧରଣର ସ୍ମୃତି ପ୍ରତ୍ୟେକ ମାନବ ପକ୍ଷରେ ସମାନ ଭାବରେ ସତ୍ୟ, ମାତ୍ର କୌଣସି କାରଣରୁ ଏହାକୁ ଲିପିବଦ୍ଧ କରିବାର ଉଦ୍ୟମ ହେଲେ ତାହା ଆଦୌ ପ୍ରକୃତ ଜୀବନୀର ମାନ୍ୟତା ପ୍ରାପ୍ତ ହୋଇ ପାରିନଥାଏ । ତାହା କେବଳ ସ୍ମୃତି-ଅନୁଭୂତି ଆକାରରେ ରହିଥାଏ ମାତ୍ର ।

ମୁଁ ଜଣେ ଅତି ନଗଣ୍ୟ ବ୍ୟକ୍ତି । ମୋର ଶିକ୍ଷାଗତ ଯୋଗ୍ୟତା ବା ପ୍ରମାଣପତ୍ର ଉଲ୍ଲେଖନୀୟ ନୁହେଁ । ମୋର ସାଧନା ସେବା, ସମର୍ପଣ ମନୋଭାବ, ବା ଅସାଧାରଣ ନୈପୁଣ୍ୟ ପ୍ରଦର୍ଶନ ଆଦି ଖୋଜି ବସିଲେ ହତାଶ ହେବାକୁ ପଡ଼େ । ସୁଦୀର୍ଘ ୪୫ ବର୍ଷର ନିରବଚ୍ଛିନ୍ନ ଶିକ୍ଷକତାର ଅନୁଭୂତି, ଜୀବନର ଚଲା ପଥରେ ବହୁ ଖାଲଖମା ଅତିକ୍ରମ କରି ଜଣେ ଗୁରୁ ରୂପେ ପ୍ରତିଷ୍ଠା ଅର୍ଜନ କରିବାର ଶପଥ ନେଇ ମୁଁ ଶିକ୍ଷକତାର ମହାନ୍ ଦାୟିତ୍ୱ ଗ୍ରହଣ କଲି ଠିକ୍ ୧୯୩୮ ମସିହାର ମଧ୍ୟ ଭାଗରେ । ସେହିଦିନ ଠାରୁ ଅବସର ଗ୍ରହଣ ପର୍ଯ୍ୟନ୍ତ ଓ ପରେ ମଧ୍ୟ ମୋର ବିଶ୍ରାମ ନଥିଲା । ଦୀର୍ଘଦିନ ଛୋଟ ପିଲାଙ୍କ ଗହଣରେ ଜୀବନର ମୂଲ୍ୟବାନ ସମୟତକ ବିନିଯୋଗ କରି ମୁଁ ସେହି ନିଷ୍ପାପ ସରଳ ଶିଶୁମାନଙ୍କ ସହିତ ମିଶି ଯାଇଥିଲି । ଅବସର ଗ୍ରହଣ ପରେ ମଧ୍ୟ ମୁଁ ମୋର ପ୍ରଧାନ କର୍ମଭୂମି ଯାହାକୁ କି ମୁଁ ଅକ୍ଳାନ୍ତ ପରିଶ୍ରମ କରି ୧୯୪୮ ମସିହାରୁ ଗଢ଼ିବାରେ ଆପ୍ରାଣ ଉଦ୍ୟମ କରି ଆସିଥିଲି, ସେଇ ପ୍ରଦାପଶାସନ (ବାଳକାଟି ଉ.ପ୍ରା) ବିଦ୍ୟାଳୟକୁ ଭୁଲି ପାରିନଥିଲି । ଉକ୍ତ ବିଦ୍ୟାଳୟର ପ୍ରତ୍ୟେଟି ଇଟା, ପ୍ରତିଟି ଟାଇଲ ଆଦି ମୋ ଜୀବନର ଅଂଶବିଶେଷ ହୋଇ ରହିଯାଇଛନ୍ତି । ତେଣୁ ପ୍ରତି ସପ୍ତାହରେ ୩/୪ ଦିନ ସେଇ ପବିତ୍ର କର୍ମଭୂମିକୁ ଆପେ ଆପେ ଟାଣି ହୋଇ ଯାଉଥିଲି । ଯେଉଁଠିକି ମମତା, ସ୍ନେହ, ଆଦର ଓ ଭକ୍ତିର ଉତ୍ସ ମୋ ପାଇଁ ଭରପୁର ଥାଏ ।

ବର୍ତ୍ତମାନ ମୋର ବୟସ ୮୫ ବର୍ଷ । ଦାରୁଣ ବାର୍ଦ୍ଧକ୍ୟର ନିତ୍ୟ ସହଚର ମାନେ ମୋତେ ଆବୋରି ବସିଲେଣି । ଏପରିକି ଯେଉଁ ହାତରେ ମୁଁ ଦିନକୁ ୨୦ ପୃଷ୍ଠା ଲେଖାକୁ ମାତ୍ର କେତେ ଘଣ୍ଟାରେ ଲେଖି ପାରୁଥିଲି, ଏବେ ସେଇ ହାତ ଅଛି; କିନ୍ତୁ ଅତି ବେଶୀରେ ଦୁଇ ତିନିଫାଳ କାଗଜ ଲେଖିବା ସମ୍ଭବପର ହେଉନାହିଁ । ରୋଗବ୍ୟାଧି ତ ବାର୍ଦ୍ଧକ୍ୟର ଦାନ । ତା ସହିତ କିଛି ମାନସିକ ଅଶାନ୍ତି ମୋତେ ଏ ପରିଣତ ବୟସରେ ଅତ୍ୟନ୍ତ ପୀଡ଼ାଦାୟକ ହୋଇ ଉଠିଲାଣି । କେତେବେଳେ କେଉଁକଥା । ହୁଏତ ଅତି ଅତର୍କିତ ଭାବରେ ସେ ମହା-ଆହ୍ୱାନ ଆସି ଯାବତୀୟ

ବ୍ୟାଧି, ମନସ୍ତାପ ଏବଂ ଚିନ୍ତାର ଅବସାନ ଘଟାଇବ, ଏକଥା କେହି ଭବିଷ୍ୟବାଣୀ କରି ପାରିବେ ନାହିଁ । କଥାରେ ଅଛି -

ବଡ଼କୁର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ୱିତେ ଆସି ।

ଏହି ପଦକ କଥା ନିରାଟ ସତ୍ୟ ଓ ଗଭୀର ଅନୁଭୂତି ପ୍ରସୂତ । ଲୋକ ପରିଣତ ବୟସରେ ହିଁ ଏହି ଆପ୍ତ ବାକ୍ୟର ସାରବତ୍ତା ଉପଲବ୍ଧି କରିବାର ଅବସର ପାଏ, ତା ପୂର୍ବରୁ ନୁହେଁ ।

ମୋର ପ୍ରିୟ ବ୍ୟକ୍ତି, ଉପଦେଷ୍ଟା, ଏକାନ୍ତ ବନ୍ଧୁ, ସହଯୋଗୀ ସହକର୍ମୀ ଏବଂ ସର୍ବୋପରି ମୋର ଅନେକ ସୁଯୋଗ୍ୟ ଛାତ୍ରଛାତ୍ରୀ କେଜାଣି କାହିଁକି ଗତ ୩/ ୪ ବର୍ଷ ତଳୁ ମୋତେ ମୋ ଅତୀତ ଜୀବନ ସଂପର୍କରେ ଏକ ବିବରଣୀ ଯାହାକି ସେମାନଙ୍କ ଭାଷାରେ ଆତ୍ମଜୀବନୀ ଲେଖିବାକୁ ବାରମ୍ୱାର ମୌଖିକ ଅନୁରୋଧ ତଥା ପତ୍ରମାଧ୍ୟମରେ ସ୍ମରଣ କରାଇବାକୁ ଭୁଲି ନାହାନ୍ତି ।

ଆଶ୍ଚର୍ଯ୍ୟ ଲାଗେ ଡକ୍ଟରେଟ୍ କରିଥିବା ପ୍ରଫେସର ବିଲାତ ଫେରନ୍ତା ଇଂଜିନିୟର, ବିଶିଷ୍ଟ ଡାକ୍ତର, ଏବଂ ବହୁଭାବରେ ସମ୍ମାନିତ ହୋଇଥିବା ଉଚ୍ଚ ପଦସ୍ଥ କର୍ମଚାରୀ ଛାତ୍ର ଓ ହିତୈଷୀମାନଙ୍କର ଏ ପ୍ରକାର ଅନୁରୋଧକୁ ନୀରବ ସମର୍ଥନ ଜଣାଇ ପରୋକ୍ଷରେ ପ୍ରତାରଣା କରିବାରେ ଲାଗିଲି, ଅନେକ ବାହାନାକୁ ଆଳକରି । ବିଶେଷ କରି ମୋର ଅତି ନିକଟରେ ଥିବା ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତି ମୋତେ ବାରମ୍ୱାର ଏକ ସଂକ୍ଷିପ୍ତ ହେଉ ପଛେ ଲେଖାଟିଏ ତାଙ୍କୁ ଦେବାପାଇଁ କହିବାରେ ଲାଗିଛନ୍ତି । ଏବେ ମୁଁ ନିଜକୁ ଏକ ଅପରାଧୀ ମନେକରି କିଛି କରିବା ନିମିତ୍ତ ନିଷ୍ପତ୍ତି କଲି ।

## ଆମ ଗାଁ

ଅବିଭକ୍ତ ପୁରୀଜିଲ୍ଲାର ପିପିଲି ଥାନା ଅଧୀନସ୍ଥ ଆମଗାଁ ନାମ ଗୋବିନ୍ଦପୁର । ଗାଁଟି ପିପିଲିଠାରୁ ୭ କିଲୋମିଟର ଓ ରାଜଧାନୀ ଭୁବନେଶ୍ୱର ଠାରୁ ୧୦ କି.ମି. ଦୂର ଅଟେ । ଆମ ଗାଁ ପାଖ ବହୁ ପୁରାତନ ଗୁଡ଼ିଆ ପୋଖରୀ ଏବେ ଏକ ପ୍ରଧାନ ସ୍ଥାନର ମାନ୍ୟତା ଲାଭ କଲାଣି ।

ପାଞ୍ଚଗୋଟି ଛୋଟ ବଡ଼ ସାହିକୁ ନେଇ ଆମ ଗାଁଟି ( revenue village) ଗଠିତ । ଏଥି ମଧ୍ୟରୁ ଦୁଇଟି କରଣ ସାହି, ଗୋଟିଏ ଖଣ୍ଡାଏତ (ପ୍ରଧାନ) ସାହି,

ଗୋଟିଏ ମୁଦୁଲି (କୁମ୍ଭାର) ଓ ଅନ୍ୟଟି ବେହେରା (ଗଉଡ଼) ସାହି ଅଛେ । ମୋର ଜନ୍ମ ଆଜିକୁ ୮୫ ବର୍ଷ ତଳେ ହୋଇଥିଲେ ମଧ୍ୟ ମୋ ହେତୁ ପାଇବା ପରେ ଶହେବର୍ଷରୁ ଉର୍ଦ୍ଧ୍ୱ ସମୟରେ ଗ୍ରାମର ଶିକ୍ଷା, ସଂସ୍କୃତି, ପରସ୍ପର ମଧ୍ୟରେ ସଂପର୍କ, ସହାନୁଭୂତି, ଏକତା ଓ ଭାଇଚାରା ସଂପର୍କରେ ଅନେକ କିଛି ସଂଗ୍ରହ କରିଥିଲି । ସେ ସମୟରେ ଆମଗାଁଟି ପାର୍ଶ୍ୱବର୍ତ୍ତୀ ଅନ୍ୟଗ୍ରାମ ମାନଙ୍କଠାରୁ ଉନ୍ନତ ଓ ମାର୍ଜିତ ଥିଲା।

## ଶିକ୍ଷା

ପ୍ରାୟ ଶହେ ବର୍ଷରୁ ଉର୍ଦ୍ଧ୍ୱହେବ ଆମ ଗ୍ରାମରେ ଏକ ଉ.ପ୍ରା. ବିଦ୍ୟାଳୟ ଏକମାତ୍ର ବିଦ୍ୟାଳୟ ଥିଲା । ଦୂରବର୍ତ୍ତୀ ଗ୍ରାମମାନଙ୍କରୁ କେତେକ ପିଲା ସେତେବେଳେ ଏହି ଉ.ପ୍ରା. ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ପିପିଲି ଥାନାର ସର୍ବ-ପ୍ରଥମ ଉଚ୍ଚଶିକ୍ଷିତ (ଏମ୍.ଏସ୍.ସି) ବ୍ୟକ୍ତି ଶ୍ରୀଯୁକ୍ତ ରାଧାକୃଷ୍ଣ ଦାସ ଆମ ଗାଁ ପାଖ ସିଉଳା ଗ୍ରାମସ୍ଥ ଜମିଦାର ପରିବାରର ସନ୍ତାନ ଥିଲେ । ଚେନ୍ନାଇ ମହାବିଦ୍ୟାଳୟରେ ଦୀର୍ଘଦିନ ପଦାର୍ଥ ବିଜ୍ଞାନର ପ୍ରଫେସର ରୂପେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ। ସେ ଥିଲେ ଆମ ଗାଁ ଉ.ପ୍ରା.ର କୃତୀ ଛାତ୍ର । କେଜାଣି କେଉଁ ବିଶେଷ କାରଣରୁ ଉ.ପ୍ରା. ସ୍କୁଲଟି ଉଠିଗଲା, ତାହା ଜଣାନାହିଁ।

ମୋ ବୟସର ପିଲାମାନେ ପଢ଼ିବା ବେଳକୁ ଆମ ଗାଁ'ରେ ନି.ପ୍ରା. ବିଦ୍ୟାଳୟ ଥିଲା । ତହିଁରେ ଜଣେ ମାତ୍ର ଅବଧାନ ଶିକ୍ଷା ଦେଉଥିଲେ । ପଦ୍ଧତି ଥିଲା - ସେଇ ପୁରାତନ କାଳରୁ ପ୍ରଚଳିତ ରୀତି । ଏଥିରେ ସ୍କୁଲ ଶିକ୍ଷକଙ୍କ ପରି କିଛି କାର୍ଯ୍ୟ ହେଉ ନଥିଲା । ଆମେ ସେହି ପ୍ରାଚୀନ ପରଂପରାର ଚାଟଶାଳୀ ନିୟମରେ ବନ୍ଧା ପଣିକିଆ, ପାହିଅଣା, ଗୁଣ୍ଠାବିଶ୍ୱା ଓଡ଼ାଙ୍କ, ମେଳାଙ୍କ ଆଦି ସହିତ କୋଇଲି ଗୋପୀଭାଷା ଭାଗବତ ଆଦି ପାଠ ପଢୁଥିଲୁ । ଲିଖନପଠନ ଓ ଗଣିତ ମୁଖ୍ୟ ବିଷୟ ରୂପେ ଶିକ୍ଷାଦିଆ ଯାଉଥିଲା । ଅବିଚାରିତ ଭାବରେ ଅତି କଠିନ ଶାରୀରିକ ଦଣ୍ଡ ଦିଆଯାଉଥିଲା । ସାଧାରଣ ଲୋକେ ଏତିକି ପାଠ ପଢ଼ାରେ ସନ୍ତୁଷ୍ଟ ହୋଇ ଯାଉଥିଲେ ।

## ଆମ ଗାଁ'ର ଭୌଗୋଳିକ ସ୍ଥିତି

ଏ ସମ୍ପର୍କରେ ଆଗରୁ ସୂଚନା ଦେଇଥିଲେ ମଧ୍ୟ ଅଧିକ କିଛି ଅନୁଭୂତି ମୁଁ ଏପର୍ଯ୍ୟନ୍ତ ବିସ୍ତୃତ ଭାବରେ ଦେଇପାରି ନାହିଁ ।

ଆମ ଗାଁର ପୂର୍ବରେ ଭାର୍ଗବୀ ଓ ପଶ୍ଚିମରେ ଦୟା ନଦୀ ପ୍ରବାହିତ ।

ଠିକ୍ ଆମ ଗାଁ ମୁଣ୍ଡାରେ କାଣ୍ଡଝରେ ନାମକ ଏକ କ୍ଷୁଦ୍ର ନଦୀ ପ୍ରବାହିତ ହେଉଥିଲା । ଭାର୍ଗବୀ ଓ ଦୟା ୪/୫ କିଲୋମିଟର ଦୂରତାରେ ପ୍ରବାହିତ ହେଉଥିଲେ । ପଶ୍ଚିମରେ ଜଗନ୍ନାଥ ସଡ଼କ ଅତିକ୍ରମ କରିବାର ୩ କିଲୋମିଟର ପରେ ଦୟା ନଦୀ ପ୍ରବାହିତ ହୋଇଛି ।

ପ୍ରବଳ ବନ୍ୟା ସମୟରେ ଆମ ଅଞ୍ଚଳର ପୂର୍ବ ଦିଗରେ ଥିବା ବିନାୟକପୁର ଗ୍ରାମ ମୁଣ୍ଡର ଦୁର୍ବଳ ନଦୀ ବନ୍ଧରେ ଘାଇ ସୃଷ୍ଟିହୋଇ ଆମ ଅଞ୍ଚଳର କାଣ୍ଡଝରୀ ନଦୀର ଜଳପ୍ରବାହ ସହ ମିଳିତ ହୋଇ ପାଶ୍ୱବର୍ତ୍ତୀ ଗ୍ରାମ ଓ ଗହୀରମାନ ଚିଲିକା ପରି ଦେଖାଯାଏ ।

## ତତ୍‌କାଳୀନ ସାମାଜିକ ସ୍ଥିତି

ସେ ସମୟରେ ଗ୍ରାମମାନଙ୍କରେ ଲୋକ ସଂଖ୍ୟା କମ୍ ଥିଲା । ପ୍ରତି ଗ୍ରାମର ଅଧିବାସୀମାନଙ୍କ ମଧ୍ୟରେ ଅକୃତ୍ରିମ ସ୍ନେହ, ଶ୍ରଦ୍ଧା, ସଦ୍‌ଭାବ ଭାଇଚାରା ଓ ପରସ୍ପରକୁ ସାହାଯ୍ୟ କରିବା ନିଷ୍କପଟ ମନୋବୃତ୍ତି ଦୃଢ଼ ଥିଲା । ପ୍ରତ୍ୟେକ ବ୍ୟକ୍ତି ଅନ୍ୟର ବିପଦ ଆପଦରେ ଅଣ୍ଟାଭିଡ଼ି ଛିଡ଼ା ହୋଇ ଯାଉଥିଲେ । ଏକଥା ମଧ୍ୟ ସତ ଯେ ୮୦ ବା ୧୦୦ ବର୍ଷ ତଳେ ଲୋକମାନେ ସମସ୍ତେ ହରିଶ୍ଚନ୍ଦ୍ର ବା ଯୁଧିଷ୍ଠିର ନଥିଲେ । ମାତ୍ର ଏମାନଙ୍କର ସଂଖ୍ୟା ଅତି ନଗଣ୍ୟ ଓ ପ୍ରଭାବହୀନ ଥିଲା ।

ସନ୍ଧ୍ୟାରେ ଦିନଯାକର କ୍ଲାନ୍ତି ଅପନୋଦନ ପାଇଁ ଗ୍ରାମର ପ୍ରାୟ ପ୍ରତି ଭାଗବତ ଟୁଙ୍ଗୀରେ ବିଭିନ୍ନ ପୁରାଣ ପାଠ କରାଯାଏ । ବହୁ ସ୍ତ୍ରୀ ପୁରୁଷ ଏହି କାର୍ଯ୍ୟକ୍ରମକୁ ଅତ୍ୟନ୍ତ ଆଗ୍ରହର ସହିତ ଉପଭୋଗ କରୁଥିଲେ ।

ବର୍ଷ ମଧ୍ୟରେ ଥରେ ମାତ୍ର ପାଞ୍ଚ ଦିନ କିମ୍ବା ସାତଦିନ କାଳ କ୍ରମାଗତ ବାଦୀ ପାଲା ମାଧ୍ୟମରେ ମନୋରଂଜନର ବ୍ୟବସ୍ଥା ଥିଲା । ଏହା ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରବହମାନ ସ୍ରୋତକୁ ଜୀବିତ ରଖିଥିଲା । ଏହି ଅନୁଷ୍ଠାନ ପ୍ରାୟତଃ ରଜପର୍ବରେ ଅନୁଷ୍ଠିତ ହେଉଥିବାରୁ ପୁରୁଷ ଓ ସ୍ତ୍ରୀ ଲୋକମାନେ ଅତ୍ୟନ୍ତ ଆନନ୍ଦର ସହିତ ଏହାକୁ ଉପଭୋଗ କରୁଥିଲେ ।

ଚାଷ ଗ୍ରାମବାସୀମାନଙ୍କର ମୁଖ୍ୟ ଅବଲମ୍ବନ ଥିଲେ ମଧ୍ୟ ବିଭିନ୍ନ ବ୍ୟକ୍ତି ନିଜ ବ୍ୟବସାୟ ପ୍ରତି ବୀତସ୍ପୃହ ନଥିଲେ । ବର୍ତ୍ତମାନ ପରି ସେତେବେଳେ ଲୋକମାନଙ୍କର ଆବଶ୍ୟକତା ଏତେ ପରିମାଣରେ ବୃଦ୍ଧି ପାଇନଥିଲା । ସାଧାରଣତଃ ଲୋକମାନେ କୌଣସି ମତେ ଚଳିଯାଉଥିଲେ । ବର୍ତ୍ତମାନ ପରି ଆବଶ୍ୟକତାକୁ ଅଯଥା ବଢ଼ାଇ ପ୍ରତିଯୋଗିତାପ୍ରୟାସୀ ନଥିଲେ ।

## ଆଭୂଷଣ ଓ ପରିଧାନ

ସେ କାଳରେ ସ୍ତ୍ରୀ ଓ ପୁରୁଷମାନଙ୍କ ବେଶ, ପୋଷାକ ଅଳଙ୍କାର ଆଦିର ବିବରଣୀ ଏବେ ମଧ୍ୟ ମନେ ପଡ଼ିଯାଉଛି । ପରିଧାନ ମଧ୍ୟରେ ପୁରୁଷମାନେ ଧୋତି, ଏକପ୍ରକାର ଗଞ୍ଜି ଓ ଦୋସଡ଼ା ବ୍ୟବହାର କରୁଥିବା ବେଳେ ସ୍ତ୍ରୀ ଲୋକମାନେ ତନ୍ତବୁଣା ମୋଟା ଶାଢ଼ୀ, ମଣିଆବନ୍ଧୀ, ବା ସମ୍ବଲପୁରର ମୋଟା ଲୁଗା ସହିତ ମିଲ୍ ତିଆରି ମୋଟା ଶାଢ଼ୀମାନ ବ୍ୟବହାର କରୁଥିଲେ। ସାୟା, ସେମିଜ୍, ବ୍ଲାଉଜ, ବ୍ରା ପରି ପରିଧାନ ବା ଅଙ୍ଗବସ୍ତ୍ରର ଆଦୌ ପ୍ରଚଳନ ନଥିଲା ।

ପ୍ରାୟ କିଛି ଲୋକ ମୁଣ୍ଡରେ ବାଳ ରଖି ସ୍ତ୍ରୀ ଲୋକମାନଙ୍କ ପରି ଗଣ୍ଠି ପକାଉଥିଲେ ମଧ୍ୟ ଅଧିକାଂଶ ପୁରୁଷ ବାଳକାଟି ଦେଉଥାନ୍ତି । ସ୍ତ୍ରୀ ଲୋକମାନେ ବ୍ୟବହାର କରୁଥିବା ତତ୍କାଳୀନ ଅଳଂକାରମାନ ଇତିହାସର ବିଷୟବସ୍ତୁ ହୋଇ ରହିଥିବ ସିନା ବର୍ତ୍ତମାନ ସଂପୂର୍ଣ୍ଣ ଦୁର୍ଲଭ ହୋଇପଡ଼ିଛି ।

## ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଆମ ଗାଁ, ଆମ ଅଞ୍ଚଳ

ଆମ ଗାଁ ବା ଅଞ୍ଚଳ ସଂପର୍କରେ ଯାହାକିଛି ବର୍ଣ୍ଣନା କରିଥିଲେ ମଧ୍ୟ ଅଧିକ ଉପସ୍ଥାପନା ଅରୁଚିକର ବୋଧ ହେବା ସମ୍ଭାବନାରେ ବାଦ ଦେଇ ବର୍ତ୍ତମାନ ସମୟରେ ଆମ ଗାଁ'ର ଉନ୍ନତି ଓ ଅଗ୍ରଗତି ସଂପର୍କରେ କିଛି କହିବାର ଆବଶ୍ୟକତା ଉପଲବ୍ଧି କରୁଛି ।

ଅତୀତରେ ଆମ ଗାଁ'ର ଘରଗୁଡ଼ିକ ଝାଟିମାଟି ତିଆରି ଛଣ ଛପର ଘରଥିଲା । ସେ ପୁଣି ପ୍ରତିବର୍ଷ କାହାର କାହାର ନିୟମିତ ଛପର ମଧ୍ୟ ହୋଇ ପାରୁ ନଥିଲା । କେବଳ ଅବସ୍ଥାପନ୍ନ ସାମାନ୍ୟ ଜଣେ ଅଧେ ମାଟିକାନ୍ଥ ଉପରେ ପାଞ୍ଚ ଶେଣୀଆ ଦୋପରୀ ଆଟୁ କରିଥିଲେ । ଇଟା, ପଥର, ବାଲି, ସିମେଣ୍ଟର ଘର ବା ଛାତଘର ସାତସପନ ଥିଲା । ମାତ୍ର ବର୍ତ୍ତମାନ ସମସ୍ତଙ୍କ ଘର ଇଟା, ପଥର, ଟିଣ, ଟାଇଲ ବା ଆଜବେସଟସ୍ ନତୁବା ସଂପୂର୍ଣ୍ଣ ଶୂନଛାତ ଥିବା କୋଠାଘର ହୋଇ ସାରିଲାଣି । ଯେଉଁ ଅପେକ୍ଷାକୃତ ଆର୍ଥିକ ଦୁର୍ବଳ ବ୍ୟକ୍ତି କେତେଜଣ ଏହି ନୂତନ ଧରଣର ଶୂନଛାତ ଘର କରି ନପାରି ମନଦୁଃଖ କରୁଥିଲେ; ପାଞ୍ଚଜଣଙ୍କ ମଧ୍ୟରେ ଜଣେ ହୋଇ ପାରୁନଥିଲେ ସେମାନେ ସଦାଶୟ ସରକାରଙ୍କ କରୁଣା ଲାଭ କରି ଇନ୍ଦିରା ଆବାସ ଯୋଜନାରେ କୋଠାଘରଟିଏମାନ କରି ନିଜର ଅବଶୋଷ ମେଣ୍ଟାଇବାକୁ ସକ୍ଷମ ହୋଇପାରିଛନ୍ତି ।

ଶିକ୍ଷା ଦିଗରେ ଆମ ଅଞ୍ଚଳ ବିଶେଷ କରି ଆମ ଗାଁ ଉନ୍ନତିର ଉନ୍ନତ ସୋପାନ ଆରୋହଣ କରିଥିବା ନିଶ୍ଚିତ ସ୍ୱାଗତଯୋଗ୍ୟ । ଆମ ଗାଁରେ ଉ.ପ୍ରା. ମି.ଇ. ଏବଂ ହାଇସ୍କୁଲଗୁଡ଼ିକ ବେଶ୍ ଦକ୍ଷତା ପ୍ରତିପାଦନ କରି ଅଗ୍ରଗତି କରୁଛନ୍ତି । ଫଳରେ ପ୍ରତି ପରିବାର ପୁଅ ଝିଅମାନେ ସମାନ ଭାବରେ ଉଚ୍ଚଶିକ୍ଷା ଲାଭ କରିବା ସୁଯୋଗ ଲାଭ ଆଉ ଆୟାସସାଧ୍ୟ ମନେ ହେଉନାହିଁ । ବିଶେଷ କରି ଆମ ଗାଁର ଇଂଜିନିୟର, ଡାକ୍ତର, ପ୍ରଫେସର, ଓ.ଏ.ଏସ୍ ଅଫିସରଙ୍କ ସହିତ ରାଜଧାନୀର ସଚିବାଳୟରେ ସରକାରୀ କର୍ମଚାରୀ ରୂପେ ନିଯୁକ୍ତି ପାଇଥିବା ବ୍ୟକ୍ତିମାନଙ୍କର ସଂଖ୍ୟା ଊଣା ନୁହେଁ । ଏତଦ୍‌ବ୍ୟତୀତ ବହୁ ବ୍ୟକ୍ତି ବେସରକାରୀ ଅନୁଷ୍ଠାନମାନଙ୍କରରେ ଓ କେତେକ ଋଣ ଆଣି ଆତ୍ମନିଯୁକ୍ତିରେ କର୍ମରତ ଅଛନ୍ତି । ଉଚ୍ଚ ଶିକ୍ଷିତ ପୁଅମାନଙ୍କ ପାଇଁ ତତ୍ତୁଲ୍ୟ ଯୋଗ୍ୟତାସଂପନ୍ନ ବୋହୂମାନେ ମଧ୍ୟ ଆମ ଗ୍ରାମର ଉଚ୍ଚଶିକ୍ଷିତଙ୍କ ସଂଖ୍ୟା ବୃଦ୍ଧି କରିବାରେ ଲାଗିଛନ୍ତି ।

## ଗମନାଗମନ

ଆଗର ଗମନାଗମନ ପାଇଁ ଏବେ ଆଉ ସେ କାଦୁଅ ପଚପଚ କିଆ ଗୋହିରୀ ନାହିଁ । ତା ସ୍ଥାନରେ ୨୦୩ ନମ୍ବର ଜାତୀୟ ରାଜପଥରୁ ଲମ୍ବି ଆସିଛି ଏକ ସବୁଦିନିଆ । ପିଚୁରାସ୍ତା ଏବେ ପ୍ରତି ଘରେ ଗୋଟିଏ ଦୁଇଟି ସ୍କୁଟର, ମଟର ସାଇକେଲ ବା ଲୁନା ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ୩/୪ ଜଣଙ୍କର ନିଜସ୍ୱ କାର୍ ମଧ୍ୟ ଅଛି । କେନାଲ ବନ୍ଧ ମଧ୍ୟ ଅତି ସୁନ୍ଦର ପିଚୁରାସ୍ତାରେ ପରିଣତ ହୋଇଗଲାଣି । ସାଇକେଲଟା ଏକ ପୁରୁଣା ଯାନ ହୋଇଗଲାଣି ଓ ତାହା ବ୍ୟବସାୟୀ କିମ୍ବା ଶ୍ରମିକ ଶ୍ରେଣୀର ଲୋକମାନେ ବ୍ୟବହାର କରୁଛନ୍ତି ।

ଦୁଃଖର କଥା, ଆମ ଅଞ୍ଚଳର ଶିକ୍ଷାଗତ ସଭ୍ୟତା ଉଲ୍ଲେଖନୀୟ ହେଲେ ମଧ୍ୟ ଏହି ଶିକ୍ଷାଲୋକ ଆମ ଅଞ୍ଚଳର କୃଷିକୁ ଯଥେଷ୍ଟ ଆଘାତ ପହଞ୍ଚାଇଛି । ଯାହା ଦିନେ ମଣିଷର ପ୍ରଧାନ ଅବଲମ୍ବନ ଥିଲା; ଘଟଣାଚକ୍ରରେ ଏବେ ସେ ଜୀବନ ରକ୍ଷାକାରୀ କୃଷି ଏକାନ୍ତ ଭାବରେ ଉପେକ୍ଷିତ ଓ ଅବହେଳିତ । ଏହାର କାରଣ ସ୍ୱରୂପ ଏତିକି କୁହାଯାଇ ପାରେ ଯେ ଆମର ଏ ଅନ୍ତଃସାରଶୂନ୍ୟ ସାର୍ଟିଫିକେଟସର୍ବସ୍ୱ ଶିକ୍ଷା ପାଠ-ପଢୁଆ, ଅଧାପାଠୁଆ ଯୁବକମାନଙ୍କୁ ଚାଷକାମ ପ୍ରତି ଅତ୍ୟନ୍ତ ବୀତସ୍ପୃହ କରି ସାରିଲେଣି । ପୁନଶ୍ଚ ଆମ ପାଖ ଗାଁ ଗୁଡ଼ିଆ ପୋଖରୀ ପର୍ଯ୍ୟନ୍ତ ଭୁବନେଶ୍ୱର ସହର ଦ୍ରୁତଗତିରେ ମାଡ଼ି ଆସୁଥିବାରୁ ଗ୍ରାମାଞ୍ଚଳର ଶ୍ରମିକମାନେ ଟ୍ରକ୍, ଟ୍ରାକ୍ଟର ଆଦିରେ ନିଯୁକ୍ତି ପାଇ ପ୍ରତିଦିନ ବାଲି, ଇଟା, ପଥର, ସିମେଣ୍ଟ ଓ ଲୁହାଛଡ଼ ଆଣିବାରେ

ବ୍ୟସ୍ତ । ଆଉ କିଛି ଶ୍ରମିକ ସକାଳୁ ସାଇକେଲ୍‌ରେ ବା ବସ୍‌ଯୋଗେ ମାତ୍ର ୮ କିଲୋମିଟର ଦୂର କାପିଟାଲ୍‌ରେ ଶ୍ରମିକ ରୂପେ କାମ କରିବାକୁ ଶ୍ରେୟ ମନେ କରୁଛନ୍ତି । ଫଳରେ ଖରା ବର୍ଷାରେ ପଙ୍କ କାଦୁଅରେ ଲୋଟି କେହି ଚାଷ କରିବାକୁ ଆଉ ଆଗ୍ରହୀ ନୁହନ୍ତି । ପୁନଶ୍ଚ ବଡ଼ବଡ଼ଚାଷୀମାନେ ଧାନର ଅଭାବବିକ୍ରୀ ଯୋଗୁ ବର୍ଷକୁ ବର୍ଷ କ୍ଷତିଗ୍ରସ୍ତ ହୋଇ ଚାଷ ପ୍ରତି ବିମୁଖ ହୋଇ ଉଠିଲେଣି । ଧାନ ଦର ଆଶାନୁରୂପ ନହେଲେ ଚାଷୀମାନେ ହତାଶ ହୋଇ ପଡ଼ିବେ । ଫଳରେ ଗାଁ ଗହଳିର ପ୍ରଧାନ ଜୀବିକା ଧାନଚାଷର ଦ୍ରୁତ ଅବନତି ଦେଖାଯିବ ।

ଅଳ୍ପ କଥାରେ କହିଲେ ସମ୍ପ୍ରତି ଆମ ଗାଁ ପରିବର୍ତ୍ତନର ସ୍ରୋତରେ ଭାସିଯାଇ ଅଧିକରୁ ଅଧିକ ଆକର୍ଷଣୀୟ ତଥା ଋଦ୍ଧିମନ୍ତ ହୋଇ ଆସିଲାଣି । ପ୍ରତିଦିନ ଦୂରଦର୍ଶନର ମଧୁର ମୂର୍ଚ୍ଛନା ପ୍ରତି ପରିବାରରୁ ଉଚ୍ଛୁଳି ଉଠୁଥିବା ବେଳେ ଦୂରଶ୍ରବଣ (ଟେଲିଫୋନ୍) ଯନ୍ତ୍ରର ନିନାଦ ସାରାଦିନ ପ୍ରାୟ ସବୁରି ପରିବାରରୁ ବାରମ୍ବାର ପ୍ରତିଧ୍ୱନିତ ହୋଇ ଆମ ଗାଁ ଆମ ଅଞ୍ଚଳର ସଭ୍ୟତା, ଶିକ୍ଷା ତଥା ଆର୍ଥିକ ସ୍ୱଚ୍ଛଳତାର ପ୍ରମାଣ ଦେଇଥାଏ । ପ୍ରାଚୁର୍ଯ୍ୟରେ ବୁଡ଼ିରହି, ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରି ଆମେ ବହୁତ କିଛି ହାସଲ କରିପାରିଥିବାର ଗୌରବରେ ଆତ୍ମହରା ହୋଇ ଉଠିଲୁଣି । ମାତ୍ର ଅନ୍ତଃସାରଶୂନ୍ୟ ମହାକାଳ ଫଳର ଚାକଚକ୍ୟ ଆମକୁ ଅନ୍ଧ କରି ସାରିଲାଣି । ଆମେ ଯେତିକି ପାଇଛୁ, ତାଠାରୁ ବହୁଗୁଣରେ ହରାଇ ବସିଲୁଣି । ଆମର ପରଂପରା, ସଂସ୍କାର, ସଂସ୍କୃତି ଆଦି ସବୁର ଧୀରେ ଧୀରେ ଅବକ୍ଷୟ ହେବାରେ ଲାଗିଛି । ଅନ୍ୟର ତଥାକଥିତ ଆଦର୍ଶର ଅନ୍ଧ ଅନୁସରଣ ଆମକୁ ଧୀରେ ଧୀରେ କକ୍ଷଚ୍ୟୁତ କରି ସାରିଲାଣି । ଆମେ ପାଇଛୁ ଗଜଭୁକ୍ତ କପିତ୍ଥର ଅସାରତା । ହରାଇଛୁ ମୂଲ୍ୟବାନ ହୀରା, ନୀଳା, ମୋତି, ମାଣିକ ପରି ଦୁର୍ମୂଲ୍ୟ ଜହରତ୍‌ମାନ ।

କ୍ରୂର ବାର୍ଦ୍ଧକ୍ୟର କଷାଘାତରେ ଜର୍ଜରିତ ହୋଇ ମଧ୍ୟ ଅନେକ ଦିନ ମୋର ସେଇ ଜନ୍ମମାଟିର ମୋହତ୍ୟାଗ କରିବାକୁ ଇଚ୍ଛା କରି ନଥିଲି । ମାତ୍ର ଅବସ୍ଥା ଅଣାୟତ ହେବାରୁ ଏକାନ୍ତ ଅନିଚ୍ଛା ସତ୍ତ୍ୱେ ମୁଁ ଭୁବନେଶ୍ୱର ଆସି ସବୁଦିନ ପାଇଁ ଏଠାରେ ରହିଯିବାକୁ ବାଧ୍ୟ ହେଲି । ଜନ୍ମମାଟିର ମମତା ମୋତେ ଏପରି ମୋହାବିଷ୍ଟ କରିଛି ଯେ ଏଠାରେ ମୋର ଶରୀରଟି ରହିଥିଲେ ମଧ୍ୟ ମୋର ଆତ୍ମା ଗାଆଁର ଆମ୍ବତୋଟା, ନଡ଼ିଆ ବଗିଚା, କାକୁଡ଼ି ଗାଡ଼ିଆ, ଭାଳିଆଗଣ୍ଡ, ପାଳାବର ଓ ମୋର ସେଇ ପୁରୁଣା ଦୋପରୀ ଆଟୁଘର ପାଖରେ ରହିଯାଇଛି । ମୁଁ ଏହି ଅତିପ୍ରିୟ ସ୍ଥାନଗୁଡ଼ିକଠାରୁ ପୃଥକ ରହି ଶାନ୍ତି ପାଇ ପାରୁନାହିଁ । କିନ୍ତୁ ପରିସ୍ଥିତିର ଦାସ ହୋଇ ବିଧିନିର୍ଦ୍ଦେଶିତ ପଥରେ ଅଗ୍ରସର ହେବାକୁ ବାଧ୍ୟ ହେଉଛି । ବିଧିର ନିର୍ଦ୍ଦେଶ

ଅଲଂଘନୀୟ । ସୃଷ୍ଟିର କୌଣସି ଶକ୍ତି ବିଧିକୁ ଅତିକ୍ରମ କରିବାକୁ ସମର୍ଥ ନୁହଁନ୍ତି । "ନବିଧି ଗମତେ ପ୍ରଜ୍ଞା, ପ୍ରଜ୍ଞାନୁ ଗ୍ରାସତେ ବିଧି'', ଆପ୍ତ ବାକ୍ୟଟି ପ୍ରଣିଧାନଯୋଗ୍ୟ ।

## ଆମ ପରିବାର

୧୯୧୯ ମସିହାର ପବିତ୍ର ବସନ୍ତ ପଞ୍ଚମୀ ତିଥିରେ ମୋର ଜନ୍ମ । ବାପାଙ୍କ ନାମ କୃଷ୍ଣଚନ୍ଦ୍ର ଓ ମାଆଙ୍କ ନାମ ରାଜଲକ୍ଷ୍ମୀ । ଆମ ଅଞ୍ଚଳରେ ଆମ ପରିବାର ଅତୀତର ତିନିପୁରୁଷ ଧରି ଏକ ପ୍ରତିଷ୍ଠିତ ଖାନଦାନୀ ମକଦ୍ଦମ ପରିବାର ରୂପେ ସୁବିଦିତ ଥିଲା । ଏକ ଅଭିଜାତ ପରିବାର ଭାବରେ ବିଗତ ତିନିପୁରୁଷ ଧରି ଆମ ପରିବାରର ପ୍ରତିଷ୍ଠା ଓ ଜନସାଧାରଣଙ୍କ ସମ୍ମାନ ଲାଭ କରୁଥିଲା । ଦୁର୍ଭାଗ୍ୟକୁ ମୋ ବାପାଙ୍କ ସମୟରେ ଆମେ ସବୁଦିନ ପାଇଁ ମକଦ୍ଦମୀରୁ ହାତଧୋଇ ଗୁରୁତର ଆର୍ଥିକ ସଂକଟର ସମ୍ମୁଖୀନ ହୋଇଥିଲୁ । ମାତ୍ର କେତୋଟି ବର୍ଷ ମଧ୍ୟରେ ଆମର ପୂର୍ବ ପ୍ରତିଷ୍ଠା ଓ ସମ୍ମାନ ଫେରି ଆସିଥିଲା ସତ, ମାତ୍ର ଆମେ ଆଉ ମକଦ୍ଦମ ହୋଇ ପାରିନଥିଲୁ । ହଠାତ୍ ଗୋଟିଏ ପ୍ରତିଷ୍ଠିତ ମକଦ୍ଦମ ପରିବାରର ଏ ଶୋଚନୀୟ ପରିଣତି ସଂପର୍କରେ ମୁଁ ମୋ ବୋଉ ଓ ଜେଜିମା ଠାରୁ ଯେତିକି କଥା ଶୁଣିଥିଲି, ସେ ସବୁ ମୋର ସ୍ମୃତି କୋଷରେ ଏକ ଉଜ୍ଜ୍ୱଳ ପ୍ରଦୀପ ରୂପେ ଏବେ ବି ଅଲିଭା ହୋଇ ରହିଯାଇଛି । ମୋ ଜେଜେବାପାଙ୍କ ଦେହାନ୍ତ ପରେ ଆମ ପରିବାର ଉପରେ ଯେଉଁ କଳାମେଘ ଅକସ୍ମାତ ଘୋଡ଼େଇ ହୋଇ ଚତୁର୍ଦ୍ଦିଗକୁ ଅନ୍ଧକାରାଚ୍ଛନ୍ନ କରି ପକାଇଥିଲା, ତାହାର ଏକମାତ୍ର ସୂତ୍ରଧର ଥିଲେ ମୋର ସେଇ ଜେଜେବାପା - ରତ୍ନାକର ନାୟକ । ନାଁଟି ରତ୍ନାକର ହୋଇଥିବାରୁ ବୋଧହୁଏ ସେ ନିଜେ ରତ୍ନାକର ପରି ଚଳିବାକୁ ବେଶ୍ ପସନ୍ଦ କରିଥିଲେ । ଖାନ୍‌ଦାନୀ ଚଳନି, ବେ-ପରୱା ଖର୍ଚ୍ଚ, କୌଣସି କଥାକୁ ଗୁରୁତ୍ୱ ନଦେଇ ସବୁକଥାକୁ ହେୟ ବିଚାରୁଥିବା ଏହି ମଣିଷ ଜଣକ ସଂପୂର୍ଣ୍ଣ ଚାର୍ବାକ୍ ଦର୍ଶନର ଋଣକୃତ୍ୱା ଘୃତଂ ପିବେତ୍ ର ଅନ୍ଧ ଅନୁସରଣକାରୀ ଥିଲେ ।

ମୋର ପ୍ରପିତାମହ ଅର୍ଥାତ୍ ମୋ ଜେଜେ ରତ୍ନାକରଙ୍କ ପିତୃଦେବ ଗୌରାଙ୍ଗଚରଣ ନାୟକ । ପାରଳା ମହାରାଜାଙ୍କ ଅଧୀନରେ ପିପିଲି-ଖୋର୍ଦ୍ଧାରୋଡ (ଜଟଣୀ)ର ମଝାମଝି ନିଜଗଡ଼ କୁରୁଖୀର ମକଦ୍ଦମ ରୂପେ ସମ୍ମାନିତ ହେଉଥିଲେ । ଏଇ ମହାଶୟଙ୍କ ସୁଚାରୁ ପରିଚାଳନା, ଲୋକପ୍ରିୟତା, ଯଥା ସମୟରେ ମାଲଗୁଜାରୀ ଦାଖଲ (ପାରଳା ଷ୍ଟେଟ୍‌ର କୁରୁଖୀ ମକଦ୍ଦମୀରୁ ପ୍ରାପ୍ୟ ବାର୍ଷିକ ଅର୍ଥ) କରି ସେ ବେଶ୍ ସ୍ୱଚ୍ଛନ୍ଦ ଭାବରେ ନିଜ ସଂସାର ଚଳାଇ ଆସୁଥିଲେ । ଗୌରାଙ୍ଗ ମହାପ୍ରଭୁଙ୍କ ତିରୋଧାନ ପରେ ମକଦ୍ଦମୀର ସମସ୍ତ ଦାୟିତ୍ୱ ମୋ ଜେଜେ ରତ୍ନାକର ନାୟକଙ୍କ

ଦାୟିତ୍ୱାଧୀନ ହୋଇ ପଡ଼ିଲା । ରତ୍ନାକର ଏକାନ୍ତ ସୌଖୀନ, ବିଳାସପ୍ରିୟ ଜୀବନ ଅତିବାହିତ କରିବାର ଏକ ଗ୍ରୁଗଣ ମାନସିକତାର ବଶବର୍ତ୍ତୀ ହୋଇଥିଲେ । କୁରୁଖୀ ଖମାରରେ ଆମର ଚାଷଜମି, ହଳବଳଦ, କୋଠିଆ ଓ ଅମାର ଥିଲା ଓ ଜଣେ ସ୍ଥାୟୀ ଗୁମାସ୍ତା ଏହାର ପରିଚାଳନା ଦାୟିତ୍ୱରେ ଥିଲେ । ଜେଜେ ଉକ୍ତ ଖମାରକୁ ଗାଁ ଠାରୁ ଯାତାୟାତ କରିବା ପାଇଁ ଏକ ଭଲ ଘୋଡ଼ା ରଖିଥିଲେ । ମଧ୍ୟେ ମଧ୍ୟେ ଖମାର ଠାରେ ଏକାଦିକ୍ରମେ ୨/୩ ଦିନ ରହି ମାଛ, ମାଂସ, ଘିଅ, ଦୁଧ ଆଦି ପ୍ରଚୁର ପରିମାଣରେ ଆୟୋଜନ କରି ଅନେକ ସ୍ତାବକ ଓ ତଥାକଥିତ ସାଙ୍ଗସାଥୀଙ୍କୁ ଆପ୍ୟାୟିତ କରିବାର ଉତ୍କଟ ଆନନ୍ଦ ଅନୁଭବ କରୁଥିଲେ ।

ସେ ଅଧିକାଂଶ ସମୟ ଘରେ ରହୁଥିଲେ ଓ ଗୋବିନ୍ଦ ବାରିକ ନାମକ ଜଣେ ଚାକରକୁ ପରିବାରର ସେବା ପାଇଁ ନିଯୁକ୍ତ କଲେ । ସେଇ ଚାକରକୁ ଏକ ଛର୍‌ରା ବନ୍ଧୁକ ଚାଳନା ଶିକ୍ଷା ଦେଇ ତା ପାଇଁ ଏକ ବନ୍ଧୁକ ମଧ୍ୟ କିଣିଦେଲେ । ବାରିକର କାମ ଥିଲା ସେ ପ୍ରତିଦିନ ଦି ଚାରିଟି ହରଡ଼ ଚଢ଼େଇ ଶିକାର କରିବ । ହରଡ ଚଢ଼େଇ ଅଭାବରେ ଗେଣ୍ଡାଳିଆ ବା ଅନ୍ୟକିଛି ଖାଦ୍ୟୋପଯୋଗୀ ପକ୍ଷୀ ମଧ୍ୟ ଚଳୁଥିଲା । ନିତାନ୍ତ ଅସୁବିଧା ହେଉଥିଲେ ଖେପାକାଳରେ ବାଡ଼ିପଟେ ଥିବା ପୋଖରୀର ମାଛ ମରାଯାଇ କାମ ଚଳାଇ ଦେଉଥିଲେ । ବେଳେ ବେଳେ ସାଗୁଆଡି (ଛେଳି ମେଣ୍ଢାମାଂସ) ଆସେ ଓ କୁରୁଖୀ ଖମାର ପରି ଗାଁ ଠାରେ ମଧ୍ୟ ଅନେକ କାନକୁହା ତୋଷାମୋଦକାରୀଙ୍କୁ ଆପ୍ୟାୟିତ କରାଯାଉଥିଲା । ବଡ଼ କଥ. ସେ ସମୟରେ କୁକୁଡ଼ା କିମ୍ୱା କୁକୁଡ଼ା ମାଂସ ଘର ଏରୁଣ୍ଡି ଡ଼େଇଁବାକୁ ଖୁବ୍ କଟକଣା ଥାଏ ।

ଜେଜେଙ୍କର ପୁଅ ଝିଅ କିଛି ନଥିବାରୁ ସେ ମୋ ବାପାଙ୍କୁ ପୋଷ୍ୟପୁତ୍ର ରୂପେ ଆଣିଥିଲେ । ସେତେବେଳେ ମୋ ବାପାଙ୍କ ନାମ ଥିଲା ହାଡ଼ୁ (ହରେକୃଷ୍ଣ) ଆମ ଘରକୁ ଆସିବା ପରେ ବାପାଙ୍କ ନାମ କେବଳ କୃଷ୍ଣ (କୁସୁନିଆ ) ରହି 'ହରେ'ଟି ବାଦ୍‌କରା ଯାଇଥିଲା । ଏହାର କାରଣ ସ୍ୱରୂପ ଏତିକି ସଂଗ୍ରହ କରିଛି ଯେ, ଜେଜେମାର ନାମ ଥିଲା ଯଶୋଦା । ଅତୀତ ଯୁଗରେ ଯଶୋଦା ଶ୍ରୀକୃଷ୍ଣଙ୍କୁ ପାଳକ ପୁତ୍ର ରୂପେ ପାଇ ଜନ୍ମିତ ପୁତ୍ର ଠାରୁ ଅଧିକ ସ୍ନେହ ଶ୍ରଦ୍ଧା କରିଥିଲେ । ଏବେ ସେଇ ପୁରୁଣା ଯୁଗର ଅନୁବନ୍ଧନକୁ ମନେ ପକାଇବା ଉଦ୍ଦେଶ୍ୟରେ ଏପରି ଗୋଟିଏ ପବିତ୍ର ସ୍ମୃତିକୁ ଆମ ଘରେ ସଂପାଦି ଦିଆଯାଇଥିଲା । କହିବା ନିଷ୍ପ୍ରୟୋଜନ ଯେ ବିଧି ନିର୍ଦ୍ଦେଶ ପରି ମୋ ବୋଉ ନାମ ରାଜଲକ୍ଷ୍ମୀ, ଡାକନାମ ରାଜଲକ୍ଷ୍ମୀ ଏବଂ କେହି କେହି ରାଜନ ବୋଲି ମଧ୍ୟ ସମ୍ବୋଧନ କରୁଥିଲେ । ଏହାର ତାତ୍ପର୍ଯ୍ୟ

ଏହିକି ଲକ୍ଷ୍ମୀ ବିଷ୍ଣୁ ଅର୍ଥାତ୍ ଭଗବାନ ଶ୍ରୀକୃଷ୍ଣଙ୍କର ପତ୍ନୀରୂପେ ସର୍ବତ୍ର ପୂଜିତ ହୋଇଥାନ୍ତି । ଏହିପରି ହସଖୁସି, ଆନନ୍ଦ ଉଲ୍ଲାସ ମଧ୍ୟରେ ଗତିକରୁଥିବା ବେଳେ ଜେଜେଙ୍କର ଦେହାନ୍ତ ହୋଇଗଲା । ଅନ୍ୟକଥାରେ କହିଲେ - ଏହି ଦିନଠାରୁ ଆମ ପରିବାର ଦାରୁଣ ଦୁର୍ଗତିର ଆବର୍ତ୍ତ ମଧ୍ୟକୁ ଧୀରେ ଧୀରେ ଟାଣି ହେବାରେ ଲାଗିଲା ।

ଜେଜେ ତାଙ୍କ ଜୀବଦ୍ଦଶାରେ ଅମାପ ଖର୍ଚ୍ଚ ଏପରିକି ଧାର କରଜ କରିବାକୁ ଆଦୌ ପଛଘୁଞ୍ଚା ଦେଉନଥିଲେ । ଫଳରେ ପାରଳା ଷ୍ଟେଟ୍ ଦୀର୍ଘ ୩/୪ ବର୍ଷର ଅନାଦେୟ ମାଲ୍‌ଗୁଜାରୀ ପାଇଁ ନାଲିସ କରି କୁରୁଖୀ ଖମାର, ତତ୍ରତ୍ୟ ଭୂସମ୍ପତ୍ତି ଆଦି କ୍ରୋକ୍ ନିଲାମରେ ଦଖଲ କରିଗଲେ । ଏ ସବୁ ସତ୍ତ୍ୱେ ମଧ୍ୟ ଆବଶ୍ୟକ ଅର୍ଥ ଭରଣା ନ ହେବାରୁ ପୁରୀ ନରେନ୍ଦ୍ର କୋଣରେ ଥିବା ଏକ ଘରକୁ ମୋ ବାପା ଅଶ୍ରୁସିକ୍ତ ହୃଦୟରେ ବିକ୍ରୟ କରିଦେଇ ପାରଳାଙ୍କଠାରୁ ଦାୟମୁକ୍ତ ହୋଇ ସ୍ୱସ୍ତିର ନିଃଶ୍ୱାସ ମାରିବାକୁ ଚିନ୍ତା କରୁଥିବା ବେଳେ ପ୍ରତିଦିନ ସକାଳୁ ଓ ସନ୍ଧ୍ୟାରେ ଆମ ଦାଣ୍ଡରେ ୨/୪ ଜଣ ଲୋକ ଅପେକ୍ଷାରତ ଥିବା ଦେଖିବାକୁ ମିଳିଲା । ଜେଜେ ଏଇ ସବୁ ବ୍ୟକ୍ତିମାନଙ୍କଠାରୁ ବେପରୁଆ ଧାର କରଜ କରି ବିପୁଳ ପରିମାଣର ଅର୍ଥ ଅଯଥା ବ୍ୟୟ କରିଥିଲେ । କାହାକୁ ଶୁଝିବାର ନାଁ ମଧ୍ୟ ଧରିନଥିଲେ । ଏଣେ ବୋଝ ଉପରେ ନଳିତା ବିଡ଼ାପରି ଏକସ୍ୟ ଦୁଃଖସ୍ୟ ନଯାବବନ୍ତଂ, ତାବଦ୍ଦୀୟ ସମୁପସ୍ଥିତ ମୋ'ପରି ହୋଇ ବାପାଙ୍କୁ ଅତ୍ୟନ୍ତ ବିଷାଦଗ୍ରସ୍ତ କରିବାରେ ଲାଗିଲା । ତୁରନ୍ତ ଏ ପର୍ଯ୍ୟାୟର ଅବସାନ ନ ଘଟାଇଲେ ନିଜେ ପାଗଳ ହୋଇଯିବେ ଭାବି ବାପା ଅସ୍ଥିର ହୋଇ ଉଠିଲେ । ପୁରୀଘର ବିକ୍ରିରୁ ବଳିଥିବା ଯତ୍-ସାମାନ୍ୟ ଅର୍ଥ ସମୁଦ୍ରକୁ ଶଙ୍ଖେ ପରି ହେଲେ ମଧ୍ୟ ତହିଁରେ କେତେଜଣଙ୍କୁ କିଛି କିଛି ଦେଇ ଅପେକ୍ଷା କରିବାକୁ ଅନୁରୋଧ କରିଥିଲେ ।

ବାପାଙ୍କର ଏ ଶୋଚନୀୟ ମାନସିକ ଅବସ୍ଥା ଯୋଗୁ ଆମ ପରିବାରର ଅଶାନ୍ତି ଓ ମର୍ମବେଦନା ସହିତ ପଶ୍ଚାତ୍ତାପରେ ଜର୍ଜରିତ ହୋଇ ଉଠିଲା । ସମସ୍ତଙ୍କ ଆଖିରୁ ନିଦ ହଜିଗଲା । ଏକମାତ୍ର ଚାଷ ଜମିର ମୋହ ତ୍ୟାଗ କରିବାର ଦୁଃଖଦ ନିଷ୍ପତ୍ତି ଗ୍ରହଣ କରିବାକୁ ବାପା ବାଧ୍ୟ ହୋଇଥିଲେ । ସେ ଖଣ୍ଡିଏ ପରେ ଆଉ ଖଣ୍ଡିଏ ଜମି ବିକ୍ରି କରି ପୈତୃକ ଋଣ ପରିଶୋଧ କରିବାରେ ଲାଗିଲେ । ସମସ୍ତଙ୍କର ପ୍ରାପ୍ୟ ଅର୍ଥ ପରିଶୋଧ ହେଲା ବେଳକୁ ଆମର ଆଉ ଅତି ଅଳ୍ପ ମାତ୍ର ଜମି ଅବଶେଷ ରହିଲା । ଚାଷ ଚାକର, ଶଗଡ଼, ବଳଦ ସବୁ ଆମ ଘରୁ ବିଦାୟ ଗ୍ରହଣ କରିଥିଲେ । ଏ ସବୁ ନାଟରେ ଏକମାତ୍ର ଗୋବର୍ଦ୍ଧନ ଥିଲେ ମୋ ଜେଜେବାପା ରତ୍ନାକର ନାୟକ ।

ବାପା ପୋଷ୍ୟପୁତ୍ର ହୋଇ ଆସି ସର୍ବସ୍ୱାନ୍ତ ହୋଇ ମଧ୍ୟ କୌଣସି ଦିନ କାହାରି ଆଗେ ପିତୃନିନ୍ଦା କରି ନାହାନ୍ତି । ଏହାହିଁ ତାଙ୍କ ଅନାବିଳ ପିତୃଭକ୍ତିର ଜ୍ୱଳନ୍ତ ଆଦର୍ଶ ଥିଲା ଓ ଏହି ମହାନ କାର୍ଯ୍ୟପାଇଁ ତାଙ୍କ ସ୍ୱର୍ଗୀୟ ପିତାଙ୍କ ଅଦୃଶ୍ୟ ଆଶୀର୍ବାଦ ଲାଭ କରି ସେ ଅତି ଅପ୍ରତ୍ୟାଶିତ ଭାବରେ ଅଳ୍ପ କାଳ ମଧ୍ୟରେ ହୃତ ଗୌରବ, ସାମାଜିକ ପ୍ରତିଷ୍ଠା ସହିତ ଅନେକ ଧନ ସଂପଦ, ଜମିଭୂମି ଓ ମାନସମ୍ମାନର ଅଧିକାରୀ ହୋଇ ମକଦ୍ଦମୀ ଫେରି ପାଇନଥିଲେ ମଧ୍ୟ ପୂର୍ବ ଖାନ୍‌ଦାନୀକୁ ଫେରାଇ ଆଣିବାକୁ ସମର୍ଥ ହୋଇଥିଲେ । ଅତୀତର ପ୍ରାଚୁର୍ଯ୍ୟକୁ ଫେରାଇ ଆଣି ପାରିଥିବାରୁ ସେ ଗଭୀର ଆତ୍ମସନ୍ତୋଷ ଲାଭ କରୁଥିଲେ ।

ବାପାଙ୍କର ଏକ ବିଶେଷ ଗୁଣ ଥିଲା, – ସେ ଆଦୌ ଅଯଥା ବ୍ୟୟ କିମ୍ବା ବିଳାସ ବ୍ୟସନରେ ଅର୍ଥ ବ୍ୟୟ ନକରି ବରାବର ସଂଚୟକୁ ଅଗ୍ରାଧିକାର ଦେଉଥିଲେ । ତାଙ୍କର ଏ ଦୂରଦୃଷ୍ଟି ବୋଧହୁଏ ତାଙ୍କ ପିତାଙ୍କ ଅତୀତ ଅଦୂରଦର୍ଶିତାର ସତର୍କ ଘଣ୍ଟି ରୂପେ ତାଙ୍କୁ ସର୍ବଦା ସତର୍କ କରାଇ ଦେଉଥିଲା ।

## ଆମ ଘରେ ମୋ ବୋଉ

ପୈତୃକ ଋଣ ପରିଶୋଧ ପାଇଁ ବାପା ସବୁକିଛି ବିକ୍ରୟ କରିଦେବାକୁ କୁଣ୍ଠିତ ହୋଇନଥିଲେ । ବରଂ ସବୁ ଶେଷ ହୋଇଯିବା ପରେ ହିଁ ସେ ଏକ ଗୁରୁଦାୟିତ୍ୱରୁ ରକ୍ଷା ପାଇବାରୁ ସନ୍ତୋଷ ଲାଭ କରିଥିଲେ । ପ୍ରାଚୁର୍ଯ୍ୟଭରା ଏକ ସମୃଦ୍ଧ ପରିବାର ଅଳ୍ପ କେତେଦିନ ମଧ୍ୟରେ ଅଭାବର ତୀବ୍ର ଦଂଶନ ଜ୍ୱାଳାରେ ଜର୍ଜରିତ ହେବାରେ ଲାଗିଲା । ମକଦ୍ଦମୀରୂପ କର୍ପୂର ଉଡ଼ିଯିବାପରେ କନା ଖଣ୍ଡକରୁ ସମସ୍ତ ସୁବାସ ଅନ୍ତର୍ହିତ ହେବା ପୂର୍ବରୁ ହଠାତ୍ ଆମ ପରିବାରର ସୌଭାଗ୍ୟ ଗଗନରେ ପୁଣି ବାଳାରୁଣ ପ୍ରକାଶିତ ହେବାର ଅଗ୍ରସୂଚନା ମିଳିବାକୁ ଆରମ୍ଭ କଲା ।

ବାପା ବଳଙ୍ଗା ସନ୍ନକଟ ଡେରିକି ଗ୍ରାମର ଏକ ବିଶିଷ୍ଟ ପରିବାରରେ ଅତ୍ୟନ୍ତ ଆଡ଼ମ୍ବରପୂର୍ଣ ରୀତିରେ ବିଭା ହୋଇଥିଲେ । ଅଜା ମୋହନ ମହାନ୍ତି ଗଞ୍ଜାମ ଜିଲ୍ଲାର କୌଣସି ଏକ ମଠର ପୂର୍ଣ୍ଣ ତତ୍ତ୍ୱାବଧାରକ ରୂପେ ନିଯୁକ୍ତ ହୋଇଥିଲେ । ବର୍ଷ ମଧ୍ୟରେ ୨ /୪ଥରରୁ ଅଧିକ ଥର ଘରକୁ ଆସିପାରି ନଥାନ୍ତି । ଅଜାଙ୍କ ମାସିକ ଧରାବନ୍ଧା ଆୟ ଦୈନିକ ଉପୁରି ଆୟଠାରୁ ବେଳେ ବେଳେ ଉଣା ପଡ଼ିଯାଏ । ଆୟ ତୁଳନାରେ ଅଜାଙ୍କ ବ୍ୟୟ ଅତି ନଗଣ୍ୟ ଥାଏ । ତେଣୁ ସେ କିଛି କିଛି ସୁନା କିଣି ଘରକୁ ଆଣି ଟଙ୍କା ସହିତ ସୁନା ମଧ୍ୟ ଆଈଙ୍କୁ ଦେଇ ଯାଆନ୍ତି । ଏକମାତ୍ର ଅଳିଅଳି ଝିଅର ଆର୍ଥିକ ସ୍ଥିତି ବିଷୟରେ ବାରମ୍ବାର ଶୁଣି ଆଈର ମାତୃହୃଦୟ

ଗଭୀର ଭାବରେ ଆଲୋଡ଼ିତ ହେବାର ଲାଗିଥିଲା । ସେ ଆଉ ଅପେକ୍ଷା ନକରି ତାର ବିଶ୍ୱସ୍ତ କୋଠିଆ ହାତରେ କିଛି ଟଙ୍କା ମୋ ବୋଉ ପାଖକୁ ପଠାଇ ଦେଲା । ପରେ ପରେ ଅଜାଙ୍କ ପାଖକୁ ଝିଅ ପାଇଁ ତୁରନ୍ତ କିଛି ସାହାଯ୍ୟ ବ୍ୟବସ୍ଥା ନିମନ୍ତେ ପରାମର୍ଶ କଲା । ଏହା ଏକ ବିଧିରକ୍ଷା ମାତ୍ର ଥିଲା । କାରଣ କେବେ କେତେ ଟଙ୍କା ବା ସୁନା ଆଣି ଅଜା ଆଈକୁ ଦିଅନ୍ତି, ତା'ର ହିସାବ ଅଜାଙ୍କ ପାଖରେ ନଥାଏ । ଅଜା ଆଈର ରିଜର୍ଭ ବ୍ୟାଙ୍କର ଜମାକାରୀ ମାତ୍ର । ଆଈ ମନଇଚ୍ଛା ଖର୍ଚ୍ଚ କରିବାର ମୌଖିକ ଅନୁମତି ପାଇବା ଆବଶ୍ୟକ କରୁଥିଲା । ଅଜା କେବଳ ବ୍ଲାଙ୍କ୍ ଚେକ୍‌ରେ ଦସ୍ତଖତ କଲାପରି ଆଈର ପ୍ରସ୍ତାବକୁ ବିନାବିଚାରରେ ଗ୍ରହଣ କରି ନେଇଥିଲେ । ସ୍ଥୂଳତଃ ଆଈ ଥିଲା ଘରର ସର୍ବମୟ କର୍ତ୍ତ୍ରୀ ।

ଏହାପରେ ଆଈ କି ଆଉ ସମ୍ଭାଳି ହୁଏ; ସେ ମଝିରେ ମଝିରେ ଟଙ୍କା ପଠାଇବାରେ ଲାଗିଲା । ଏପରିକି ଥରେ ବାରିକ ହାତରେ ଚିତ୍ରିତ ଉଖୁଡ଼ା ହାଣ୍ଡି ମଝିରେ ଭିକ୍ଟୋରିଆ ଟଙ୍କା ଓ କିଛି ସୁନାମଉଡ଼କୁ ଏକ ଢ଼ାଳ ଭିତରେ ରଖି ଉଖୁଡ଼ା ଭିତରେ ପୋତି ଦେଲା । ବାରିକ ହାଣ୍ଡିଟି ଆଣି ମୋ ଜେଜେମାକୁ ଦେଇ ଦେଲା । ବୋଉ ସେତେବେଳେ ଗାଧୋଇ ଯାଇଥିଲା । ଫେରି ଆସି ବାରିକଠାରୁ ନାନାକଥା ବୁଝିବା ପରେ ବିଦାକୀ ଦେଇ ବିଦାକରି ଦେଲା । ଏହାହିଁ ଆମ ପରିବାରର ଆର୍ଥିକ ଉନ୍ନତିର ମୂଳଉତ୍ସ ଥିଲା । ଇତି ମଧ୍ୟରେ ଜେଜେମା ହାଣ୍ଡିଉପରୁ କଦଳୀପତ୍ର ଫିଟାଇ କିଛି ଉଖୁଡ଼ା କାହାକୁ ଦେବା କିମ୍ବା ନାତିନାତୁଣୀଙ୍କୁ ଦେବାପାଇଁ କାଢୁଥିବା ଅବସରରେ ଏକ ଛୋଟ ଢାଳ ଉଖୁଡ଼ା ହାଣ୍ଡି ଭିତରେ ଥିବାର ଦେଖି ଚମକି ପଡ଼ିଲା । ଉଖୁଡ଼ା ବାହାର କରିବା ବନ୍ଦ କରି ସେ ବୋହୂ (ମୋ ବୋଉ)କୁ ଡାକି ଚୁପୁ ଚୁପୁ କହିଲା, "- ହାଣ୍ଡି ଭିତରେ ଢାଳଟାଏ ଦେଖି ମୁଁ ପୁଣି ପତ୍ର ବାନ୍ଧି ଦେଇଛି । ତୁ ଯା ଦେଖିବୁ ।''

ମୋ ବୋଉ ସବୁକଥା ଅନୁମାନ କରିନେଇ ଅଳ୍ପ ହସି ଦେଇ କହିଲା, "- ମୁଁ ଯାଉଛି ଦେଖିବି ।''

ବୋଉ କେବଳ ଢ଼ାଳଟିକୁ ବାହାର କରି ତହିଁରେ ଟଙ୍କା ସହିତ କେତୋଟି ମଉଡ଼ ଦେଖି ତା ବୋଉର ମୂର୍ଖତା ପାଇଁ ଖୁବ୍ ଦୁଃଖ କରିଥିଲା ।

## ଭାଗ୍ୟ ଆକାଶରେ ଶୁଭ ସୂର୍ଯ୍ୟୋଦୟ

ଗୋଟିଏ କଥାରେ କହିଲେ, ବୋଉଥିଲା ଆମ ଉଜୁଡ଼ି ଯାଇଥିବା ପରିବାରର ପୁନରୁତ୍ଥାନ ପାଇଁ ମୁଖ୍ୟ ମାଧ୍ୟମ । ଏହି ଅର୍ଥର ସଦ୍‌ବିନିଯୋଗ ସମ୍ପର୍କରେ କିଛି

କହି ମୁଁ ଏ ଅଧ୍ୟାୟ ଅର୍ଥାତ୍ ଆମ ପରିବାର ପତନ ଓ ଉତ୍ଥାନ କାହାଣୀର ପୂର୍ଣ୍ଣଚ୍ଛେଦ ପକାଇବି ।

## ମୋ ବାପାଙ୍କ ସଂପର୍କରେ କିଞ୍ଚିତ

ମୋ ବାପା ଅତ୍ୟନ୍ତ ଧୀର, ସ୍ଥିର, ସରଳ ଓ ଶାନ୍ତ ପ୍ରକୃତିର ବ୍ୟକ୍ତିଥିଲେ । ଇତିପୂର୍ବରୁ ମୁଁ ଯେଉଁ ବିବରଣୀମାନ ପ୍ରଦାନ କରିଛି, ସେ ସବୁକୁ ମୁଁ ମୋ ଜେଜେମା, ବୋଉ, ଆଈ ଏବଂ ଆମ ଘରର କୋଠିଆ ମଣି ଖୁଣ୍ଟିଆଠାରୁ ସଂଗୃହୀତ ବର୍ତ୍ତମାନ ଯେଉଁ ବିବରଣୀ ବା ଘଟଣା ଉଲ୍ଲେଖ କରିବାକୁ ପ୍ରୟାସ କରିଛି, ତାହା ପ୍ରାୟ ସମୁଦାୟ ମୁଁ ବାପାଙ୍କ ତୁଣ୍ଡରୁ ଶୁଣିଛି । ବାପା ଅବଧାନଙ୍କ ପାଖରେ ଚାଟଶାଳୀ ପଢ଼ା ଶେଷ କଲେ । ପୁଅକୁ ଉଚ୍ଚ ଶିକ୍ଷା ଦେବାପାଇଁ ମୋ ବାପାଙ୍କ ବାପା ଅତ୍ୟନ୍ତ ଆଗ୍ରହୀ ହୋଇ ଉଠି ବାପାଙ୍କୁ କଟକରେ ଉଚ୍ଚଶିକ୍ଷା ଦେବାର ବ୍ୟବସ୍ଥା କଲେ । କଟକ ନିମିଚଉଡ଼ି (ଭାଷାକୋଷ ଲେନ୍) ରେ ବାଲକାଟି ମକଦ୍ଦମ ପରିବାରର ଏକ ଭଲ ବସାଘର ଥାଏ । ଜେଜେ ମକଦ୍ଦମ ଥିଲେ । ତେଣୁ ବାଲକାଟି ମକଦ୍ଦମ ପରିବାର ସହିତ ତାଙ୍କର ସୁସମ୍ପର୍କ ରହିଥିଲା । ତେଣୁ କଟକର ନିମିଚଉଠି ବସାରେ ବାପାଙ୍କର ରହିବା ସ୍ଥିର ହେଲା । ବାପାଙ୍କ ସବୁକଥା ବୁଝିବା ପାଇଁ ଚାକରଟିଏ ମଧ୍ୟ କଟକ ଯାଇଥିଲା । ମାତ୍ର ଚାରିମାସରେ ମୋ ବାପା ଚାକର ସହିତ ଘରକୁ ଚାଲିଆସି ସବୁଦିନ ପାଇଁ ପୋଥିରେ ଡ଼ୋର ବାନ୍ଧିଦେଲେ । ଏଥିରେ ମୋ ଜେଜେ ରତ୍ନାକର ନାୟକ ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ ।

\+ \+ \+ \+ \+ \+

ଏହାପରେ ବାପା ଘରେ ରହି କୁରଖୀ ଖମାର ଯିବା, ଗାଁ ସାଥୀପିଲାଙ୍କ ସହିତ ଖେଳବୁଲ କରିବାରେ ଅନେକ ଦିନ କଟାଇ ଦେଇଥିଲେ । ଆହୁରି ବେଶ୍ କିଛି ବର୍ଷ ପରେ ବାପାଙ୍କର ବିଭାଘର ହେଲା । ଦି ତିନିବର୍ଷରେ ପୁଅାଣି ଘର ହୋଇଥିଲା । ବୋଉ ଆମ ଘରକୁ ଆସିଲା । ଏହାର ଅଳ୍ପ କେତେ ଦିନପରେ ଜେଜେଙ୍କ ଦେହାନ୍ତ ପରେ ପରେ ପୂର୍ବ ବର୍ଣ୍ଣିତ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡିଥିଲା ।

ଖୁବ୍ ସମ୍ଭବ ଜେଜେଙ୍କ ମୃତ୍ୟୁପୂର୍ବରୁ ବାପା ଖାଲି ଘରେ ବସି ରହିଥିବା ଯୋଗୁଁ ଅଶ୍ୱସ୍ତି ଅନୁଭବ କଲେ । ଇତ୍ୟବସରରେ ମୋ ବାପାଙ୍କ ଜନ୍ମକଲା ବାପା ଭାଗବତ ନାୟକ ଓ ତାଙ୍କର ଦୁଇପୁଅ ( ମୋ ବାପାଙ୍କ ବଡ଼ଭାଇ ଉଦ୍ଧବ ଓ ସାନଭାଇ ରାମ) ଏପରି ତିନିଜଣ ଯାକ ପିପିଲି ସବ୍ ରେଜିଷ୍ଟ୍ରାର ଅଫିସରେ କାମ କଲେ ।

ବାପାଙ୍କ ଅନ୍ୟ ଦୁଇଭାଇ ଓ ତାଙ୍କ ବାପା ଭାଗବତ ତିନିହେଁ ନବୀସିନ୍ଧା (ମୋହରୀର /deed writer) କାମ କରୁଥିଲେ । ମୋ ବାପା ସିଠାମ (stamp paper ) ବିକ୍ରି କରିବାକୁ ଅନୁମତି (licence ) ଲାଭ କରି ପିପିଲିରେ ଷ୍ଟାମ୍ପ ବିକ୍ରୟ କାର୍ଯ୍ୟ ( stamp vendor) କଲେ । ବାପ ପୁଅ ଚାରିହେଁ ସକାଳୁ ପିପିଲି ଯାଇ କାମ କରିବାରେ ଲାଗିଲେ । ମୋହରୀର କାମ ପାଇଁ ମୂଳଧନ ଥିଲା ଦୁଆତରେ କାଳି ଓ ପର କଲମଟିଏ । ମାତ୍ର ଷ୍ଟାମ୍ପ ପେପର ପାଇଁ ଆବଶ୍ୟକ ହେଲା ଅନେକ ଅର୍ଥ । ତଥାପି ସୀମିତ ସମ୍ବଳକୁ ପାଥେୟ କରି ବାପା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଷ୍ଟାମ୍ପପେପର ପୁରୀ ଟ୍ରେଜେରୀରୁ ଆଣିବାକୁ ହୁଏ । ସେତେବେଳେ କେବଳ ଡ଼େଲାଙ୍ଗ ଷ୍ଟେସନଠାରୁ ଟ୍ରେନ୍ ଯୋଗେ ପୁରୀ ଯିବାର ଏକମାତ୍ର ସୁବିଧା ଥିବାରୁ ବାପା ଷ୍ଟାମ୍ପ କିଣିବା ପାଇଁ ମାସରେ ପ୍ରାୟ ଦୁଇଥର ପୁରୀ ଯାଉଥିଲେ । ଡ଼େଲାଙ୍ଗ ଆମ ଗାଁ ଠାରୁ ୧୦ ମାଇଲରୁ କିଛି ଅଧିକ ବାଟ ହୋଇପାରେ । ବାପା ସକାଳୁ ଆମଘର ଚାକରକୁ ସାଥୀରେ ନେଇ ଡ଼େଲାଙ୍ଗରୁ ପୁରୀ ଯାଆନ୍ତି । ଲୋକଟି ଷ୍ଟେସନଠାରେ ଅପେକ୍ଷା କରିଥାଏ । ବାପା ଫେରିଲେ ଦୁହେଁ ଯାକ ଚାଲି ଚାଲି ଘରକୁ ଆସନ୍ତି । ଏହା ଅତି କଷ୍ଟକର କାର୍ଯ୍ୟ ହେଉଥିଲେ ମଧ୍ୟ ବାପା ଅକୁଣ୍ଠିତ ଚିତ୍ତରେ ଏହା କରି ଚାଲିଥିଲେ ।

ସମୟର ପରିବର୍ତ୍ତନ ହେଲା । ମୋ ଆଈ ବ୍ୟାଙ୍କ୍‌ରୁ ମୋ ବୋଉ ମଝିରେ ମଝିରେ ଟଙ୍କା ଡ୍ର କରିବାରେ ଲାଗିଥାଆନ୍ତି । ପାଖରେ ପଇସା ହୋଇଯିବାରୁ ବାପା ମାସକୁ ମାତ୍ର ଥରଟିଏ ପୁରୀଯାଇ ଅଧିକ ପରିମାଣର ଷ୍ଟାମ୍ପ ପେପର ଆଣିବାକୁ ସମର୍ଥ ହୋଇଥିଲେ । ଫଳରେ ପରିଶ୍ରମ ଲାଘବ ହେବା ସହିତ ଖର୍ଚ୍ଚ ମଧ୍ୟ କମ୍ ହୋଇଗଲା ।

ଦିନକୁ ଦିନ ବାପାଙ୍କ ଆୟ ବୃଦ୍ଧି ପାଇଲା । ଅନ୍ୟ ଦିଗରେ ମୋ ବୋଉ ପାଖରେ ଗଚ୍ଛିତ ଥିବା ଅର୍ଥରେ ବାପା କିଛି ଚାଷ ଜମି କିଣିବାକୁ ସମର୍ଥ ହେଲେ । କିଛି ଲୋକଙ୍କୁ ଟଙ୍କା କରଜ ମଧ୍ୟ ଦେଲେ । କଠିନ ପରିଶ୍ରମ ଓ ନିଷ୍ଠା ଫଳରେ ବାପାଙ୍କର ପୂର୍ବ ଗୌରବ, ସମୃଦ୍ଧି ଓ ପ୍ରାଚୁର୍ଯ୍ୟର ଗାରିମା ଫେରି ଆସିଥିଲା ।

## ଆମ ପରିବାରରେ ମୁଁ

ମୁଁ ଭୂମିଷ୍ଠ ହେବାର ୨/୩ ବର୍ଷ ପରେ କ୍ରମାଗତ ଭାବରେ ନାନା ରୋଗରେ ପୀଡ଼ିତ ହେବାରେ ଲାଗିଲି । ଏ ତ ପ୍ରାୟ ଅଶୀ ବର୍ଷ ପୂର୍ବର ସ୍ମୃତି । ସେତେବେଳେ

ଗ୍ରାମ୍ୟ ବୈଦ୍ୟ କବିରାଜ, ଝଡ଼ାଫୁଙ୍କା, ଜାତକକଷି ରୋଗର ଉପସମର ସମୟ ନିର୍ଣ୍ଣୟ କରୁଥିଲେ ଓ ପ୍ରାୟ ଲୋକ ଗାଁ ଠାକୁରାଣୀଙ୍କ କାଳିସୀ ଉଭା କରାଇ ତାଙ୍କ ହୁକୁମ ଉପରେ ଅଖଣ୍ଡ ବିଶ୍ୱାସ ରଖିଥାନ୍ତି । ବୋଉ ମୋର ସକଳ ପ୍ରକାର ଚିକିତ୍ସାରେ ଅକୃତକାର୍ଯ୍ୟ ହୋଇ ଶେଷକୁ ମଣିକୁ ପଠାଇ ଠାକୁରାଣୀଙ୍କ କାଳିସୀର ଶରଣାଗତ ହେଲା । ମଣି ଆବଶ୍ୟକ ସାମଗ୍ରୀ ନେଇ ଠାକୁରାଣୀଙ୍କୁ ଉଭା କରାଇଲା । କାଳିସୀ ଉଭା ହୋଇ ଆମ କୋଠିଆଠାରୁ ସମସ୍ତ ବିବରଣୀ ଶୁଣନ୍ତି ଓ ତୁରନ୍ତ ତୁଳସୀପତ୍ର, ବେଲପତ୍ର, ମହୁ, ମରିଚ ଆଦିର ଏକ ବ୍ୟବସ୍ଥା ପତ୍ର, ସେବନ ସମୟ ଦିନକୁ କେତେଥର ଖାଇବ ଆଦି କାଳିସୀ କହି ଦେଇଥାନ୍ତି । ସାତଦିନପରେ ପୁଣି ଉଭା କରାଇବୁ ବୋଲି ଆଦେଶ ଥାଏ । ମଣି ଘରକୁ ଫେରେ, କାହିଁରେ କିଛି ଉପଶମ ନ ହେବାରୁ ପରିବାର ସମସ୍ତେ ବିଶେଷ କରି ମୋ ବୋଉ ଅତି ବ୍ୟସ୍ତ ହୋଇ ପଡ଼ିଥିଲା । କ୍ରମାଗତ ଭାବରେ ନାନା ରୋଗର ଶୀକାର ହୋଇ ମୋର ଦେହ ଅସ୍ଥିସର୍ବସ୍ୱ ହୋଇଗଲା । ବାପା ମଧ୍ୟ କେତେ କାହାକୁ ପରାମର୍ଶ କରି ଓଷଦପତ୍ର ଆଣି ଦେଉଥାନ୍ତି । ମାସେ ଭଲ ହେଲେ ତା ପରଠାରୁ ପୁଣି ଅନ୍ୟ ଏକ ବ୍ୟାଧି ଆକ୍ରମଣ କରିଥାଏ । ଏହିପରି ଭାବରେ ମୁଁ ଚାରିବର୍ଷର ହେବାଯାଏ ସର୍ବଦା ରୋଗଶଯ୍ୟାରେ ପଡ଼ିଥାଏ ।

କୌଣସି କାରଣରୁ ବା ବିଭିନ୍ନ ଔଷଧ ପ୍ରଭାବରୁ ହେଉ ମୁଁ କିଛିଦିନ ପାଇଁ ସୁସ୍ଥ ହୋଇଗଲି । ଫଳରେ ଆମ ପରିବାରରେ ଏକ ଆନନ୍ଦର ଲହରୀ ଖେଳିଗଲା । ବୋଉ କଳାଶାଢ଼ୀ, ସିନ୍ଦୁର, ଚୁଆ ଚନ୍ଦନ ଦେଇ ବ୍ରାହ୍ମଣଙ୍କୁ ଠାକୁରାଣୀଙ୍କ ମନ୍ଦିରକୁ ପଠାଇଲା । ଯଥାବିଧି ଠାକୁରାଣୀଙ୍କ ମାଜଣା ବି କରିବା ପାଇଁ ପୂଜକଙ୍କୁ ଅନୁରୋଧ କରିଥିଲା । ଏହି ପୂଜାପରେ ଏକ ଭୋଜିର ଆୟୋଜନ କରି ଠାକୁରାଣୀଙ୍କୁ ଭୋଗ କରାଇ ଥିଲା ।

ଚାରିବର୍ଷ ଚାରିମାସ ପରେ ମୋର କର୍ଣ୍ଣବେଧ (କାନଫୋଡ଼ା) ଲୋହପୁର ବିଶ୍ୱନାଥ ମହାଦେବଙ୍କ ନିକଟରେ ହୋଇଥିଲା । ସେଠାରେ ଚୂଡ଼ା ଘଷା ଓ ଗହମ କ୍ଷିରୀ ଆଦି ପ୍ରସ୍ତୁତ କରାଯାଇ ଭୋଗ କରାଯାଇଥିଲା । ଛପର ଶଗଡ଼ରେ ବୋଉ, ବାପା, ମୁଁ ଏବଂ ଜେଜେମା ଶିବମନ୍ଦିରକୁ ଯାଇଥିଲୁ । କାମ ଶେଷ ପରେ ସେଇ ତାଟ ଗାଡ଼ିରେ ବସି ଫେରି ଆସିଲୁ ।

ଏହାପରେ କିଛିମାସ ମୁଁ ଗାଆଁର ପିଲାମାନଙ୍କ ସହିତ ମିଶି ଖେଳବୁଲ କରିଥିଲି । ଏହାପୂର୍ବରୁ ମୁଁ କେବଳ ଘର ଭିତରେ ପ୍ରାୟ ବିଛଣାକୁ ଆଶ୍ରୟ କରି ପଡ଼ି ରହୁଥିଲି । ଗାଆଁ ଦାଣ୍ଡରେ ପୁଅଝିଅ ଏକାଠି ସଢ଼େଇ ନେଇ ବାଲିରେ

ଅଧିକାଂଶ ସମୟ ଖେଳିଥାଉ । ବେଳେବେଳେ ମିଛି ମିଛିକା ଚୁଲି କରି ତହିଁରେ ଭାତଡ଼ାଲି ରାନ୍ଧି ଖାଇବାର ଅଭିନୟ କରିଥାଉ । ଏତ୍‌ବ୍ୟତୀତ ଆଉ ଅନେକ ଖେଳରେ ଆମେ ସମୟ କଟାଉଥିଲେ ମଧ୍ୟ ସେ ସବୁ ଖେଳ ବା ବୋଲୁଥିବା ଗୀତଗୁଡ଼ିକ ମୋର ଆଦୌ ମନେ ପଡୁନାହିଁ । ସେ ହଜିଲା ଦିନର ସ୍ମୃତିଗୁଡ଼ିକ କେତେ ମଧୁର ଥିଲା ସତେ । ଏବେ ଶତଚେଷ୍ଟା କଲେ ସେ ଖେଳ, ସେ ହସ-କୌତୁକ ଏପରିକି ସାମୟିକ କଳିକଜିଆ ମଧ୍ୟ ସ୍ମୃତିର ସମ୍ପଦ ହୋଇ ବହୁଦିନଯାଏ ରହିଯାଇଥିଲା ।

କହିପାରି ନାହିଁ ଯେ କାନଫୋଡ଼ା ଦିନ ମୋ କାନ ଦୁଇଟିରେ ଦୁଇଖଣ୍ଡ ନିମ୍ବ କାଠି ପୂରାଇ ଦିଆ ଯାଇଥିଲା । କାନରୁ ଦରଜ ଉଣା ହୋଇଯିବା ପରେ ମୋ ପାଇଁ ହଳେ ସୁନାର ନୋଳି ବାପା ଆଣି ମୋ କାନରେ ପିନ୍ଧାଇ ଦେବା ପାଇଁ ବୋଉକୁ ଦେଇଥିବା କଥା ମୋର ଠିକ୍ ମନେ ଅଛି ।

## ମୋ ବିଦ୍ୟାରମ୍ଭ

ଆଗରୁ କହିଛି ଆମ ଗ୍ରାମରେ ଗୋଟିଏ ଉ.ପ୍ରା. ସ୍କୁଲ ଥିଲା । କେବେ କେଉଁ କାରଣରୁ ଉକ୍ତ ଉ.ପ୍ରା. ସ୍କୁଲଟି ଉଠିଗଲା, ସେ ସଂପର୍କରେ ମୁଁ କିଛି ହେଲେ ଜାଣି ନାହିଁ । ମୁଁ ପଢ଼ିଲା ବେଳକୁ ପୂର୍ବର ଉ.ପ୍ରା. ସ୍କୁଲ ଚାହାଳୀ ନାମରେ ପରିଚିତ ହେଉଥିଲା । ବାଞ୍ଛା ଅବଧାନେ ( ବାଞ୍ଛାନିଧି) ଥିଲେ ଗୁରୁ । ସେ ସମୟରେ ଏହି ପ୍ରକାରର ଅବଧାନମାନେ ଗାଁ ଗହଳର ଛାତ୍ରମାନଙ୍କୁ ଶିକ୍ଷାଦାନ କରୁଥିଲେ । ଆମ ଚାହାଳୀଟି ଏକ ନି.ପ୍ରା. ସ୍କୁଲ ଥିଲା ଓ ମାଷ୍ଟ୍ରେ ମାସିକ ତିନି ଟଙ୍କା ଦରମା ପାଉଥିଲେ । ଏକଥା ମୁଁ ଆଦୌ ଜାଣି ପାରି ନଥିଲି । କାରଣ ସବୁ ଚାହାଳୀ ପରି ଆମ ଚାହାଳୀର ପାଠପଢ଼ା ରୀତି ସଂପୂର୍ଣ୍ଣ ସମାନ ଥିଲା । ଅଧିକନ୍ତୁ ମୁଁ ପଢୁଥିବା ଭିତରେ କୌଣସି ହାକିମ ହୁକୁମା କେବେହେଲେ ଆମ ସ୍କୁଲ (ଚାଟଶାଳୀ) ପରିଦର୍ଶନ କରିବାକୁ ଆସି ନଥିଲେ ।

ସେତେବେଳେ ବାଞ୍ଛା ଅବଧାନେ ଥିଲେ ଚାଟଶାଳୀର ସର୍ବମୟ କର୍ତ୍ତା । ପାଠ୍ୟ-ପୁସ୍ତକ ସେ ଚୟନ କରନ୍ତି । ସିଲାବସ୍ ତାଙ୍କ ତୁଣ୍ଡରେ ଥାଏ । ଅଧ୍ୟାପନା ରୀତି ସେଇ ପୁରୁଣା କାଳିଆ ଗତାନୁଗତିକ ଥିଲା ।

ମୁଁ ବିଦ୍ୟାଳୟ ଯିବାର ଦିନ ସ୍ଥିର ହୋଇ ସାରିଥିଲା । ନିର୍ଦ୍ଦିଷ୍ଟ ଦିନ ମୁଁ ସ୍ନାନ ସାରି ନୂତନବସ୍ତ୍ର ପିନ୍ଧିଥିଲି । କପାଳରୁ ଉଭୟ କାନ ପର୍ଯ୍ୟନ୍ତ ଚନ୍ଦନରେ ଚିତା କରା ଯାଇଥିଲା । ଆମ କୋଠିଆ ଅନୁକୂଳ ସଂଚା ଥାଳିଟି ଧରି ମୋ

ପଛରେ ଆସୁଥାଏ । ଚାହାଳୀ ଆମ ଘରଠାରୁ ଡାକିଲେ ଶୁଭିବା ପରି ଦୂରତାରେ ଥାଏ । ଗୁରୁଜୀଙ୍କ ନିକଟରେ ପହଞ୍ଚିବା ମାତ୍ରେ ମୁଁ ମୁଣ୍ଡ ତଳେ ଲଗାଇ ମୁଣ୍ଡିଆ ମାରିଲି । ଅବଧାନେ ମୋ ମୁଣ୍ଡ ସାଉଁଳାଇ କହିଲେ. ଆଜି ଭଲ ଦିନ ଅଛି । ବିଦ୍ୟାରମ୍ଭ ଆଉ ଡ଼େରି କରିବା ନାହିଁ । ଏତିକି କହି ସେ ସଞ୍ଚା ଥାଳିରୁ କୋଚିଲା ଖଡ଼ିଟି ବାହାର କରି ତଳେ ତିନୋଟି ଗୋଲ ଗୋଲ ବୃତ୍ତ ବା ମୁଣ୍ଡଳା ଲେଖି କହିଲେ; – ମନେରଖ ଏ ତିନୋଟି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପ୍ରତୀକ । ଏହାପରେ ସେ ମୋତେ ଖଡ଼ିଟି ଧରାଇ ସେଇ ମୁଣ୍ଡଳାଗୁଡ଼ିକ ଉପରେ ବ୍ରହ୍ମା, ବିଷ୍ଣୁ ଉଚ୍ଚାରଣ ପୂର୍ବକ ମଡ଼ାଇବା ପାଇଁ ମୋ ହାତଧରି ଥରେ ମଡ଼ାଇ ଦେଲେ । ଏହାପରେ ମୁଁ ଆଉ ଦୁଇଥର ସେହିପରି କଲି । ଅବଧାନେ ଉକ୍ତ ତିନିଗୋଟି ମୁଣ୍ଡଳାକୁ ନିଭାଇ ଦେଇ ଖଡ଼ିଧୂଳି ମୋ କପାଳରେ ବୋଳିଦେଲେ । ସେତେବେଳେ ବିଦ୍ୟାରମ୍ଭ କରୁଥିବା ବିଦ୍ୟାର୍ଥୀମାନେ ମାଟିଘରର ଚଟାଣ ଉପରେ ଅକ୍ଷର ଶିକ୍ଷା କରୁଥିଲେ । ସମୁଦାୟ ଅକ୍ଷର ଶିକ୍ଷାପରେ ସିଲଟ ଆବଶ୍ୟକ ହୋଇଥାଏ ।

ପ୍ରଥମ ପର୍ଯ୍ୟାୟରେ ତଳେ ଲେଖିବା ପାଇଁ ଦୁଇ ପ୍ରକାର ଖଡ଼ି - କୋଚିଲା ଖଡ଼ି ଓ ଦୁଧ ଖଡ଼ି ବ୍ୟବହୃତ ହୋଇଥାଏ । କୋଚିଲା ଖଡ଼ି ବହୁତ ଟାଣ ଓ ଶୀଘ୍ର ସରେ ନାହିଁ ମାତ୍ର ଦୁଧଖଡ଼ି ଲେଖିବାକୁ ସୁଖ ଲାଗେ, କିନ୍ତୁ ଶୀଘ୍ର ସରି ଯାଏ । ଅବଧାନେ ସଞ୍ଚା ଥାଳିରୁ ନଡ଼ିଆ, ଉଆ ଚାଉଳ, ଡାଲି ଓ ପରିବା ଆଦି ସାଇତି ରଖିବା ପରେ ମଣି ହାତକୁ ଥାଳିଟି ଦେଇ କହିଲେ, “ – ମାଆଙ୍କୁ କହିବୁ, କେବଳ କାନରେ ନୋଳି ଦୁଇଟି ରଖି ହାତରୁ ଖଡ଼ୁ, ଅନନ୍ତ ବ୍ରତ, ଗୋଡ଼ରୁ ଖଡ଼ୁ ଓ ଅଣ୍ଟାସୂତା ବାହାର କରି ଘରେ ରଖି ଦେବେ । କାଲି ସକାଳୁ ପୁଅକୁ ପଠାଇ ଦେବେ । ଆଜିର କାମ ସରିଗଲା । ଘରକୁ ଯାଆ ।’’

ମୁଁ ଏକାକୀ ତହିଁ ଆରଦିନ ସକାଳୁ ଖଡ଼ିଟି ଧରି ଚାହାଳୀରେ ପହଞ୍ଚିଲି । ସେତେବେଳକୁ ପିଲାମାନେ ଆସି ପାଠପଢ଼ା ଆରମ୍ଭ ହୋଇ ଯାଇଥିଲା । ଅବଧାନେ କହିଲେ, ଆହୁରି ସହଳ ଆସିବୁ । ଯେପରି ଶୁନ୍‌ରୁ ଚାରି ବା ପାଞ୍ଚ ଭିତରେ ରହିବୁ । ମୁଁ କିଛି ବୁଝିପାରି ନଥିଲେ ମଧ୍ୟ ସାହସ କରି ପଚାରି ପାରିନଥିଲି । ମୁଁ ସାଙ୍ଗେ ସାଙ୍ଗେ ମୋପରି ଆରମ୍ଭ କରୁଥିବା ପିଲାମାନଙ୍କ ସହିତ ମିଶି କୋଚିଲା ଖଡ଼ିରେ ଅ,ଆ ଘୋଷିବା ଆରମ୍ଭ କରିଥିଲି । ଆମ ଚାହାଳୀରେ ଅନେକ ଶ୍ରେଣୀ ବିଭାଗ ଥିଲା । ଅକ୍ଷରଶିକ୍ଷା, ଯୁକ୍ତାକ୍ଷର, ପଣିକିଆ, କଡ଼ାଗଣ୍ଡା ଭେଦରେ ପିଲାମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଚାହାଳୀର ଶୃଙ୍ଖଳା ଅତି ଉଚ୍ଚକୋଟୀର ଥିଲା । କହିବା ନିଷ୍ପ୍ରୟୋଜନ ଯେ ବିଦ୍ୟାଳୟ କକ୍ଷରେ ଏ ପ୍ରକାର ଶାନ୍ତି-ଶୃଙ୍ଖଳାର ଏକମାତ୍ର

କାରଣ ସାମାନ୍ୟ ସାମାନ୍ୟ ତ୍ରୁଟି ପାଇଁ ଅସାମାନ୍ୟ ଦଣ୍ଡର ଭୟ । ଯାହାକି ଆଦୌ ସ୍ପୃହଣୀୟ ନୁହେଁ। ତଥାପି ସେ ସମୟରେ ପ୍ରାୟ ସମସ୍ତ ଗୁରୁ ସମସ୍ତ ଶିକ୍ଷକ ଓ ଅବଧାନେ ଏକପ୍ରକାର ଚରିତ୍ରର ଥିଲେ । ସହିଷ୍ଣୁତାବିବର୍ଜିତ ଏହି ଶିକ୍ଷାଦାତାମାନଙ୍କର ଏହା ଏକ ଗୁରୁତର ତ୍ରୁଟି ଓ ପ୍ରକାରାନ୍ତରେ ପାପ ବୋଲି ମୁଁ ଟ୍ରେନିଂ ପଢ଼ିବା ବେଳେ ସ୍ଥିର ନିଷ୍ଠିତ ହୋଇଥିଲି ।

ଉକ୍ତ ସମୟରେ ଅପଚୟ (drop-out) ) ଆଦୌ ନଥିଲା କହିଲେ ଭୁଲ ହେବ ନାହିଁ । ଏହାର କାରଣ ସ୍ୱରୂପ ମୁଁ ଏତିକି ସ୍ଥିର କରିଛି ଯେ, ଚାହାଳୀର ଉପସ୍ଥାନ ପାଇଁ ଶୂନ ଏକର ପ୍ରଚଳନ । ପୁନଶ୍ଚ ବିନା କାରଣରେ ଅନୁପସ୍ଥିତ (ଦୁଇ ଦିନରୁ ବେଶୀ) ରହୁଥିବା ପିଲା ପାଖକୁ ପ୍ରଥମେ ଅନ୍ୟ ପିଲାକୁ ଡାକି ଆଣିବା ପାଇଁ ପଠାଯାଏ ଓ ଅନେକ ସମୟରେ ପିଲାଟି ଚାହାଳୀକୁ ଆସେ । ଅନୁପସ୍ଥିତିର କାରଣ ଗୁରୁଙ୍କ ସନ୍ତୁଷ୍ଟ କରିପାରିଲେ ରକ୍ଷା, ନଚେତ ନିଷ୍ଠିତ ଦଣ୍ଡର ସମ୍ମୁଖୀନ ହେବାକୁ ପଡ଼ିଥାଏ। ଦୀର୍ଘଦିନ ଅନୁପସ୍ଥିତ ରହିବା, ବାହାନା କରି ଚାହାଳୀକୁ ନଆସିବା, କିମ୍ବା ଘରେ ପଢ଼ିବାକୁ ଯାଉଛି କହି ଅନ୍ୟତ୍ର ଖେଳବୁଲ କରୁଥିବା ସମ୍ବାଦ ମିଳିଲେ ଗୁରୁଜୀଙ୍କ କ୍ରୋଧର ପରିମାଣ ବଢ଼ିଯାଏ ଓ ସେ ସାଥୀରେ ଦୁଇଟି ଛାତ୍ରରୂପୀ କନ୍‌ଷ୍ଟେବଲ୍‌କୁ ନେଇ ବେତ୍ର ହସ୍ତରେ ଅଗ୍ରସର ହୁଅନ୍ତି । ଉଦ୍ୟମ ସହଜସାଧ୍ୟ ହୋଇଗଲେ ଭଲ । ଯଦି ପିଲା ହାଣ୍ଡିଶାଳରେ ଅବା ମାଆର ପଛ ପଟେ ଲୁଚିଲା, ତେବେ ଏଇ କନ୍‌ଷ୍ଟେବଲଙ୍କୁ ତାକୁ ଧରି ଆଣିବାକୁ ଆଦେଶ ଦିଆଯାଏ ଓ ଆଦେଶ ତତ୍‌କ୍ଷଣାତ୍ ପାଳିତ ହୁଏ । ଚାହାଳିକୁ ସମସ୍ତେ ଫେରି ଆସିବା ପରେ ଅପରାଧର ଗୁରୁତ୍ୱ ପରିପ୍ରେକ୍ଷୀରେ ଦଣ୍ଡର ପ୍ରକାର ଓ ପରିମାଣ ନିର୍ଦ୍ଧାରିତ ହୁଏ । ସେ କାଳରେ ଯେଉଁସବୁ ଦଣ୍ଡର ବ୍ୟବସ୍ଥା ଥିଲା, ଆଜିକାଲି କୌଣସିଠାରେ କେହି ଶିକ୍ଷକ ଉକ୍ତ ପଦ୍ଧତି ଅନୁସରଣ କଲେ ଶିକ୍ଷକଙ୍କ ମୁଣ୍ଡରେ କେଶପର୍ଯ୍ୟନ୍ତ ରହିବ ନାହିଁ । ସମୟକ୍ରମେ ସବୁ ବଦଳିଯାଉଥିବା ପରିବର୍ତ୍ତନର ଲକ୍ଷଣ । ଦଣ୍ଡର ପ୍ରକାରଭେଦ ସଂପର୍କରେ ସବୁ ତ ମନେ ପଡ଼ିବ ନାହିଁ ତଥାପି ଯାହା ମନେ ପଡୁଛି ତହିଁରୁ ସାମାନ୍ୟ କିଛିର ସୂଚନା ଦେଉଛି ମାତ୍ର । ସ୍ଥଳ ବିଶେଷରେ ପୁଣି ଅପରାଧ ଭେଦରେ କେଉ ଦଣ୍ଡ କେତେ ପରିମାଣରେ ଦିଆଯିବ, ତାହାର ଏକ ଅଘୋଷିତ ଏବଂ ଅଲିଖିତ ଦଣ୍ଡ ପଞ୍ଜିକା ଗୁରୁଙ୍କ ତୁଣ୍ଡରେ ଥାଏ (punishment code)। ତନ୍ମଧ୍ୟରୁ କାନଧରି ୩୦,୪୦,୫୦ ଥର ବସ୍‌ଉଠ୍ କାନ ଧରି ଏକଗୋଡ଼ରେ ଗୁରୁଙ୍କ ଅନ୍ୟାଦେଶ ପର୍ଯ୍ୟନ୍ତ ଠିଆ ହୋଇ ରହିବା। ଆଣ୍ଠୁ ମାଡ଼ି ବସିବା, ପ୍ରକାର ଭେଦରେ ଆଣ୍ଠୁ ତଳେ ଖପରା, ଗୋଡ଼ି ବା ବାଲିଗରଡ଼ା ଦିଆଯିବାର ବ୍ୟବସ୍ଥା, ମଟୁଆ ଶଙ୍କୋଳି (ଦୁଇ ହାତ ଓ

ଦୁଇ ଗୋଡ଼ ବନ୍ଧା ହୋଇ ଅଣ୍ଟା ନୁଆଁଇ ତଳେ ହାତ ଲଗାଇବା. ପାଞ୍ଚ, ଦଶ ପାହାର ପର୍ଯ୍ୟନ୍ତ ବେତ୍ରାଘାତ, ସର୍ବଶେଷ ଦଣ୍ଡରୂପେ ଯେ ଗୋଡ଼ରେ ଦଉଡ଼ି ବାନ୍ଧି କିଛି ସମୟ ଓରାରୁ ତଳକୁ ଝୁଲାଇବା । ଏତଦ୍ ବ୍ୟତୀତ ଆହୁରି ଅନେକ ଛୋଟବଡ଼ ଦଣ୍ଡର ବ୍ୟବସ୍ଥା ଥିଲା ।

ମୁଁ ମାସକ ମଧ୍ୟରେ ଅକ୍ଷରତକ ଶିକ୍ଷା କରିଦେଲି । ତାପରେ ଆକାର, ଇକାର ଆଦି ମାତ୍ରା ଓ ତାପରେ ବିଭିନ୍ନ ଫଳା ଆଦି ଶିକ୍ଷା କଲି । ଏହାପରେ ମୋତେ ମଧୁବର୍ଣ୍ଣବୋଧ ପଢ଼ିବାକୁ କୁହାଗଲା । ବହିର ଅକ୍ଷରଗୁଡ଼ିକ ଖୁବ୍ ଛୋଟ ଥିବାରୁ ପ୍ରଥମେ ବହିପଢ଼ା ଆରମ୍ଭ କରୁଥିବା ପିଲାମାନଙ୍କୁ ଉକ୍ତ ଅକ୍ଷର ପଢ଼ିବାରେ ଅସୁବିଧା ହେଉଥିଲା ।

ମୋ ଦେହ ଭଲ ଥିଲା ଓ ମୁଁ ନିୟମିତ ଚାହାଳୀକୁ ଆସି ମନଦେଇ ପାଠ ପଢୁଥିବାରୁ ଅବଧାନେ ମୋ ପ୍ରତି ସଦା ସଦୟ ଥିବା କଥା ମୁଁ ଉପଲବ୍ଧି କରିଛି । ମାତ୍ର ମୋ ଉପସ୍ଥିତିରେ ଅନ୍ୟମାନଙ୍କ ପ୍ରତି ହେଉଥିବା ନିଷ୍ଠୁର ଦଣ୍ଡ ଓ ସାଥି ପିଲାଙ୍କ ଚିତ୍କାର ଏବେ ମଧ୍ୟ ମୋତେ ବିବ୍ରତ କରି ପକାଉଛି ।

ଅଳ୍ପଦିନ ଭିତରେ ମୁଁ ପଣିକିଆ (ଗୁଣନ ଖନ୍ଦା) ଆରମ୍ଭ କଲି । ୨୫ ଖନ୍ଦା ପଣିକିଆ ଅଭ୍ୟାସ କରି ପାଣି ପରି ଗାଇଯିବାର ନିୟମ ଥିଲା । ଏ ପରୀକ୍ଷାରୁ ଉତୀର୍ଣ୍ଣ ହୋଇ ମୁଁ ଗୁଣ୍ଠୁ, ବିଶ୍ୱା , କଡ଼ାଗଣ୍ଡା ଓ ପାହିଅଣା, ଦଶଖନ୍ଦାଯାଏ ଘୋଷିଲି । କିଛିଦିନ ପରେ ଏ ସବୁ ପାଠରେ ମୁଁ ଆମ ସାଥୀ ପିଲାଙ୍କ ଠାରୁ ଆଗୁଆ ହୋଇଗଲି । ମିଶାଣ ଫେଡ଼ାଣ ଆଦି ଚାରିସୂତ୍ର ସହିତ ଛୋଟ ଛୋଟ ଗଣିତ ଆମକୁ ସମାଧାନ କରିବାକୁ ଦିଆଗଲା । ଏ ସବୁ ଅବଧାନେ ତୁଣ୍ଡରୁ ଡାକୁଥିଲେ ଓ ଆମେ ସମାଧାନ କରୁଥିଲୁ । ଏହାପରେ ଶୋଧି (କିଛି ମନେ ପଡୁନାହିଁ ), ଓଡ଼ାଙ୍କି, ମେଲାଙ୍କ ଘଟିତ ଗଣିତର ସମାଧାନ କରିବାର ସୂତ୍ର ଆମକୁ ବତାଇ ଦେଇ ସେ ସଂପର୍କୀୟ ଅନେକ ପ୍ରଶ୍ନ ପଚରା ଯାଇ ଆମର ଧାରଣା ସ୍ପଷ୍ଟ ହୋଇଛି କି ନାହିଁ, ବାରମ୍ବାର ପରୀକ୍ଷା କରାଯାଉଥିଲା । ଏହାର ପରବର୍ତୀ ଗଣିତ ନଳଭଙ୍ଗା(ଜମିମାପ) ଅତ୍ୟନ୍ତ ଆୟାସସାଧ୍ୟ ଓ ବିରକ୍ତିକର ଥିଲା । ସେ କଥା ପରେ ବର୍ଣ୍ଣନା କରିବି । ହେତୁ ହେବା ପରେ ଉପଲବ୍ଧି କରିଥିଲି ଯେ ପିଲାର ବୟସ ଅନୁପାତରେ ଜମିମାପ ପରି ଏକ ଜଟିଳ ଗଣିତମାନ ଶିକ୍ଷାଦାନ ସଂପୂର୍ଣ୍ଣ ଭାବରେ ବର୍ଜନୀୟ ଓ ବୋଝ ଉପରେ ନଳିତା ବିଡ଼ାପରି ଅତ୍ୟନ୍ତ କଷ୍ଟଦାୟକ ଥିଲା ।

ନଳଭଙ୍ଗା ଶିକ୍ଷା କରିବାର ଅବ୍ୟବାହିତ ପୂର୍ବରୁ ମୋ ଦେହ ଅସୁସ୍ଥ ହୋଇପଡ଼ିଲା । ରୋଗ ନାଁ ବାଣୀ । ଜଙ୍ଘରେ ହୋଇ ଥିବାରୁ କେହି କେହି ତାକୁ ଜଙ୍ଘା ମଧ୍ୟ କହୁଥିଲେ । କ୍ରମେ କ୍ରମେ ଯନ୍ତ୍ରଣା ବଢ଼ିଲା ଓ ଶଯ୍ୟାଶୟୀ ହୋଇଗଲି । ସବୁଠାରୁ ଗଭୀର ଦୁଃଖ ଅନୁଭବ କରୁଥିଲା ମୋ ବୋଉ । ମୋର ଆଶୁ ଆରୋଗ୍ୟ ଲାଭ ତଥା ଯନ୍ତ୍ରଣାରୁ ମୁକ୍ତି ପାଇଁ ସେ ନାନା ଉପାୟ - ମନ୍ତ୍ରାତେଲ, ଉଷୁମ ହଳଦି, ଝଡ଼ାଫୁଙ୍କାରେ ଲାଗିଲା । ସବୁ ବିଫଳ ହେବା ବଳକୁ ବାଗୀଟା ଗୋଟାଏ ଅରଖ ଫଳ ଆକାରର ହୋଇ ପାଚିଆସିଲା । ତହିଁ ଆରଦିନ ପୂଜଗୁଡ଼ାକ ପଦାକୁ ଦେଖାଗଲା । ପୂଜ ନିଷ୍କାସନ ହିଁ ଏକାର ଏକ ମାତ୍ର ଉପଚାର ଓ ଏହା ଯେ କେହି କଣ୍ଟାରେ ଫୋଡ଼ି ଛୁରୀ ମୂନରେ ଅଡ଼େଇ ଦେଇ ପୂଜ ବାହାର କରି ପାରିଥାନ୍ତେ । ମାତ୍ର କାହା ପରାମର୍ଶରେ ବୋଉ ଏକ ବିଶେଷ ଶଲ୍ୟ ଚିକିତ୍ସକଙ୍କୁ କଥା ଶୁଣି ତାଙ୍କୁ ଡକାଇ ଆଣିଲା । ସେ ବାଉଁଶ ବେଣ୍ଟ ଲଗା ଏକ ଲୁହା ଦଣ୍ଡକୁ ନିଆଁରେ ଗରମ କରି ମୋର ସେଇ ବାରୀ ଉପରେ ଧୀର ଭାବରେ ଚଲାଇ ଦେବାରେ ଲିଆ ଫୁଟିଲା ପରି ଭତଭତ ଶବ୍ଦ ହୋଇ ବାଗୀଟା ଫାଟିଗଲା । ସଙ୍ଗେ ସଙ୍ଗେ ମୋ ଜଙ୍ଘ ଦେଇ ପୂଜଗୁଡ଼ାକ ତଳକୁ ବୋହିଗଲା । ଏହାପରେ ଗୋଟାଏ ପାନରେ ଉଷୁମ ଘିଅ ବୋଳି ସେ ଘାଆ ଉପରେ ପକାଯାଇ ୨/୩ ଖଣ୍ଡ କଟା ସୋଲ ପାନର ଧାରରେ ରଖି ପଟି ବାନ୍ଧି ଦିଆଗଲା । ଏହାପରେ ଆସ୍ତେ ଆସ୍ତେ ମୁଁ ଭଲ ହୋଇଗଲି । ଖୁବ୍ ସମ୍ଭବ ୧୨ ରୁ ୧୫ ଦିନ ମୁଁ ସ୍କୁଲରୁ ଅନୁପସ୍ଥିତ ଥିଲା । ଅବଧାନେ ୨ ଥର ଆସି ମୋତେ ଦେଖି ଯାଇଥିଲେ ।

ଭଲ ହୋଇଯିବା ପରେ ମୁଁ ପୁଣି ଚାହାଳୀକୁ ଗଲି । ଅବଧାନେ ଅନ୍ୟ ପିଲାମାନଙ୍କୁ ପାଠ ଦେଇ ମୋତେ ପରୀକ୍ଷା କରି ଚାଲିଲେ । ମୁଁ କିଛି ଭୁଲିନାହିଁ ବୋଲି ସଂପୂର୍ଣ୍ଣ ହୃଦ୍‌ବୋଧ ହେବା ପରେ ବୋଧେ ୨/୩ ଦିନ ଛାଡ଼ିଦେଇ ମୋତେ ଗୋଟିଏ ଗୀତ ମୁଖସ୍ଥ କରିବାକୁ ଦେଇ କହିଲେ - "ଏଇ ଗୀତଟି ନଳଭଙ୍ଗାର ବିଙ୍ଗାଣୀ । ଶିଖିସାରିଲେ ମୁଁ ଏହାର ପ୍ରୟୋଗବିଧି ବତାଇଦେବି । (ବିଙ୍ଗାଣୀ ଶବ୍ଦଟି ମୁଁ ନୂଆକରି ଶୁଣିଲି । ପରେ ପଚାରି ବୁଝିଲି ପ୍ରଧାନଉପାୟ ବା ମୂଳସୂତ୍ର )। ଏଇ ବିଶେଷ ଶବ୍ଦଟି ବେଳେ ବେଳେ ମନେ ପଡ଼ିଗଲେ ହସ ଓ ବାଞ୍ଛୀ ଅବଧାନଙ୍କ ପାଠପଢ଼ାର ବହୁତ କଥା ଆପେ ଆପେ ମୋର ମାନସ ପଟରେ ଅଙ୍କିତ ହୋଇ ଉଠେ ।

"ଗୀତଟି :

ପଣକୁ ପଣ ପାଞ୍ଚକଡ଼ା ମାଗଣ
ପଣ ଗଣ୍ଡ ଅଷ୍ଟଦାଢ଼,
ଗଣ୍ଡା ଗଣ୍ଡା ଅଷ୍ଟବିଦାଢ଼ ହୁଅଇ
ପଣେ କଡ଼ା ବେନିଦାଢ଼।
ଏହିରୂପେ କଡ଼ାଗଣ୍ଡାକୁ ଗୁଣିଲେ
ହୁଅଇ ବିଦାଢ଼ ବେନି,
କଡ଼ାକୁ କଡ଼ାରେ ଗୁଣିଲେ ଜାଣିବ
ବିଦାର ଅର୍ଦ୍ଧଘେନି ।
କାହାଣ ସଙ୍ଗତେ ଯାହାକୁ ଗୁଣିବ
ମୂଳତା'ର ସେହିହୁଏ,
ଚାଟମାନଙ୍କର ପ୍ରୟୋଜନ ଅର୍ଥେ
ଲୀଳାବତୀ ସୂତ୍ର କହେ ।

(ଖ)

ଜରିବକୁ କଡ଼ି ମାଗ ଆଠଗଣ୍ଡା
କଡ଼ିକଡ଼ିତକ୍ଷ ଆଠ,
ଜରିବେ ଜରିବେ ଅଢ଼ାଇ
ଗୁଣ୍ଠକୁ ମନେ ହେତୁ କର ଚାଟ ।

ଏହି ଲୀଳାବତୀ ସୂତ୍ରଟିର ଅବଲମ୍ବନରେ ଜମି-ମାପ ସମ୍ବନ୍ଧୀୟ ଧାରଣା ପିଲାମାନଙ୍କୁ ଦିଆଯାଉଥିଲା । ମୁଁ ଓ ମୋ ବୟସର ଅନେକ ପିଲା ଏହାକୁ ଅଙ୍କରେ କଷି ଅବଧାନଙ୍କୁ ଦେଖାଉଥିଲୁ । ମାତ୍ର ଏହା ପିଲାମାନଙ୍କର ବୟସ ଉପଯୋଗୀ ପାଠ ନଥିଲା । କେବଳ ଅଭ୍ୟାସ ଥିଲେ କାହାରି କାହାରି ବଡ଼ଦିନକୁ କାମରେ ଲାଗୁଥିଲା । ଏବେ ଏ ପ୍ରକାର ମାପର ପ୍ରୟୋଜନ ତ ଆଉ ନାହିଁ କହିଲେ ଚଳେ । ମାତ୍ର ଓଡ଼ାଙ୍କ ମେଲାଙ୍କର ବ୍ୟବହାର ଏବେ ବି ଚିରନ୍ତନ ହୋଇ ଆଧୁନିକ ଗଣିତ ବହି ପିଲାମାନଙ୍କୁ ଶିକ୍ଷା ଦିଆଯାଉଛି । ଗୋଟିଏ ଉଦାହରଣ ଓ ତାହାର ସମାଧାନ ନିମନ୍ତେ ଲୀଳାବତୀ ସୂତ୍ରର ସାହାଯ୍ୟ ନିଆଯାଇଛି ।

ପ୍ରଶ୍ନ : ଜଣେ ଲୋକ ପ୍ରଥମ ଦିନ ଟଙ୍କାଟିଏ, ଦ୍ୱିତୀୟ ଦିନ ଦୁଇଟଙ୍କା ଓ ତୃତୀୟ ଦିନ ତିନିଟଙ୍କା କ୍ରମରେ ରଖିଲେ ଦଶଦିନ ପରେ ତା ପାଖରେ କେତେଟଙ୍କା ଥିବ ?

ଉତ୍ତର : ଅର୍ଥାତ୍ ଅଡ଼ାଙ୍କ ଅଙ୍କ ୧୦କୁ ନିମ୍ନ ନିୟମ ଅନୁସାରେ ସମାଧାନ କଲେ ଉତ୍ତର ଅର୍ଥାତ୍ ମେଳାଙ୍କ ଆସିବ ।

ସୂତ୍ର :

(କ) ଓଡ଼ାଙ୍କ ଅଙ୍କ କରି ବେନିଭାଗ
ମୂଳପିଣ୍ଡ ଭାଗେ ଗୁଣିବ ଆଗ ।
ଆର ଭାଗକୁ ମିଶାଇଲେ ତହିଁ
ମେଳାଙ୍କ ହୁଅଇ ସନ୍ଦେହ ନାହିଁ ।

(ଖ) ଓଡ଼ାଙ୍କ ଅଙ୍କରେ ମିଶାଣ
ଏକ ଓଡ଼ାଙ୍କର ଅର୍ଦ୍ଧ ନିଅ ।
ମିଶାଣ ଫଳକୁ ଓଡ଼ାଙ୍କ ଅର୍ଦ୍ଧରେ
ଗୁଣି ମେଳାଙ୍କଟି ପାଅ ।

ସମାଧାନ : ଓଡ଼ାଙ୍କ ୧୦ ÷ ୨ = ୫

(କ) ୧୦ x ୫ = ୫୦
ଉତ୍ତର : ୫୦ + ୫ = ୫୫

(ଖ) ଓଡ଼ାଙ୍କ ୧୦ + ୧ =୧୧
ଓଡ଼ାଙ୍କ ଅର୍ଦ୍ଧ ୧୦ ÷ ୨ = ୫
ଉତ୍ତର: ୧୧ ÷ ୫ = ୫୫

ପରିବର୍ତ୍ତିତ ନିୟମ ଅନୁସାରେ ସ୍ମରଣାତୀତ କାଳରୁ ଚଳି ଆସୁଥିବା ବିଭିନ୍ନ ପ୍ରକାରର ପରିମାପର ଏବେ ନାମଗନ୍ଧ ନାହିଁ । ସେଗୁଡ଼ିକ ପୂର୍ବର ଜଟିଳତା ପରିହାର କରି ଏବେ ଇତିହାସର ବିଷୟବସ୍ତୁରୂପେ ରହିଗଲେଣି ।

**ଏହାର ସାମାନ୍ୟ ସୂଚନା ମାତ୍ର :**

ମାଣକ ୨୫ ଗୁଣ୍ଠ, ଗୁଣ୍ଠକ ୧୬ ବିଶ୍ୱା, ବିଶ୍ୱା ବା ପଣକ ୨୦ ଗଣ୍ଡା । ଗଣ୍ଡା ୪ କଡ଼ା । ଏହି କଡ଼ାକର ବିଭାଗମାନ ମନେ ରଖିବା ଅତି ଦୁରୂହ ବ୍ୟାପାର ଥିଲା । ଯଥା କଡ଼ାକ ୨ ବେନି ୩ କ୍ରାନ୍ତି ୪ ବେଦ ୫ ବଟ ୬ ଋତୁ ୭ ସମୁଦ୍ର ୮ ବସୁ ୯ - ୧୦ ଦିଗ ୧୧ ରୁଦ୍ର ୧୨ ବ୍ରହ୍ମ ୧୩ କାକ୍ ୧୪ ଭୁବନ ୧୫ ତିଥି ୧୬ କଳା ୧୭ ବିକଳା ୨୭ ନକ୍ଷତ୍ର ଏହିପରି ।

**ଆଗର ଟଙ୍କାର ବିଭିନ୍ନ ବିଭାଗ ବା ଭଗ୍ନାଂଶ :**

ଟଙ୍କାକୁ ୧୬ ଅଣା ଓ ୬୪ ପଇସା । ଅଣାକ ୪ ପଇସା । ପଇସାକ ୨ ଅଧଲା ୩ ପାହୁଲା ଓ ୪ ଛଦାମ ଥିଲା । ଆଗେ ଟଙ୍କା, ଅଧୁଲି, ସୁଉକି, ଦୋଅଣି, ଅଣି, ପଇସା, ଅଧଲା ଓ ପାହୁଲା ପାଇଁ ମୁଦ୍ରା ପ୍ରଚଳିତ ଥିଲେ ମଧ୍ୟ ଛଦାମ ପାଇଁ ମୁଦ୍ରା ନଥିଲା । କିନ୍ତୁ ଜଣେ ଦୋକାନୀକୁ ପଇସାଟିଏ ଦେଇ ଛଦାମ ଛଦାମ କରି ଚାରି ପ୍ରକାର ସଉଦା ନେଇ ପାରୁଥିଲା ।

**ଓଜନ ପାଇଁ ବ୍ୟବହୃତ ବଟକରା :** ମହଣ, ସେର, ପାଆ, ଅଧପା ଓ ଛଟାଙ୍କି । କଟକୀ ଓ ବାଲେଶ୍ୱରୀ ଭାବରେ ଦୁଇ ପ୍ରକାରର ସେର ବଜାରରେ ପ୍ରଚଳିତ ହେଉଥିଲା । ପାର୍ଥକ୍ୟ ଏତିକି ଯେ କଟକୀ ସେର ଓଜନ ୧୦୫ ତୋଳା, ବା ଭରି ବା ଟଙ୍କା । ବାଲେଶ୍ୱରୀ ସେରର ଓଜନ ୮୦ ଟଙ୍କା ଅଟେ । ପରିବା ପତ୍ର ପାଇଁ ବିଶା, ପଳ, କରଷି ଆଦି ମାପ ଓଜନ ପ୍ରଚଳିତ ଥିଲା । ଏତଦ୍ ବ୍ୟତୀତ ଆଉ କେତେକ ପରିମାପ ଯଥା - ସୁନାରୁପା ଭରି ମସା, ରତି, ଧାନ ଆଦିରେ ଓଜନ ହେଉଥିବା ବେଳେ ଅନ୍ୟ କେତେକ ସ୍ଥାନରେ ଅଡ଼ା, ବୋଡ଼ା, ସୋଲାର ପ୍ରଚଳନ ପୁଣି ଧାନମାପରେ ଭରଣ, ପୌଟି ଗୌଣୀର ପ୍ରଚଳନ ଥିଲା ।

ଏବେ ଆମର ବହିପଢ଼ା ଓ ଲେଖାଲେଖି ସମ୍ପର୍କରେ କିଛି କହିବି । ଯେଉଁମାନେ ବହି ପଢ଼ିବା ପାଇଁ ଉପଯୁକ୍ତ ହୋଇଯାନ୍ତି, ସେମାନଙ୍କୁ କଳାକଳେବର କହ୍ନାଇ, ଗୋପୀ ଭାଷଣ, ମଥୁରାମଙ୍ଗଳ, ଶେଷରେ ଭାଗବତର ଏକାଦଶସ୍କନ୍ଧ ପଢ଼ିବାକୁ ହେଉଥିଲା । ଏତଦ୍‌ବ୍ୟତୀତ ଲାବଣ୍ୟବତୀ ବିଦଗ୍ଧ ଚିନ୍ତାମଣି, ବୈଦେହୀଶ ବିଳାସ ଆଦି କେତେକ ପ୍ରାଚୀନ ସାହିତ୍ୟରୁ ବଛା ବଛା ଛାନ୍ଦ ଆମେ ଶୁଆପରି ମୁଖସ୍ଥ କରିବାକୁ ବାଧ୍ୟ ହୋଇଥାଉ । ଛାନ୍ଦ ଗୁଡ଼ିକର ଅର୍ଥ ବା ଆବଶ୍ୟକତା ସଂପର୍କରେ କୌଣସି ଧାରଣା ମୋର ନଥିଲେ ମଧ୍ୟ ବୋଲା ଯାଉଥିବା ସ୍ୱର ହିଁ ମୋର ପ୍ରଧାନ ଆକର୍ଷଣ ଥିଲା । ଗୀତ ଶୁଣିବାକୁ ସମସ୍ତଙ୍କର ଆଗ୍ରହ ଥାଏ । ବାରମ୍ବାର ଆବୃତ୍ତି କରିବାରେ ମୋର ବହୁଛାନ୍ଦ ଆପେ ଆପେ ମନେ ରହିଗଲା । ବୟସ ବୃଦ୍ଧି ସହିତ ମୁଁ ରୀତି ଯୁଗର ଛାନ୍ଦ ଓ ତହିଁରେ ଥିବା ଅନୁପ୍ରାସ ଯମକର ମନୋହର ବିନ୍ୟାସ, କବିଙ୍କର ଅସୀମ ଜ୍ଞାନ ଓ ବିଚିତ୍ର ରଚନାଶୈଳୀରେ ଧୀରେ ଧୀରେ ଅନୁପ୍ରାଣିତ ହୋଇଥିଲି । ପରବର୍ତ୍ତୀ ଜୀବନରେ ମୁଁ ପ୍ରାଚୀନ କବିମାନଙ୍କର ରଚନା ପ୍ରତି ଏକାନ୍ତ ଆଗ୍ରହୀ ହୋଇ ଉଠିଲି । ପିଲାଦିନରୁ ଘୋଷିଥିବା ଏବଂ ସେତେବେଳେ ମୋ ପକ୍ଷରେ ଏକାନ୍ତ ଅବୋଧ୍ୟ ଥିବା ଛାନ୍ଦଗୁଡ଼ିକର ଭାବାର୍ଥ ବୁଝିବାରେ ସାମର୍ଥ୍ୟ ଅର୍ଜନ କରିବାପରେ ମୁଁ ଏକାନ୍ତ ଭାବରେ ଛାନ୍ଦାନୁରାଗୀ ହୋଇ ପଡ଼ିଲି ଓ ୧୯୪୩

ରୁ ୧୯୪୮ ମଧ୍ୟରେ ନିମାପଡ଼ାରେ ଥିବା ସମୟରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଉପଯୁକ୍ତ ଟୀକା ସହିତ ପ୍ରାଚୀ-ସଂସ୍କରଣରୁ ପ୍ରାୟ ଅନେକ ପୁସ୍ତକ (ବୈ. ବିଳାସ, ଲାବଣ୍ୟବତୀ, ବିଦଗ୍ଧ ଚିନ୍ତାମଣି ଆଦି ) କ୍ରୟ କରି ଅବସର ସମୟରେ କେବଳ ସେହି ଅମୂଲ୍ୟ ସାରସ୍ୱତ ସମ୍ଭାରର ରଚନା ପରିପାଟୀରେ ଅଧିକରୁ ଅଧିକ ମୁଗ୍ଧ ହେବାରେ ଲାଗିଲି । ବିଶେଷ କରି ଆର୍ତ୍ତବାବୁଙ୍କ ଟୀକା କବିତାର ଭାବାର୍ଥ ବୁଝିବାରେ ମୁଖ୍ୟ ସହାୟକ ହୋଇଥିଲା । ଏବେ ମଧ୍ୟ ମୁଁ ସମୟ ପାଇଲେ ଉକ୍ତ ପ୍ରାଚୀ ସଂସ୍କରଣର ପୁସ୍ତକଗୁଡ଼ିକୁ ପାଠକରି ଅପାର ଆନନ୍ଦ ଲାଭ କରୁଛି । ବିଶେଷ କରି ପିଲାଦିନରୁ ଅମରକୋଷକୁ ଶୁଆ ପରି ଘୋଷିଥିବା କଥା ସେତେବେଳେ ଖୁବ୍ ବିରକ୍ତିକର ଓ ନିରର୍ଥକ ମନେ ହେଉଥିଲେ ମଧ୍ୟ ମୋର ପରବର୍ତ୍ତୀ ଜୀବନରେ ଉକ୍ତ ମହାନ୍ ଗ୍ରନ୍ଥ ଅମରକୋଷହିଁ ପ୍ରାଚୀନ ରୀତିଯୁଗର ରଚନାଗୁଡ଼ିକୁ ବୁଝିବାରେ ସହାୟତା କରିଥିଲା ।

କହିବାକୁ ଭୁଲିଯାଇଛି ଯେ ପ୍ରାରମ୍ଭରୁ ହିଁ ମୁଁ ଗଣିତ ପାଠଟି ପ୍ରତି ଯେତିକି ବୀତସ୍ପୃହ, ସାହିତ୍ୟ ପ୍ରତି ତାଠାରୁ ବହୁଗୁଣରେ ଅନୁରକ୍ତ ଥିଲି । ଆମ ଅବଧାନଙ୍କୁ ମଧ୍ୟ ଏ କଥା ଅଜଣା ନଥିଲା । ବୋଧହୁଏ ସେହି କାରଣରୁ ଗଣିତ ପ୍ରତି ବିତୃଷ୍ଣା ତଥା ସାହିତ୍ୟ ପ୍ରତି ଅଧିକ ଅନୁରାଗ ଥିବା କେତେଜଣ ପିଲାଙ୍କୁ ଅମରକୋଷରୁ କିଛି କିଛି ବର୍ଗ ଘୋଷିବାକୁ ଦିଆଯାଇଥାଏ । ଏହା କାହାପ୍ରତି ବାଧ୍ୟ ବାଧ୍ୟକତାର ବିଷୟ ନଥାଏ ।

କେଜାଣି କାହିଁକି ଆଦୌ ଅର୍ଥ ନବୁଝୁଥିଲେ ମଧ୍ୟ ଅମରକୋଷର ସ୍ୱରବ୍ୟଂ ଠାରୁ ଆରମ୍ଭ କରି ମୁଁ ଅନେକ କିଛି ଘୋଷିବାରେ ଆଗ୍ରହୀ ଥିଲି । ସେତେବେଳର ସ୍ମୃତିଶକ୍ତି ଏତେ ପ୍ରଖର ଥିଲା ଯେ ଆଜି ୮୫ ବର୍ଷ ପରେ ମଧ୍ୟ ସେତେବେଳର ସେହି ଅବୋଧ୍ୟ ଅମରକୋଷ ମୋତେ ବହୁ ଭାବରେ ସାହାଯ୍ୟ କରୁଛି । ସ୍ୱର୍ଗବର୍ଗର ଅନେକ କଥା ଏବେ ମଧ୍ୟ ମୁଁ ବେଶ୍ ଆବୃତ୍ତି କରି ପାରୁଛି । ଏପରି ଏକ ଉପସ୍ଥାପନା ମୋର କ୍ରମିକ ବର୍ଣ୍ଣନାରେ ବ୍ୟାଘାତ ସୃଷ୍ଟି କରିଛି । ବାଲ୍ୟ ଜୀବନର ସ୍ମୃତିକୁ ମୁଁ ସଂପୂର୍ଣ୍ଣ ବାର୍ଦ୍ଧକ୍ୟ ଜର୍ଜରିତ ଜୀବନ ସହିତ ଅତି ଅତର୍କିତ ଭାବରେ ଯୋଡ଼ି ଦେଇଛି ।

## ଆମ ପିଲାଦିନର ଲିଖନ ପ୍ରଣାଳୀ

ଚାହାଳୀ ପଢ଼ାର ଶେଷ ଭାଗ ଆଡ଼କୁ ଆମେ କାଗଜ କଲମ ବ୍ୟବହାର କରି କାଗଜ ଉପରେ ହସ୍ତାକ୍ଷର ଲେଖିବା, ଗଣିତ କଷିବା, କିମ୍ବା କୌଣସି ଶିଖିଥିବା

ଗୀତ ଲେଖି ଅବଧାନଙ୍କୁ ଦେଖାଉଥାଉ ।

ପ୍ରଥମରୁ ଚାହାଳୀ ଘରର ମାଟିଚଟାଣ ଉପରେ କୋଚିଲା ବା ଦୁଧ ଖଡ଼ିରେ, କିଛି କାଳପରେ ସିଲଟ ଉପରେ ସରୁ ସିଲଟ ଖଡ଼ିରେ ଲେଖିବା ପରେ ଆମେ କାଳି, କଲମ ବ୍ୟବହାର କରି କାଗଜ ଉପରେ ଲେଖିବାର ଯୋଗ୍ୟତା ହାସଲ କରୁଥିଲୁ ।

## କଲମ :

ମୟୁର ପୁଚ୍ଛର ପର ହିଁ କଲମ ରୂପେ ବ୍ୟବହୃତ ହୁଏ । ଏହାର ମୂଳଅଂଶକୁ ଫାଳିକିଆ କାଟି ମଝିରୁ ଅଳ୍ପ ଚିରି କଲମ ପ୍ରସ୍ତୁତ କରାଯାଏ । ଏ ଦାୟିତ୍ୱ ଯେ କେହି ତୁଲାଇ ପାରୁନଥିଲେ । କେବଳ ଗୁରୁଜୀ ଆମ ସମସ୍ତଙ୍କ ପାଇଁ କଲମ ତିଆରି କରିବା ପରେ ପରୀକ୍ଷା କରି ଆମକୁ ଦେଇଥାନ୍ତି । ଏହା ଆବଶ୍ୟକ ସ୍ଥଳେ (ମୁଣ୍ଡା ହୋଇଗଲେ) ପୁନଃ ପ୍ରକ୍ରିୟାକରଣ କରାଯାଇ ଲିଖନୋପଯୋଗୀ କରାଯାଉଥାଏ । କେହି କେହି କାଠି ସାହାଯ୍ୟରେ କଲମ ତିଆରି କରିଥିବା ଶୁଣା ଯାଉଥିଲେ ମଧ୍ୟ ତାହା ପରକଲମ ସହିତ ପ୍ରତିଦ୍ୱନ୍ଦିତା ପାଇଁ ସମର୍ଥ ହୋଇ ପାରି ନଥିଲା ।

## କାଳି ଓ ଦୁଆତ

ମାଟିରେ ତିଆରି କରି ଭାଟିରେ ପୋଡ଼ା ଯାଇଥିବା ଏକ ଗୋଲାକାର ସୁଦୃଶ୍ୟ ପାତ୍ର ଦୁଆତ ରୂପେ ବ୍ୟବହୃତ ହେଉଥିଲା । କିଛିଦିନ ପରେ କାଚ ତିଆରି ଏକପ୍ରକାର ଚକଚକିଆ ଦୁଆତ ବଜାରକୁ ଆସିଲା । ଏହା ଏପରି ଭାବରେ ନିର୍ମିତ ଥିଲା ଯେ କୌଣସି କାରଣରୁ ଓଲଟି ପଡ଼ିଲେ ମଧ୍ୟ ଦୁଆତରୁ କାଳି ଇଡ଼ି ଯାଉନଥିଲା । ଆମେ ପିଲାଦିନେ ହାତ ତିଆରି କାଳିକୁ ମାଟି ବା କାଚ ଦୁଆତରେ ରଖି ବ୍ୟବହାର କରୁଥିଲୁ । ଜଡାଙ୍ଗ ପତ୍ର ଓ ସୁନା ମକେଇ ପତ୍ର ସହିତ ଆଉ କେଉଁ ପତ୍ର ରସ ଯୋଗ କରାଯାଉଥିଲା ସ୍ପଷ୍ଟ ସ୍ମରଣ ହେଉନାହିଁ । ଏହି ପତ୍ରରସକୁ ଛାଣି ତହିଁରେ ଆବଶ୍ୟକ ପରିମାଣର ହୀରାକସ ସଂଯୋଗ କରି ବେଶ୍ ଉତ୍ତମ କାଳି ପ୍ରସ୍ତୁତ କରାଯାଉଥିଲା । ବେଳେ ବେଳେ ପୋଇ ମଂଜି ସଂଗ୍ରହ କରି ତହିଁରୁ ଏକପ୍ରକାର ନିକୃଷ୍ଟ ଧରଣର କାଳି ମଧ୍ୟ କେହି କେହି ପ୍ରସ୍ତୁତ କରିଥିବାର ମୋର ମନେଅଛି । କିଛିଦିନ ପରେ କାଳିର ବଟିକା ଏବଂ କାଳି ଚୂନାର ପୁଡ଼ିଆ ବ୍ୟବହୃତ ହେଲା ।

## ଚୋରି କରିଥିଲି

ଆଗରୁ କହିଛି ଗପବହି, ଗୀତବହି, ଗୀତିନାଟ୍ୟ ବହିମାନ ମୁଁ ପଢ଼ିବାକୁ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲି । ଘରେ ବେତାଳପଞ୍ଚବିଂଶତି, ହିତୋପଦେଶ ଆଦି ଅନେକ ବହି ପଢ଼ିବା ପରେ ସାଇ ବା ଗାଁରୁ ବହିମାଗି ଆଣି ପଢୁଥାଏ । ବହି ପଢ଼ିବା ମୋର ଏକପ୍ରକାର ନିଶାରେ ପରିଣତ ହୋଇ ସାରିଥାଏ ।

ଆମ ଗାଁ ବା ପାଖ ଗାଁରେ ମଝିରେ ମଝିରେ ଯାତ୍ରା ହୁଏ । ମୁକ୍ତ ରଙ୍ଗମଞ୍ଚର ଏହି ନାଟକ ଦେଖିବାରେ ମୋର ଖୁବ୍ ଆଗ୍ରହ ଥାଏ । ଦିନେ ଭାବିଲି, କେତେଖଣ୍ଡ ଗୀତାଭିନୟ ଓ ଗପବହି କିଣିବି । ମାତ୍ର ପଇସା ଆଣିବି କୋଉଠୁ ? ବହି କିଣିବା ପାଇଁ ପଇସା ମାଗିଲେ ବୋଉ ଜମା ଦେବ ନାହିଁ । ଏକଥା ମୁଁ ଭଲକରି ଜାଣିଥିଲି । ତେଣୁ ପଇସା ପାଇବା ପାଇଁ ଏକ ବିକଳ୍ପ ଚିନ୍ତା ମୋ ମନରେ ଜାଗ୍ରତ ହେଲା । ବୋଉର ଗୋଟିଏ ଛୋଟ କାଠ ଆଲମାରି ଥାଏ । ସେଥିରେ ସେ ଗୋଟିଏ ତାଳପତ୍ର ଭୋଗେଇରେ ଗୁଡ଼ିଏ ରେଜା ପଇସା ରଖି ଖର୍ଚ୍ଚ କରୁଥାଏ । ଆଲମାରିଟି ସବୁବେଳେ ଖୋଲା ଥାଏ । ବହି କିଣିବାର ଆଗ୍ରହାତିଶଯ୍ୟରୁ ମୁଁ ବୋଉ ଆଲମାରିରୁ ପ୍ରଥମ ଥର ପାଇଁ ସୁକିଟିଏ (ଚାରଣା) ନେଇ ଆସିଲି । ସର୍ବ ପ୍ରଥମ ଚୋରିଲବ୍ଧ ଧନରେ ମୁଁ କିଣିଲି ନାଟକ 'ଖାଣ୍ଡବ ଦହନ' । କିପରି କାହାଦ୍ୱାରା ମୁଁ ଏ ବହି କିଣିଥିଲି ସେ କଥା ଆଦୌ ମନେ ପଡୁନାହିଁ । ଉକ୍ତ ଗୀତାଭିନୟ 'ଖାଣ୍ଡବ ଦହନ'ଟି' ଅଭୁଲା ସ୍ମୃତିର ଆଲେଖ୍ୟ ବହନ କରି ମୋ ଆଲମାରିରେ ଏ ପର୍ଯ୍ୟନ୍ତ ଗଚ୍ଛିତ ଅଛି । ଏହାପରେ ମୁଁ ଅନସୃତ ପ୍ରଣାଳୀରେ କର୍ଣ୍ଣବଧ, ଅମର ବିଳାସ, ପ୍ରସ୍ତାବସିନ୍ଧୁ, ଶୁଆସାରି କଥା ଆଦି ୮/୧୦ ଟି ଚାରିଅଣିଆ ବହି କିଣିଥିଲି । ଚାରଣା, ଆଠଣା ପରି ଚୋରି କଥା ମୋ ବୋଉ ଜମା ଜାଣି ପାରି ନଥିଲା । ମୋ ସାଙ୍ଗସାଥୀମାନେ ମଧ୍ୟ ମୁଁ କିଣିଥିବା ବହିସବୁ ମାଗିନେଇ ପଢ଼ନ୍ତି ଓ ବେଳେ ବେଳେ କେହି କିଛି ଗପ ବହି ପାଇଲେ ମୋତେ ମଧ୍ୟ ପଢ଼ିବାକୁ ଦିଅନ୍ତି ।

ଚାହାଲୀ ପଢ଼ା ଆମର ଶେଷ ହୋଇ ଆସିଲା । ଆଉ କିଛିଦିନ ପରେ ଆମେ ଏଠାକୁ ଆଉ ପଢ଼ିବାକୁ ଆସିବୁ ନାହିଁ । ମାଇନର ପଢ଼ିବାକୁ ୫/୬ ମାସ ଆହୁରି ବାକିଥାଏ । ଆମେ ଚାହାଲୀକୁ ଯାଉ, ମାତ୍ର ଅବଧାନେ ଆମକୁ ଅନ୍ୟ ପିଲାଙ୍କୁ ପଢ଼ାଇବା ଦାୟିତ୍ୱ ଦେଇଥାନ୍ତି ।

## ପୁନଶ୍ଚ ରୋଗ ଶଯ୍ୟାରେ

ଅନେକ ଦିନ ଧରି ମୁଁ ନୀରୋଗ ଥିଲେ ମଧ୍ୟ ହଠାତ୍ ମୋତେ ଜର ହେଲା । ୫/୬ ଦିନ ଧରି କ୍ରମାଗତ ଜର ଛାଡ଼ିଲା ନାହିଁ । ତାପରେ ଆରମ୍ଭ ହେଲା ନାକରକ୍ତ ଝାଡ଼ା, ଅସହ୍ୟ ମୁଣ୍ଡବିନ୍ଧା । ଝାଡ଼ା ଯାଇ ଯାଇ ମୁଁ ସଂପୂର୍ଣ୍ଣ ହାଲିଆ ହୋଇ ପଡ଼ିଥାଏ । ବୋଉ କେତେକଅଣ ଔଷଦ ବରାବର ଆଣି ଦେଉଥିଲେ ମଧ୍ୟ କିଛି ହେଲେ ଉପଶମ ହେଉନଥାଏ । ଗାଆଁର ସକଳ ଚେଷ୍ଟା ବ୍ୟର୍ଥ ହେବାରୁ ବାପା ପିପିଲି ଡାକ୍ତରଙ୍କଠାରୁ ଔଷଧ ଆଣିଲେ । ଝାଡ଼ା ବନ୍ଦ ହୋଇଗଲା ସିନା ଜର ଉପଶମ ହେଲା ନାହିଁ । ସେତେବେଳକୁ ୧୦ ଦିନ ଅତିକ୍ରାନ୍ତ ହୋଇ ସାରିଥାଏ । ମୋର ଶାରୀରିକ ଅବସ୍ଥା ଶୋଚନୀୟ ହୋଇ ଆସିଲା । ଜର ଦିନେ ଛାଡ଼ିଗଲେ ପୁଣି ମାଡ଼ି ବସୁଥିଲା । ଛାତି ପଞ୍ଜରା ହାଡ଼ ଗଣି ହେବାକୁ ଲାଗିଲା । ବୋଉ କିନ୍ତୁ ତା'ର ପୂର୍ବ ପ୍ରଚେଷ୍ଟା ଚେର, ମୂଳି, ପତ୍ରରସ, ମହୁ, ପାଚନ ଆଦି ସହିତ ଦେବଦେବୀଙ୍କୁ ନାନାଦି ଦ୍ରବ୍ୟ ଦେବାର ଲୋଭ ଦେଖାଇ ମଧ୍ୟ ନିରାଶ ହୋଇ ପଡ଼ିଲା । ମୋ ବିଛଣା ଛାଡ଼ି କୁଆଡ଼େ ହେଲେ ଗଲା ନାହିଁ ।

ବୋଉ ଆଖିରେ ଲୁହ ଦେଖି ମୋତେ କାନ୍ଦ ମାଡ଼ିଲା । ମୁଁ କାନ୍ଦି ଉଠିଲି । ବୋଉ କି ଆଉ ସମ୍ଭାଳି ହୁଏ ! ସେ ଚଟ୍‌କରି ପଣତ କାନିରେ ଲୁହ ପୋଛି ଦେଇ ମୋତେ ଆଉଁଶି ଆଉଁଶି କହିଲା, " - ନାଇଁ ଲୋ ଧନ, ତୋ ଦିହ ଶୀଘ୍ର ଭଲ ହୋଇଯିବ । ମୁଁ ପରା ସବୁ ଦିଅଁ ଦେବତାଙ୍କ ପାଦରେ ଲୁହ ଢ଼ାଳି ଆକୁଳ ପ୍ରାର୍ଥନା କରୁଛି । ଠାକୁରେ ମୋ ଡାକ ନିଶ୍ଚୟ ଶୁଣିବେ । ଠାକୁର ଭାରି ଦୟାଳୁ । ସେ କାହାରି ଦୁଃଖ ସହି ପାରନ୍ତି ନାହିଁ । ତୁ ଚିନ୍ତା କରନା ।'' ଏତିକି କହି ସେ ମୋତେ କୁଣ୍ଢେଇ ପକାଇ ପୁଣି ଲୁହ ଛଳ ଛଳ ହୋଇ ଉଠିଲା । ମୁଁ କିଛି ଭାବି ପାରିଲି ନାହିଁ । ଅନେକ ସମୟ ଯାଏ ମୋତେ କୁଣ୍ଢାଇ ଧରି ସେ ମୋ ବିଛଣାରେ ବସି ରହି ଆକାଶ ପାତାଳ ଭାବିବାରେ ଲାଗିଥାଏ । କିନ୍ତୁ ବୋଉ କୋଳର ଉଷ୍ମତା ମୋତେ ବେଶ୍ ଆନନ୍ଦ ଦେଉଥାଏ । ସେତେବେଳକୁ ମୋ ଚେହେରା ଏପରି ହୋଇ ଉଠିଥିଲା ଯେ ଖାଲି ହାଡ଼ଗୁଡ଼ିକ ଉପରେ ଚମର ଏକ ଢ଼ାଙ୍କୁଣୀ ମାତ୍ର ରହିଥିଲା । ଏପରି ଅବସ୍ଥା ଦେଖି ପ୍ରାୟ ସମସ୍ତେ ଧନ୍ଦାହାନ ହୋଇ ପଡ଼ିଥାନ୍ତି । ବୋଉକୁ ନାନା ପ୍ରକାରେ ସାନ୍ତ୍ୱନା ଦେଇ ସମବେଦନା ଦେବାରେ ଲାଗିଥାନ୍ତି ସତ ମାତ୍ର ବୋଉ ପାଟିରୁ କଥା ବାହାରୁ ନଥାଏ କି ସେ କାହାକୁ କିଛି କହୁ ନଥାଏ । ତାର ତୋଫା ଗୋରା ମୁହଁରେ ଏକ ଅଜଣା ଆଶଙ୍କାର କଳା ଛାଇ ଘୋଟିଗଲା ପରି ମନେ ହେଉଥାଏ ।

## ଅବିଶ୍ୱସନୀୟ ହେଲେ ମଧ୍ୟ ସତ

ମୋ ଆଈ ଥିଲା ମୋ ବୋଉର ରକ୍ଷାକବଚ । ଆମ ପରିବାରର ଏକମାତ୍ର ସାହାଯ୍ୟକାରିଣୀ । ଯା ଭିତରେ ଆଈ ପଠାଇଥିବା ବାରିକଠାରୁ ମୋ ଅବସ୍ଥା ତଥା ବୋଉର ହତାଶାଜର୍ଜରିତ ମନୋଭାବ ଆଈର ମାତୃ ହୃଦୟକୁ ଦ୍ରବୀଭୂତ କରିବାକୁ ଲାଗିଲା । ସେ ଏକ ଦୁଃସାହସିକ କାର୍ଯ୍ୟପାଇଁ ଅଗ୍ରସର ହେବାକୁ ପାଶ୍ଚାତପଦ ହୋଇ ନଥିଲା । ବଳଙ୍ଗା ନିକଟସ୍ଥ ଭାର୍ଗବୀ ନଦୀ କୂଳରେ ଏକ ନିକାଞ୍ଚନ ସ୍ଥାନରେ ଜଣେ ତାନ୍ତ୍ରିକ ସାଧୁ ଆଶ୍ରମ କରିଥାନ୍ତି । ସେ ଖୁବ୍ କମ୍ ସମୟ କଥାଭାଷା କରନ୍ତି, କେହି ଲୋକ ତାଙ୍କର ଶରଣାପନ୍ନ ହେଲେ ସେ କିଛି ସମୟ ଆଖି ବନ୍ଦ କରି ନୀରବ ରହିବା ପରେ ସାହାଯ୍ୟର ହସ୍ତ ପ୍ରସାରଣ କରନ୍ତି । ଅଥବା 'ଅସମ୍ଭବ' କହି ପ୍ରାର୍ଥନାକାରୀକୁ ହସ୍ତର ଇଙ୍ଗିତରେ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଇ ପୁନର୍ବାର ଚକ୍ଷୁ ମୁଦ୍ରିତ କରିଥାନ୍ତି । ମାତ୍ର ଯେଉଁ କେତେ ଅଳ୍ପ ଲୋକଙ୍କ ପ୍ରତି ପ୍ରସନ୍ନ ହୁଅନ୍ତି, ତା'ଙ୍କ ପ୍ରାର୍ଥନା ଆଶ୍ଚର୍ଯ୍ୟଜନକ ଭାବରେ ପୂରଣ ହୋଇଥାଏ । ତାନ୍ତ୍ରିକ ସାଧୁ ହୋଇଥିବାରୁ ତାଙ୍କୁ କେହି ସାହସ କରି କୌଣସି କାର୍ଯ୍ୟପାଇଁ ବାଧ୍ୟ କରିବାକୁ ସାହସ କରନ୍ତି ନାହିଁ । କିନ୍ତୁ ତାଙ୍କର ଅପାର ଶକ୍ତି ବିଷୟରେ ପ୍ରଚାର ଆପେ ଆପେ ହୋଇଯାଉଥାଏ ।

ଆଈ ନିଜେ ଯାଇ ବା କାହାଦ୍ୱାରା ସାଧୁଙ୍କ କରୁଣା କାମନା ଲାଭ କରିବାରେ ସମର୍ଥ ହୋଇଥିଲା ଓ ସନ୍ନ୍ୟାସୀ ରୋଗଗ୍ରସ୍ତ ପିଲା ଦେଖିବା ପାଇଁ ସମ୍ମତି ପ୍ରଦାନ କଲେ । ଏତିକିରେ ଆଈ ଏକ ଉଜ୍ଜ୍ୱଳ ସମ୍ଭାବନାର କଳ୍ପନାରେ ଆତ୍ମବିସ୍ମୃତ ହୋଇ ଯାଇଥିଲା ଓ ତୁରନ୍ତ ଲୋକ ପଠାଇ ବୋଉକୁ ଏ ଶୁଭ ସମ୍ବାଦ ଦେଇଥିଲା । ବୋଉ ଏ ସମ୍ବାଦ ପାଇବା ପରଠାରୁ ତା ଗୋଡ଼ ଆଉ ତଳେ ଲାଗିଲା ନାହିଁ । ସାଧୁଙ୍କ ଉପସ୍ଥିତିର ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ସେ ଉଲ୍ଲସିତ ହୋଇ ଉଠୁଥାଏ । ପୂର୍ବର ଦୁଃଖ, ନୈରାଶ୍ୟ ଓ ଆଶଙ୍କା ତା ମନରୁ ସମ୍ପୂର୍ଣ୍ଣ ପୋଛି ହୋଇ ଯାଇଥିଲା ।

\+ + + +

ଆଈର ଲୋକ ସାଥୀରେ ତାନ୍ତ୍ରିକ ଆସି ଆମ ଘରେ ପହଞ୍ଚି ଗଲେ । ତାଙ୍କୁ ଦେଖୁ ଦେଖୁ ବୋଉ ଲମ୍ବ ହୋଇ ତାଙ୍କ ପାଦତଳେ ପଡ଼ି ଚରଣ ସ୍ପର୍ଶ କରିବାକୁ ହାତ ବଢ଼ାଇ ଥିବା ବେଳେ ସାଧୁ କର୍କଶ ସ୍ୱରରେ ହଟୋ, ହଟୋ ବୋଲି କହି ପାଦ ଘୁଞ୍ଚାଇ ନେଇଥିଲେ ।

ସାଧୁଜୀ ମୋ ବିଛଣା ନିକଟକୁ ଆସି କିଛି ସମୟ ନିରୀକ୍ଷଣ କରିବା ପରେ ମୋ ମୁଣ୍ଡ ଏବଂ ଦେହରେ ହାତ ବୁଲାଇ କିଛି ମନ୍ତ୍ର ପାରାୟଣ କରିଥିଲେ । ମନ୍ତ୍ରପାଠ ପରେ ତାଙ୍କ ହାତରେ ଥିବା କମଣ୍ଡଳୁରୁ କେତେଟୋପା ପାଣି ମୋ ପାଟିରେ ଦେଇ ସର୍ବାଙ୍ଗରେ ଉକ୍ତ ଅଭିମନ୍ତ୍ରିତ ଜଳ ସିଞ୍ଚନ କରିଥିଲେ । ଏତିକି କରିବା ପରେ ସାଧୁ ଠିଆ ହୋଇଥିବା ଅବସ୍ଥାରେ ଚକ୍ଷୁମୁଦ୍ରିତ କରି କିଛି ସମୟ ଦଣ୍ଡାୟମାନ ରହିଲେ ।

କିଛି କ୍ଷଣ ପରେ ଆଖି ଖୋଲି ସାଧୁ କହିଲେ, "- ସମୟ ହୋଇଗଲା । ମୁଁ ଫେରିଯିବି । କାଲି ସକାଳୁ ଗୋଟିଏ ଚାରା ଅଶ୍ୱତ୍ଥଗଛ ଆଣି କୁଡୁଆରେ ମାଟି ଦେଇ ଅଗଣାରେ ରଖିବ । ପ୍ରତି ସନ୍ଧ୍ୟାରେ ଘିଅଦୀପ ଜାଳି ଗଳବସ୍ତ୍ର ହୋଇ ନିଜ ଅନ୍ତରର ଦୁଃଖ ନିବେଦନ କରିବ । ଏହି ପ୍ରକ୍ରିୟା ଠିକ୍ ସମ୍ପୂର୍ଣ୍ଣ ଏକମାସ ପର୍ଯ୍ୟନ୍ତ ଅବ୍ୟାହତ ରହିବ । ମାସ ପୂର୍ତ୍ତି ଦିବସରେ ବୃକ୍ଷଦେବତାଙ୍କୁ ନେଇ ଗାଁ ମୁଣ୍ଡର ଏକ ଉନ୍ମୁକ୍ତ ସ୍ଥାନରେ ପୋତି ତାହାର ସୁରକ୍ଷା ପାଇଁ ଯତ୍ନବାନ ହେବ । ପ୍ରତିଦିନ ଯଥା ସମୟ ପାଣି ଦେଇ ଆବଶ୍ୟକ ହେଲେ ବାଡ଼ ବୁଜି ଦିଆଯିବ । ଏହିପରି ଭାବରେ ୨୧ ଦିନ ପର୍ଯ୍ୟନ୍ତ ଯତ୍ନ ନେଇ ଦେଖିବ ଯଦି ବୃକ୍ଷଟି ସମସ୍ତ ଯତ୍ନ ସତ୍ତ୍ୱେ ତାର ପୂର୍ବ ସତେଜତା ହରାଇ ଝାଉଁଳିବା ଆରମ୍ଭ କରିବ ଓ ମାସ ଶେଷ ଦିନକୁ ସମ୍ପୂର୍ଣ୍ଣ ମରିଯି. ତା ହେଲେ ଠିକ୍ ୧୫ ଦିନ ଭିତରେ ପିଲା ରୋଗମୁକ୍ତ ହୋଇ ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇବ । ଯଦି ବୃକ୍ଷଟି ନୂତନ ପତ୍ରରେ ସତେଜ ହୋଇ ଆସିବ, ତେବେ ମୋତେ ସମ୍ବାଦ ଦେବ । ମୁଁ ମୋ ଆଶ୍ରମରେ ମାଆଙ୍କୁ ପୂଜା କରି ପୁନଃ ବ୍ୟବସ୍ଥା ମାଗିବି ।''

ବାସ୍, ଏତିକି କହି ସାଧୁ ନୀରବ ରହିଲେ ଓ ପୂର୍ବପରି ହସ୍ତ ସଙ୍କେତରେ ସାଥୀରେ ଆସିଥିବା ଲୋକଙ୍କୁ ଯିବାପାଇଁ ନିର୍ଦ୍ଦେଶ ଦେଇ ତୁରନ୍ତ ଅଗ୍ରସର ହେବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା, ସାଧୁ ଆମ ଘରେ ଥିବା ସମୟରେ ଟୋପାଏ ପାଣି ମଧ୍ୟ ଗ୍ରହଣ କରିନଥିଲେ ।

ଆମ ଘରକୋଠିଆ ମଣି ଛୋଟ ଛୋଟ ଗଛଟିଏ ଆଣି କୁଡୁଆରେ ମାଟି ଦେଇ ଅଗଣାରେ ଥିବା ଏକ ନଡ଼ିଆ ଗଛ ମୂଳରେ ରଖିଦେଲା । ବୋଉ ସାଧୁଙ୍କ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ମଧ୍ୟ ଶଙ୍କାକୁଳ ଅବସ୍ଥାରେ ଦିନ କାଟୁଥାଏ । ପ୍ରାୟ ୮ ଦିନପରେ ମୋ ପେଟରେ ବଢ଼ିଥିବା ଆମ ଗୁଡୁମଟି (enlarged spleen) ବହୁତ ଊଣା ହୋଇଗଲା ।

ଗଛଟିକୁ ଯଥାବିଧି ପୂଜା ଆରାଧନା କରିବାରେ ବୋଉ ଆଦୌ ତ୍ରୁଟି କରୁନଥାଏ। ବରଂ ଉକ୍ତ ବୃକ୍ଷଦେବତାଙ୍କୁ ଭଗବାନ ଜ୍ଞାନରେ ମୁଣ୍ଡିଆ ମାରୁଥିବା ବେଳେ ଗୁଣୁଗୁଣୁ ହୋଇ କେତେ କଥଣ ଜଣାଉଥିବାର ମୁଁ ଦେଖିଛି ।

ନିର୍ଦ୍ଧାରିତ ସମୟ ପରେ ବୃକ୍ଷଟି ସ୍ଥାନାନ୍ତରିତ ହେଲା ଏବଂ ତାହାର ସୁରକ୍ଷା ପଇଁ ସକଳ ବ୍ୟବସ୍ଥା କରାଯାଇଥିଲା । ଆଶ୍ଚର୍ଯ୍ୟର କଥା ବୋଧହୁଏ ୨୦-୨୧ ଦିନ ପରେ ହଠାତ୍ ବୃକ୍ଷଟି ଝାଉଳି ପଡ଼ିଥିବା ଦେଖାଗଲା । ସାଧୁ ଦେଇଥିବା ନିର୍ଦ୍ଦିଷ୍ଟ ସମୟ ସୀମା ପୂର୍ବରୁ ହିଁ ବୃକ୍ଷଟି ପତ୍ରଝଡ଼ା ଦେଇ ସମ୍ପୂର୍ଣ୍ଣ ମରିଗଲା ।

ଏ ଅଦ୍ଭୁତ ଘଟଣାରେ ମୋ ବୋଉର ହର୍ଷୋତ୍ଫୁଲ୍ଲ ବଦନ ଓ ଉଦ୍‌ବେଳିତ ଆନନ୍ଦ ବର୍ଣ୍ଣନାତୀତ ଥିଲା । ସେ ପାଗଳିନୀ ପରି ମୋତେ ଅନେକ ସମୟ ଯାଏ କୁଣ୍ଢାଇ ଧରିଥିଲା । ଏପରି ଏକ ଆନନ୍ଦାତିଶଯ୍ୟ ପୂର୍ଣ୍ଣ ମଧୁର ମୁହୂର୍ତ୍ତର ସ୍ମୃତି ମୁଁ ଏ ପର୍ଯ୍ୟନ୍ତ ସାଇତି ରଖିଛି ।

ବାସ୍ତବରେ ମାଆ ବା ବୋଉ ପରି ଶବ୍ଦ ଦୁଇଟିରେ କି ଯାଦୁ ନିହିତ ଅଛି ଯାହାକୁ ତୁଣ୍ଡରେ ଉଚ୍ଚାରଣ କଲା ମାତ୍ରେ ହୃଦୟରେ ଆନନ୍ଦର ବିଦ୍ୟୁତ୍ ପ୍ରବାହ ସୃଷ୍ଟି ହୋଇ କି ଏକ ଅଜଣା ପୁଲକରେ ସାରା ଶରୀର ପୁଲକିତ ହୋଇ ଉଠେ। ଜଣେ ମହାପୁରୁଷ ଏ ସଂପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ସମସ୍ତଙ୍କ ପାଇଁ ଏକାନ୍ତ ପ୍ରଣିଧାନଯୋଗ୍ୟ । ଅଧିକନ୍ତୁ ଏହା ଅନୁଭବସିଦ୍ଧ ଓ ପ୍ରମାଣିତ ।

ସେ ମହାତ୍ମା କହିଛନ୍ତି – ଶତ ସନ୍ତାନର ଜନନୀ ତା'ର ସବୁଠାରୁ ଦୁର୍ବଳ, ରୁଗ୍‌ଣ, ଅସମର୍ଥ କିମ୍ବା ଦରିଦ୍ର ସନ୍ତାନଟି ପାଇଁ ଏକାନ୍ତ ଭାବରେ ମମତା-ସିକ୍ତ ଓ ସମ୍ବେଦନଶୀଳ ହୋଇ ଉଠେ । ତା'ର ଅନ୍ତରରୁ ବାତ୍ସଲ୍ୟ ବିଳାପ କରି ଉଠେ । ଏପରିକି ଅସମର୍ଥ ସନ୍ତାନଟି ପାଇଁ ସ୍ନେହମୟୀ, କରୁଣାମୟୀ ଜନନୀ ନିଜ ଜୀବନକୁ ନିଛାବର କରିଦେବା ପାଇଁ ତିଳେ ହେଲେ କୁଣ୍ଠିତ ହୁଏ ନାହିଁ । ଜନନୀ କୋଳରେ ଥାଇ ସନ୍ତାନ ଦୁନିଆକୁ ମଧ୍ୟ ଡ଼ରେ ନାହିଁ । କଥାରେ କୁହାଯାଇଛି – ବାପ ଥିଲା ପୁଅ ସଭାରେ ହାରେନା – ମାଆ କୋଳେ ପୁଅ ଦୁନିଆ ଡ଼ରେନା । ମାଆ କିପରି ମହିମାମୟୀ, ମହିୟସୀ ଓ ସନ୍ତାନଗତ ପ୍ରା. ଏକଥା ପ୍ରତ୍ୟେକ ସନ୍ତାନ ନିଶ୍ଚୟ ଅନୁଭବରେ ଆଣିଥିବେ । ମୁଁ ମୋର ସେଇ ସର୍ବଂସହା ସ୍ୱର୍ଗତା ଜନନୀର ପଣତକାନିର ଅଭୟ ଆଶ୍ରୟ ପାଉଥିବା ଏବେବି ଅନୁଭବ କରୁଛି । ସ୍ୱପ୍ନରେ ଦେଖିଛି, ମୋ ବୋଉ ତାର ସ୍ନେହ-କାଙ୍ଗାଳ ଅଦୃଶ୍ୟ ହସ୍ତ ମୋ ମଥା ଉପରେ ଥୋଇ ହସିଦେଉଛି ।

ସେହି ଜନନୀର ପବିତ୍ର ଚରଣରେ ଏ ଅଧମ ସନ୍ତାନ ଶତକୋଟି ପ୍ରଣତି ନିବେଦନ କରୁଛି । ଯେଉଁ ବୋଉ ମୋ ପାଇଁ ସର୍ବସ୍ୱ ତ୍ୟାଗ କରିବା ପାଇଁ ଶପଥ ନେଇ ଆଗେଇ ଯାଉଥିଲା, ରୋଗରେ ପଡ଼ିଲେ ତା'ର ବରଦହସ୍ତ ସଞ୍ଚାଳନ ଓ ନିବିଡ଼ ଆଲିଙ୍ଗନ ମୋତେ ଅପାର ଆନନ୍ଦରେ ଉଲ୍ଲସିତ କରି ପକାଉଥିଲା ।

ଚରମ ଦୁର୍ଭାଗ୍ୟ ଯେ ସେଇ ମମତାର ମୂର୍ତ୍ତ ପ୍ରତୀକ ମୋର ବୋଉ ମାତ୍ର ସତତିରିଶ ବର୍ଷ ବୟସରେ ୧୯୩୭ ମସିହାରେ ମୋତେ ଦିଶାହରା ଏକ ଅନାଥ ସନ୍ତାନ ରୂପେ ଛାଡ଼ିଯାଇଥିଲା ।

## ରୋଗମୁକ୍ତି ପରେ

ଅତି ଆକସ୍ମିକ ଭାବରେ ରୋଗମୁକ୍ତ ହେବା ଏବଂ ଅଳ୍ପକାଳ ମଧ୍ୟରେ ହୃତ ସ୍ୱାସ୍ଥ୍ୟ ଫେରି ପାଇବାରେ ତାନ୍ତ୍ରିକ ସାଧୁଙ୍କ ମନ୍ତ୍ରପୂତ ଜଳ ଓ କାଳୀଙ୍କ ଉପାସନା ପାଇଁ କିଛି ମନ୍ତ୍ରପାଠ ଯେ ଏକମାତ୍ର କାରଣ ବୋଲି ଶୁଣୁଥିଲେ ମଧ୍ୟ ସ୍ପଷ୍ଟରୂପେ କିଛି ଧାରଣା କରି ପାରୁନଥିଲି । ବରଂ ପ୍ରକାରାନ୍ତରେ ବିଶ୍ୱାସ ମଧ୍ୟ କରୁନଥିଲି, ବୟସ ଓ ଦାୟିତ୍ୱ ବଢ଼ିଲା । ମୁଁ ବିଭିନ୍ନ ପୁସ୍ତକ ଓ ଅନେକ ମହାପୁରୁଷ ଓ ସିଦ୍ଧ ସାଧକଙ୍କ ଜୀବନୀକୁ ଅତ୍ୟନ୍ତ ଆଗ୍ରହର ସହିତ ପାଠ କରି ମୋର ମୂର୍ଖତା, ଅବିଶ୍ୱାସ ଓ ଅଯଥା ସନ୍ଦେହକୁ ଦୂର କରିପାରିଥିଲି । ଏହି ଗ୍ରନ୍ଥଗୁଡ଼ିକ ମଧ୍ୟରେ ଆଦି ଶଙ୍କରାଚାର୍ଯ୍ୟ, ତ୍ରୈଲଙ୍ଗସ୍ୱାମୀ, ପଞ୍ଚସଖାଙ୍କ ଅସାଧାରଣ ଅତି ଅଦ୍‌ଭୁତ କାର୍ଯ୍ୟ, ବାମାକ୍ଷେପା, ଅନୁକୂଳଚନ୍ଦ୍ର ଓ ନିଗମାନନ୍ଦଙ୍କ ଅମୂଲ୍ୟ ଜୀବନୀ ମାନ ପାଠ କଲି । ତାପରେ ଏହି ସିଦ୍ଧାନ୍ତରେ ଉପନୀତ ହେଲି ଯେ ସାଧନା ବଳରେ ଯାହା କରାଯାଇ ପାରିବ, ତା ସମ୍ମୁଖରେ ଆଜିର ଅତ୍ୟୁନ୍ନତ ବିଜ୍ଞାନ କିମ୍ବା ଚିକିତ୍ସାର ଚମତ୍‌କାରିତା ଅତି ସାମାନ୍ୟ । କାୟବ୍ୟୂହ ସିଦ୍ଧି (ପରକାୟା ପ୍ରବେଶତତ୍ୱ) ଶୋଷଣ କ୍ରିୟା ଏବଂ ଧୋତି ପରି ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟ କେବଳ ଯୋଗ ବା ତନ୍ତ୍ର ବଳରେ ସମ୍ଭବ ହୋଇପାରେ ବୋଲି ମୋର ଦୃଢ଼ ଧାରଣା ହେଲା ।

## ବାଲ୍ୟ ଶିକ୍ଷାର ସମାପ୍ତି ପରେ

ମୋର ଚାଟଶାଳୀ ବା ତଥାକଥିତ ପ୍ରାଥମିକ ବିଦ୍ୟାଳୟର ଅଧ୍ୟୟନ ଶେଷ ହେବାର ଅବ୍ୟବହିତ ପୂର୍ବରୁ ପୀଡ଼ିତ ହୋଇଥିଲି । ଏହି ସମୟରେ ମୋର ଗୁରୁ ବାଞ୍ଛା ଅବଧାନେ ୨/୪ ଥର ମୋ ସ୍ୱାସ୍ଥ୍ୟ ଅବସ୍ଥା ଦେଖିବା ପାଇଁ ଆସିଥିଲେ ।

ପ୍ରତି ଥର ସେ ଆସି ମୋର ଆଶୁ ରୋଗମୁକ୍ତିର ଆଶୀର୍ବାଦ ଦେଇ ଫେରୁଥିଲେ । ମୁଁ ଆମ ସହପାଠୀଙ୍କ ମଧ୍ୟରେ ସବୁଠାରୁ ଭଲ ଛାତ୍ର ଥିବାରୁ ତାଙ୍କର ମୋ ପ୍ରତି ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । ବିଶେଷ କରି ବହୁ ଛାନ୍ଦ ଏପରିକି ଅମରକୋଷ ପରି ଏକ ଗ୍ରନ୍ଥର ସମୁଦାୟ ସ୍ୱର୍ଗବର୍ଗଟି ମନେରଖି ପାରିଥିବାରୁ ସେ ମୋର ଯଥେଷ୍ଟ ପ୍ରଶଂସା କରୁଥାନ୍ତି । ପୁନଶ୍ଚ ମୋ ବୋଉ ମଧ୍ୟ ଅବଧାନଙ୍କ ଅବସ୍ଥା ପ୍ରତି ସର୍ବଦା ସତର୍କ ଦୃଷ୍ଟିରଖି ମଝିରେ ମଝିରେ ତାଙ୍କୁ ଚାଉଳ, ନଡ଼ିଆ, ପରିବା ଓ କିଛି ପଇସା ମଧ୍ୟ ଦେଇ ଆମ ପରିବାର ପ୍ରତି ଅବଧାନଙ୍କର ଏକ ସ୍ୱତନ୍ତ୍ର ଆନୁଗତ୍ୟ ସୃଷ୍ଟି କରାଇ ପାରିଥାଏ ।

## ତତ୍‌କାଳୀନ ଶିକ୍ଷାର ବିଭିନ୍ନ ଦିଗ

ଅତୀତର ପ୍ରାୟ ଶହେ ବର୍ଷ ତଳର ପ୍ରାଥମିକ ଶିକ୍ଷାର ବିଭିନ୍ନ ଦିଗ ସଂପର୍କରେ ଆଲୋଚନା କଲେ ଜଣାଯାଏ ଯେ ତତ୍‌କାଳୀନ ପ୍ରାଥମିକ ଶିକ୍ଷା ଗୁରୁକୈନ୍ଦ୍ରିକ ଥିଲା । ଅବଧାନେ ବା ଗୁରୁଥିଲେ ଚାହାଳୀର ସର୍ବମୟ କର୍ତ୍ତା । ସେ ଥିଲେ ଏକାଧାରରେ ସିଲାବସ୍ ଓ ପାଠ୍ୟପୁସ୍ତକ । ଚାହାଳୀଟିର ପରିଚାଳନା ଦାୟିତ୍ୱ କେବଳ ଅବଧାନଙ୍କ ନିୟନ୍ତ୍ରଣାଧୀନ ଥିଲା । ଅବଧାନଙ୍କ ମୁଖନିସୃତ ବାଣୀ ଥିଲା ନିୟମ । ବର୍ଷର ଯେ କୌଣସି ସମୟରେ ଛାତ୍ରଗ୍ରହଣ ଅବଧାନଙ୍କ ଇଚ୍ଛାଧୀନ ଥିଲା । ଆଜିକାଲିର ଅତି ଉନ୍ନତ ବୈଜ୍ଞାନିକ ପ୍ରଣାଳୀ ଏବଂ ଶିଶୁ ମନୋବିଜ୍ଞାନସମର୍ଥିତ ଶିକ୍ଷାଦାନ ପଦ୍ଧତି ଆଦୌ ଅନୁସୃତ ହେଉନଥିଲା । ମୁଖ୍ୟତ ୩ ଆର୍-ଲିଖନ, ପଠନ ଓ ଗଣିତ-ବିଷୟମାନ ଶିକ୍ଷା ଦିଆଯାଉଥିଲା । ଚାହାଳୀର ଛୁଟି ଅବଧାନଙ୍କ ଅଧିକାରଭୁକ୍ତ ଥିଲା । ପିଲାମାନଙ୍କ ବୋଧଜ୍ଞାନ ଅବଧାରଣା ଶକ୍ତିକୁ ଆଦୌ ବିଚାରକୁ ନିଆନଯାଇ କୋମଳମତି ଛାତ୍ର ମାନଙ୍କର ମସ୍ତିଷ୍କକୁ ଅଯଥା ଭାରାକ୍ରାନ୍ତ କରାଯାଉଥିଲା ।

ସର୍ବୋପରି ଗୁରୁ ବା ଅବଧାନଙ୍କର ଦଣ୍ଡବିଧାନ ଅତ୍ୟନ୍ତ ନିନ୍ଦନୀୟ ଥିଲା । ସେ କେବଳ ବଜ୍ରାଦପି କଠୋରାଣୀ ମୃଦୁନି କୁସୁମାଦପିର ପ୍ରଥମ ପାଦ ଅର୍ଥାତ ବଜ୍ର ପରି କଠିନ ଚରିତ୍ରର ଥିଲେ ।

ସାମାନ୍ୟ ତିନିଟଙ୍କା ଏବଂ ଛାତ୍ରମାନଙ୍କଠାରୁ ପ୍ରତିଦିନ ମିଳୁଥିବା ପାଳି ଅନ୍ନରେ ନିଜର ଓ ପରିବାରର ପ୍ରତିପୋଷଣ ଦୁର୍ବିସହ ହୋଇ ପଡୁଥିଲେ ମଧ୍ୟ ଗୁରୁଜୀ ସେଥିପ୍ରତି ଅଧିକ ଧ୍ୟାନ ନଦେଇ ସର୍ବଦା କର୍ତ୍ତବ୍ୟ ସଚେତନ ରହୁଥିଲେ । ଅଧ୍ୟାୟୀ ୨୪-୩୦ଟି ଛାତ୍ରଙ୍କୁ ଶିକ୍ଷାଦେଇ ଉପଯୁକ୍ତ ମଣିଷ ସୃଷ୍ଟି କରିବାରେ ସେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରି ଦେଉଥିଲେ । ସେତେବେଳର ଚାଟଶାଳୀଗୁଡ଼ିକ ଅତୀତର ସେହି

ଗୁରୁକୁଳାଶ୍ରମର ପଦ୍ଧତିକୁ କିଛି ମାତ୍ରାରେ ଅନୁସରଣ କରୁଥିଲେ । ପିଲାମାନେ ସକାଳୁ ଦିନ ଏଗାରଟା, ଉପରଓଳି ୩ଟାରୁ ୬ଟା ଏବଂ ରାତିରେ ୭ଟାରୁ ୯ଟା ପର୍ଯ୍ୟନ୍ତ ଗୁରୁଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ବିଦ୍ୟାଭ୍ୟାସ କରୁଥିଲେ । ଏପରିକି ଶିଷ୍ୟମାନେ ଗୁରୁଦେବଙ୍କ ବାସନମାଜିବା, ହାଣ୍ଡି ଧୋଇବା ଏବଂ ଜାଳସଂଗ୍ରହ କରିବା, ଚାହାଳୀ ଗୃହର ତଳ ଓ ପିଣ୍ଡାକୁ ଗୋବରରେ ଲିପିବା ଆଦି କାର୍ଯ୍ୟ କରୁଥିଲେ । ବେଳେ ବେଳେ ଗୁରୁ ଅସୁସ୍ଥ ହୋଇ ପଡ଼ିଲେ ଶିଷ୍ୟମାନେ ପଦସେବା ପାଇଁ ଆଗେଇ ଆସୁଥିଲେ । ଅଲକ୍ଷ୍ୟରେ ପିଲାମାନଙ୍କୁ ଶାରିରୀକ ପରିଶ୍ରମ ସହିତ ଗୁରୁଜନମାନଙ୍କୁ ପଦସେବା କରିବାର ପ୍ରେରଣା ଦିଆଯାଉଥିଲା ।

ପୁଣିଥରେ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ଯେ ଅତୀତର ଶିକ୍ଷାଦାନ ବିଜ୍ଞାନ-ସମ୍ମତ କୌଣସି ଉନ୍ନତ ପ୍ରଣାଳୀ ଉପରେ ଆଧାରିତ ନଥିଲା । ତାହା ଶିଶୁ-ମନୋବିଜ୍ଞାନର ବିରୁଦ୍ଧାଚରଣ କରୁଥିଲା । ତେଣୁ ପିଲାମାନଙ୍କ ବୟସକୁ ଦୃଷ୍ଟି ନଦେଇ, ଧାରଣା ଶକ୍ତିକୁ ଉପେକ୍ଷା କରି, ଶକ୍ତି ବହିର୍ଭୂତ ପାଠକୁ ଘୋଷାଇବାକୁ ଦେଇ ଶିଶୁମାନଙ୍କ ମସ୍ତିଷ୍କକୁ ଅଯଥା ଭାରାକ୍ରାନ୍ତ କରାଯାଉଥିଲା । ଏହି ମନ୍ତବ୍ୟକୁ ଅସ୍ୱୀକାର କରିବାର କିଛି ନାହିଁ । ବର୍ତ୍ତମାନର ବିଜ୍ଞାନ-ସମ୍ମତ ଶିକ୍ଷା ଓ କିଣ୍ଡରଗାର୍ଟେନ, ମଣ୍ଟେସୋରୀ ଆଦି ବହୁତ ଉନ୍ନତ ପ୍ରଣାଳୀର ଶିକ୍ଷାଦାନ ପଦ୍ଧତିର ପ୍ରଚଳନ ଶିକ୍ଷାକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିଛି । ମନୋବିଜ୍ଞାନକୁ ମନ୍ଥନ କରି ତହିଁରୁ ବାହାରୁଥିବା ନିର୍ଯ୍ୟାସକୁ ଉପଯୁକ୍ତ ଗବେଷଣାସିଦ୍ଧ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କରାଗଲାଣି । ତେଣୁ ଆମ ରାଜ୍ୟର ଶିକ୍ଷା ସରୋବର ଶୁଭ୍ର ସରୋଜ ବିମଣ୍ଡିତ ହୋଇ ସୁବାସ ବିତରଣ କରିବା ଆରମ୍ଭ କଲାଣି ।

ଯେତେବେଳେ ମୁଁ ଓ ମୋ ପରି କେତେକ ପ୍ରାଚୀନତାକୁ ଯାବୁଡ଼ି ଧରିଥିବା ବୟସ୍କ ବ୍ୟକ୍ତି ଭାବୁ - ଏ ରାଜ୍ୟର ଗତି କେଉଁଆଡ଼କୁ ? ସେତେବେଳେ ନିତାନ୍ତ ଅସହାୟ ହୋଇପଡୁ । ସ୍ୱତଃ ମନକୁ ଆସେ - ଆଗକାଳର ସେହି ଅବୈଜ୍ଞାନିକ, ମନୋବିଜ୍ଞାନ ବିବର୍ଜିତ ଶିକ୍ଷାର ପ୍ରଭାବରେ ଆମ ରାଜ୍ୟର ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ପଠାଣି ସାମନ୍ତ, ଉତ୍କଳର ପରିଜା ସରସ୍ୱତୀଙ୍କ ବରପୁତ୍ର ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁଙ୍କ ପରି କାଳଜୟୀର କବି, ପଞ୍ଚସଖାଙ୍କ ପରି ସିଦ୍ଧ ସାଧକ, ଗୋପବନ୍ଧୁ , ବିଜୁ ପଟ୍ଟନାୟକ, ହରେକୃଷ୍ଣ ମହାତାବଙ୍କ ସହିତ ଅନେକ ମହାନ୍ ଦେଶପ୍ରେମୀ, ନୀଳମଣି ସେନାପତି ଓ ଆଉ କିଛି ଅଦର୍ଶ ପ୍ରଶାସକ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହରଙ୍କ ପରି ସ୍ମରଣୀୟ ଶିକ୍ଷକମାନେ ଜନ୍ମଲାଭ କରି ଜନ୍ମଭୂମିର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି । ବିଜ୍ଞାନବିବର୍ଜିତ, ସ୍ୱଚ୍ଛ ବସନ, ଅର୍ଦ୍ଧବୁଭୁକ୍ଷୁ, ଭିକ୍ଷା ଅନ୍ନରେ

ପରିବାର ପରିପୋଷଣ କରୁଥିବା ସେଇ ଅବଧାନ, ଗୁରୁଜୀମାନଙ୍କ ଏଇ ଅଦ୍‌ଭୁତ ସାଫଲ୍ୟ କଥା ସ୍ମରଣ କଲେ ଭାବୁକର ମଥା ଆପେ ଆପେ ନଇଁ ଆସେ । ନିରଳସ ସାଧନାର ଉଜ୍ଜ୍ୱଳ ପ୍ରତିଫଳନ ରୂପେ ଚିରଦିନ ଦେଦୀପ୍ୟମାନ ରହିଛନ୍ତି ।

## ମି.ଇ. ସ୍କୁଲରେ ଅଧ୍ୟୟନ

ଆମ ଘରଠାରୁ ପ୍ରାୟ ୬ ମାଇଲ ଦୂରରେ ଦାଣ୍ଡମୁକୁନ୍ଦପୁରଠାରେ ଏକ ଆଦର୍ଶ ମି.ଇ. ସ୍କୁଲ ଥାଏ । ଏହି ଶିକ୍ଷାନୁଷ୍ଠାନଟି ପୁଣ୍ୟାତ୍ମା ଉତ୍କଳମଣିଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ଓ ନିଯୁକ୍ତ ଶିକ୍ଷକମାନେ ଅସାଧାରଣ ଜ୍ଞାନୀ ଏବଂ ନିଷ୍ଠାପର ଭାବରେ ଛାତ୍ରମାନଙ୍କୁ ଶିକ୍ଷାଦାନରେ ବ୍ରତୀ ହୋଇଥିଲେ । ଖାସ୍ ଏଇ କାରଣରୁ ଏଠାକୁ ଦୂରବର୍ତ୍ତୀ ତେଇଶିପୁର, ସାତଶଙ୍ଖ, ଡ଼େଲାଙ୍ଗ, ଘୋରଡ଼ିଆ, ବାଲିପାଟଣା, ଚଣାହଟା, ବିଶ୍ୱନାଥପୁର ଆଦି ଅଞ୍ଚଳରୁ ଅନେକ ଛାତ୍ର ଛାତ୍ରାବାସରେ ରହି ଅଧ୍ୟୟନ କରୁଥିଲେ । ଦୁଇଜଣ ଶିକ୍ଷକ ମଧ୍ୟ ହଷ୍ଟେଲରେ ରହି ଛାତ୍ରମାନଙ୍କୁ ନିୟମିତ ପାଠ ପଢ଼ାରେ ଅକୃତ୍ରିମ ସାହାଯ୍ୟ କରୁଥିଲେ । ମୋତେ ପାଖରୁ ଅନ୍ତର କରିବା ଦିଗରେ ମୋ ବୋଉ ପ୍ରଧାନ ପ୍ରତିବନ୍ଧକ ରୂପେ ଉଭା ହେଲା, ମାତ୍ର ବାପା ବୋଉକୁ କହିଥିଲେ, "- ମୁଁ ନିଷ୍ପତ୍ତି ନେଇଛି, ମୋ ପିଲା ବିଶେଷ କରି ଚାହାଳୀରେ ଖୁବ୍ ଭଲ ପଢୁଥିବା କାଶୀକୁ ନିଶ୍ଚୟ ଆଗକୁ ପଢ଼ାଇବି । ଅତୀତରେ ମୋତେ ମୋ ବାପା ରାଜକୀୟ ବ୍ୟବସ୍ଥା ଦେଇ କଟକକୁ ପଠାଇଥିଲେ । ସେ ସୁବିଧାକୁ ଆଡ଼େଇ ଦେଇ ସମ୍ପୂର୍ଣ୍ଣ ମୂର୍ଖ ଭାବରେ ଯେଉଁ ଜୀବନଯନ୍ତ୍ରଣା, ପଶ୍ଚାତ୍ତାପ ଓ ଅବଶୋଷରେ ଦିନ କାଟୁଛି ତାହା ମୁଁ ବେଶ୍ ଉପଲବ୍ଧି କରିବାରେ ଲାଗିଛି । ତେଣୁ ମୋ ପିଲା ବିଶେଷ କରି ଗାଁ ଚାହାଳୀରେ ସବୁଠାରୁ ଭଲ କରୁଥିବା ପୁଅକୁ ମୁଁ ନିଶ୍ଚୟ ଆଗକୁ ପଢ଼ାଇବି ।"

ବାପା କେବେ ବୋଉ କଥାରେ ପ୍ରତିବାଦ କରିବାର କେହି ଜାଣି ନଥିଲେ । ଆଜି ବାପାଙ୍କ କଥାରେ ଦୃଢ଼ ପ୍ରତିବାଦର ସ୍ୱର ଦେଖି ବୋଉ କହିଲା : - ତୁମ ଇଚ୍ଛା, ମୁଁ ତାର ଅତୀତ ଜୀବନର ଅସୁସ୍ଥତା ସ୍ମରଣ କରି ସର୍ବଦା ଆତଙ୍କିତ ହେବାରେ ଲାଗିଛି । ଯାଉ, ତା ବଡ଼ଭାଇ ଓ ଗାଁ'ର ଆହୁରି କେତେ ପିଲା ମଧ୍ୟ ସେଠାରେ ପଢୁଛନ୍ତି । କିଛି ଅସୁବିଧାର ଖବର ପାଇଲେ ମୁଁ ତାକୁ ମୋ ପାଖକୁ ନେଇ ଆସିବି ।

ସମସ୍ୟାର ସମାଧାନ ହୋଇଗଲା ୧୯୩୦ ମସିହା ଜାନୁଆରୀରେ ମୋର ନାମ ଲେଖା ହେଲା ଓ ମୁଁ ଛାତ୍ରାବାସରେ ରହିଲି । ସାଥୀରେ ମୋ ବଡ଼ଭାଇ ବିଶ୍ୱନାଥ ଏବଂ ଆମ ଗାଁଆ ପିଲାମାନେ ଥିବାରୁ ମୋର କିଛି ଅସୁବିଧା ହେଉ

ନଥାଏ । ମୁଁ ଆମ ଗାଁ ପିଲାଙ୍କ ସହିତ ପ୍ରତି ଶନିବାର ଦିନ ଅପରାହ୍ଣରେ ଘରକୁ ଆସେ ଓ ସୋମବାର ସକାଳୁ ସ୍କୁଲକୁ ଯାଇ ବୋଡ଼ିଙ୍ଗ୍‌ରେ ଖାଏ । ପ୍ରତି ସପ୍ତାହରେ ଥରେ ଘରକୁ ଆସିବା ପାଇଁ ଭାଇକୁ ବୋଉର କଡ଼ା ନିର୍ଦ୍ଦେଶ ଥାଏ । ଦୁଇଟି ରାତି ତା କୋଳର ଉଷ୍ମତା ଲାଭ କରି ମୁଁ ଅପାର ଆନନ୍ଦରେ ଅଭିଭୂତ ହୋଇ ଉଠେ । ସୋମବାର ଦିନ ସେ କେତେ ଯେ ଉପଦେଶ ଦେଇ ମୋତେ ବିଦାକରେ, ତା'ର ଇୟତ୍ତା ନଥାଏ ।

ମୁଁ ଚତୁର୍ଥ ଶ୍ରେଣୀରେ ଅଧ୍ୟୟନ କଲି । ଏବେ ବି ମୋର ସ୍ପଷ୍ଟ ମନେ ଅଛି ଉକ୍ତ ସ୍କୁଲର ଶିକ୍ଷକମାନଙ୍କ ଶିକ୍ଷାଦାନ, ଛାତ୍ରବତ୍ସଳତା ଓ ଛାତ୍ରମାନଙ୍କୁ ଉପଯୁକ୍ତ ମଣିଷ ଭାବରେ ଗଢ଼ିବା ପାଇଁ ନିଷ୍ପାପର ଉଦ୍ୟମ ଏକାନ୍ତ ପ୍ରଣିଧାନଯୋଗ୍ୟ । ସେତେବେଳେର ଶିକ୍ଷକମାନଙ୍କ ନିଷ୍ଠାକୁ ଏବର ଶିକ୍ଷାଦାନ ସହିତ ତୁଳନା କରି ମୁଁ ହତାଶ ହୁଏ ।

ବର୍ଷଟିଏ ବିତିଗଲା । ମୁଁ ଶ୍ରେଣୀରେ ପ୍ରଥମ ହୋଇ ୫ମକୁ ଉତ୍ତୀର୍ଣ୍ଣ ହେଲି । ସ୍ୱତଃ ଶିକ୍ଷକମାନଙ୍କର ଶ୍ରଦ୍ଧା ମୋ ପ୍ରତି ବୃଦ୍ଧି ପାଇଲା । ମୁଁ ମୂଳରୁ ଗଣିତ ପାଠଟି ପ୍ରତି ବୀତସ୍ପୃହ ଥିଲି । ମାତ୍ର ସାହିତ୍ୟ, ଇତିହାସ ଆଦିରେ ସର୍ବୋଚ୍ଚ ନମ୍ବର ରଖୁଥିଲି । ବିଶେଷତଃ ସେତେବେଳ ମୋର ଉଭୟ (ଇଂରାଜୀ ଏବଂ ଓଡ଼ିଆ) ହସ୍ତାକ୍ଷର ବେଶ୍ ସୁନ୍ଦର ଥିଲା । ଉତ୍ତମ ଛାତ୍ରଟି ପ୍ରତି ଶିକ୍ଷକମାନେ ସର୍ବଦା ଶ୍ରଦ୍ଧାସିକ୍ତ ହୋଇଥାନ୍ତି । ମୁଁ ମଧ୍ୟ ଶିକ୍ଷକମାନଙ୍କର ନିଷ୍କପଟ ସ୍ନେହ ଶ୍ରଦ୍ଧା ଲାଭ କରି ଅତ୍ୟନ୍ତ ଆନନ୍ଦିତ ହେଉଥିଲି ।

ମୁଁ ପଢୁଥିବା ସମୟରେ ଆମ ମି.ଇ.ସ୍କୁଲରେ ପ୍ରତିବର୍ଷ ପୁରସ୍କାର ବିତରଣ ଉତ୍ସବ ନିୟମିତ ଅନୁଷ୍ଠିତ ହେଉଥାଏ । ମୋର ପଞ୍ଚମ ଶ୍ରେଣୀ ବର୍ଷ ପୁରସ୍କାର ବିତରଣ ପାଇଁ ଆୟୋଜନ ହେଲା । ପିଲାମାନଙ୍କ ମଧ୍ୟରୁ କେତେକଙ୍କୁ ଏକାଙ୍କିକା, ଅଭିନୟ, କଥୋପକଥନ ସହିତ ଆହ୍ୱାନ ଓ ବିଦାୟ ସଙ୍ଗୀତର ତାଲିମ୍ ଦେବା ଆରମ୍ଭ ହେଲା । ଆହ୍ୱାନ ସଙ୍ଗୀତଟି ପଣ୍ଡିତ ଗୋପୀନାଥ ନାୟକ ଲେଖିଥିଲେ । ମୋ ସହିତ ଆଉ ତିନିଜଣ ପିଲା ଉକ୍ତ ଗୀତଟିକୁ ଅଭ୍ୟାସ କରୁଥିଲୁ । ମୋତେ ଗୋଟିଏ ଇଂରାଜୀ ବିଷୟ ଅଭିନୟ କରିବାର ଦାୟିତ୍ୱ ମଧ୍ୟ ଦିଆଯାଇଥିଲା । ଏସବୁ କିପରି ମଞ୍ଚ ଉପରେ ଠିଆ ହୋଇ ଅନେକ ଦର୍ଶକ ତଥା ଆମ ସ୍କୁଲର ଶିକ୍ଷକ ଛାତ୍ରମାନଙ୍କ ଆଗରେ ଯଥାରୀତି ପରିବେଷଣ କରି ପାରିବି ଏଥିପାଇଁ ମୁଁ ପ୍ରାଣପଣେ ଚେଷ୍ଟା କରୁଥାଏ; ମାତ୍ର ଇଂରାଜୀ ଉଚ୍ଚାରଣ ମୋର ଠିକ୍ ହେଉନଥାଏ । ଜଣେ ଶିକ୍ଷକ ମୋତେ ବାରମ୍ବାର ତାଲିମ ଦେଉଥାନ୍ତି ।

ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହୋଇଗଲା । ପୁରୀଜିଲା କିଲଟର ଗୋରା ସାଇବ ଏନ୍.ପି.ଥାଡ଼ାନି ସଭାପତି ହୋଇ ଆସୁଥାନ୍ତି । ଆଶଙ୍କା ଜର୍ଜରିତ ହୃଦୟ ମୋର ଥରି ଉଠୁଥାଏ । ଶିକ୍ଷକମାନେ ବାରମ୍ବାର ସାହସ ଦେବାରେ ଲାଗିଥାନ୍ତି । ସାଥୀ ମେଳରେ "ପାହିଛି ଶୁଭରଜନୀ, ବିଜେ ଏନ୍.ପି.ଥାଡ଼ାନି, ଗୁଣୀ ଜ୍ଞାନୀ କର୍ମୀ ପ୍ରେମୀ ଧାର୍ମିକ ମୌଳି-ମଣ୍ଡଳ'' ଗୀତଟି ଆହ୍ୱାନ ରୂପେ ବୋଲି ମାଲ୍ୟାର୍ପଣ କାର୍ଯ୍ୟ ଶେଷ ହେଲା । ପରେ ପରେ ଗୋଟିକ ପରେ ଗୋଟିଏ ଗୀତ ଏକାଙ୍କିକା ଅଭିନୀତ ହେଉଥାଏ । ହଠାତ୍ ମୋ ପାଳି ପଡ଼ିଗଲା ମୁଁ ରେଡ୍ ରାଇଡ଼ିଂହୁଡ୍ (Red Riding hood ) ଭୂମିକାରେ ଅବତୀର୍ଣ୍ଣ ହେଲି । ଅମାପ ସାହସ ସଞ୍ଚୟ ମୁଁ କୌଣସି ମତେ ମଞ୍ଚରୁ ଚାଲି ଆସିଥିଲି । କିଲଟର ସାଇବ ଓଡ଼ିଆର କୌଣସି ଗୀତ ବା ଅଭିନୟ ଆଦୌ ବୁଝିପାରିନଥିଲେ । ମାତ୍ର ତାଙ୍କରି ଭାଷାରେ ମୁଁ କିଛି କହିଥିବା ଶୁଣି ମୁଁ ମଞ୍ଚରୁ ଆସିବା ବେଳକୁ ସେ ଗୁଡ୍, ଭେରିଗୁଡ୍ ବୋଲି କହିଥିବା କଥା ମୋର ଏ ପର୍ଯ୍ୟନ୍ତ ମନେ ଅଛି ।

ପୁରସ୍କାର ବିତରଣ ଆରମ୍ଭ ହେଲା । ଆମ ଶ୍ରେଣୀରେ ମୁଁ ସର୍ବାଧିକ ଛଅଗୋଟି ପୁରସ୍କାର — ଶ୍ରେଣୀରେ ପ୍ରଥମ ଓଡ଼ିଆ ଓ ଇଂରାଜୀ ହସ୍ତାକ୍ଷର, ସାହିତ୍ୟରେ ସର୍ବାଧିକ ନମ୍ବର, ଆହ୍ୱାନ ସଙ୍ଗୀତ ତଥା ସଭାପତିଙ୍କ ପାଇଁ ଉଦ୍ଦିଷ୍ଟ ଏକ ଦାମୀ ପୁରସ୍କାର ମୋତେ ମିଳିଥିଲା । ସେ ଦିନ ମୁଁ ବହୁତ ଆନନ୍ଦ ଅନୁଭବ କରିଥିଲି ।

ତା ପରବର୍ଷ ମୁଁ ଷଷ୍ଠ ଶ୍ରେଣୀରେ ମଧ୍ୟ ଅନୁରୂପ ସର୍ବାଧିକ ପୁରସ୍କାର ପାଇଥିଲି । ୭ମ ଶ୍ରେଣୀରେ ପୁରସ୍କାର ବିତରଣ ପୂର୍ବରୁ ମୁଁ ପାଶ୍ କରି ଘରକୁ ଆସିଥିଲେ ମଧ୍ୟ ମୋର ପ୍ରାପ୍ୟ ସେହି ଶ୍ରେଣୀରେ ପ୍ରଥମ, ହସ୍ତାକ୍ଷର, ଉତ୍ତମ ବ୍ୟବହାର ( good manners) ପାଇଁ ପ୍ରାଇଜ୍ ପାଇବା ପାଇଁ ମୁଁ ସ୍କୁଲକୁ ଯାଇଥିଲି ।

ମୋର ପଞ୍ଚମ ଶ୍ରେଣୀ ବର୍ଷ ବିଶ୍ୱନାଥପୁରରୁ ଜଣେ ଛାତ୍ର ସ୍କୁଲର ୪ର୍ଥ ଶ୍ରେଣୀରେ ଆସି ନାମ ଲେଖାଇଲେ । ନାମ ଚିନ୍ତାମଣି ପାଣିଗ୍ରାହୀ । ଡାକନାମ - ମଣି । ଚେହେରାଟି ବେଶ୍ ଡଉଲ ଡାଉଲ ଗୋରା ତକ ତକ ଦେହ । ବୟସ ୧୦ ବର୍ଷ ପ୍ରାୟ । ସେତେବେଳେ ପ୍ରଥମ ଦର୍ଶନରେ ହିଁ ମୁଁ ତାଙ୍କୁ ଖୁବ୍ ଭଲ ପାଇଥିଲି । ସ୍କୁଲ ଛୁଟି ହେବାପରେ ହେଡ଼ମାଷ୍ଟର ଚିନ୍ତାମଣି ଶତପଥୀ ମଣିବାବୁଙ୍କୁ ସଙ୍ଗରେ ଆଣି ମୋ ପାଖରେ ପହଞ୍ଚିଲେ । ମୁଁ ହେଡ୍‌ମାଷ୍ଟରଙ୍କୁ ଦେଖି ଛାନିଆ ହୋଇଗଲି । ସେ ମୋତେ ଡାକି କହିଲେ, ଏ ପିଲାଟି ତୁମରି ସାଥୀରେ ତୁମେ ରହୁଥିବା ରୁମ୍‌ରେ ରହିବ । ତୁମେ ବଡ଼ଭାଇ ରୂପେ ଏହାର ସମସ୍ତ ଦାୟିତ୍ୱ ଗ୍ରହଣ

କରିବ । ମୋର ଆପତ୍ତି କରିବାର କିଛି ନଥିଲା । ବରଂ ଢ଼େର ଖୁସିହେଲି । ସେହି ଦିନଠାରୁ ମଣିବାବୁଙ୍କର ମୁଁ ବଡ଼ଭାଇ ରୂପେ ତାଙ୍କ ଜୀବନବସାନ ପର୍ଯ୍ୟନ୍ତ ରହିଯାଇଥିଲି । ତାଙ୍କ ସଂପର୍କରେ ଅନେକ କିଛି ସ୍ମୃତିରେ ସାଇତି ରଖିଛି । ମାତ୍ର ସାମାନ୍ୟ କିଛି ନକହିଲେ ମୋ ମନ ବୁଝିବ ନାହିଁ ।

ପୁରୀଜିଲାର ବାଲିପାଟଣା ଥାନାର ବିଶ୍ୱନାଥପୁର ଏକ ଅତ୍ୟନ୍ତ ଉର୍ବର କ୍ଷେତ୍ର । ଏହି ଭୂମିରେ ଚିନ୍ତାମଣି ବାବୁଙ୍କ ପୂର୍ବରୁ କେବଳ ସୁବାସିତ ବାସମତୀ ଧାନର ମନମତାଣିଆ ସୌରଭରେ ଉତ୍କଳର ଚାରିଆଡ଼ ମହକି ଉଠୁଥିଲା । ଚିନ୍ତାମଣି ବାବୁ ଏହି ଉର୍ବର କ୍ଷେତରେ ବାସମତୀ ରୂପରେ ଉଭା ହୋଇ ପୂର୍ବରୁ ବାସ ଚହଟାଇ ଥିବା ରାଧାମୋହନ ପାଣିଗ୍ରାହୀ, ଭଗବତୀ ବାବୁ, କାଳିନ୍ଦୀ ବାବୁ, ବାଉରିବନ୍ଧୁ ବାବୁ, ନନ୍ଦିନୀ ଦେବୀ ଏବଂ ସୁଷମା ଦେବୀଙ୍କଠାରୁ କିଛି ଅଧିକ ସୁବାସ ବିତରଣ କରି ଜନ୍ମମାଟିର ଗୌରବ ବୃଦ୍ଧି କରିଥିଲେ ।

ତାଙ୍କ ଦେହାନ୍ତ ପର୍ଯ୍ୟନ୍ତ ମୁଁ ତାଙ୍କ ବଡ଼ଭାଇ ରୂପେ ସମ୍ମାନିତ ହୋଇଛି । ସେ ସୋପାନ ପରେ ସୋପାନ ଅତିକ୍ରମ କରି ଶେଷ ସୋପାନରେ ଉପନୀତ ହୋଇଥିବା ବେଳେ ଏ ଅଧମ ବଡ଼ଭାଇ ଭାଗ୍ୟ ଦୋଷରୁ ସେଇ ସର୍ବ ନିମ୍ନ ପାହାଚରେ ରହିଯାଇଛି । ସେ ପ୍ରଜାତନ୍ତ୍ରର ସଂପାଦକ, ସାଂସଦ ଓ ସର୍ବଶେଷରେ ମଣିପୁରର ରାଜ୍ୟପାଳ ଆସନରେ ଅଧିଷ୍ଠିତ ହୋଇ ମଧ୍ୟ ଭୁବନେଶ୍ୱରରେ ପହଞ୍ଚିଲେ ତାଙ୍କ ବଡ଼ଭାଇକୁ ଖୋଜିଥାନ୍ତି । ଭୁବନେଶ୍ୱରରେ ତାଙ୍କ ବାସଭବନର ଅନତି ଦୂରରେ ମୋର ମଧ୍ୟ ଘରଟିଏ ଅଛି । ସେ ଫୋନ୍ କରି ଜାଣିପାରିଲେ ମୋ ପାଖକୁ ଚାଲିଆସନ୍ତି । ତାଙ୍କ ସ୍ୱଭାବସୁଲଭ ଅମାୟିକ ବ୍ୟବହାର ଓ ସରଳତାରେ ମୁଁ ମୁଗ୍ଧ ହୋଇଯାଏ । ଶିକ୍ଷକ ସଂଘର ସଂପାଦକ ଭାବରେ ମୁଁ ବଳଙ୍ଗା, ପିପିଲି, ଖେଲୋର, ଡ଼େଲାଙ୍ଗ ଆଦି ଯେଉଁ ସ୍ଥାନକୁ ଡାକିଛି ସେ ମୋ ଅନୁରୋଧ ରକ୍ଷା କରିବାରେ ଆଦୌ ତ୍ରୁଟି କରି ନାହାନ୍ତି ଏବଂ ଭରା ସଭାରେ ଏହା ବଡ଼ଭାଇଙ୍କ ଅଲଘ୍ୟ ଆଦେଶ କହି ନିଜକୁ ଅତି ଛୋଟ କରି ନିଜର ମହାନତା ପ୍ରମାଣ କରି ଦିଅନ୍ତି ।

ଏହିପରି ଜଣେ ଅକପଟ ହୃଦୟ ଅମାୟିକ ଏବଂ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଶ୍ରଦ୍ଧା, ସ୍ନେହ ଓ ଆଦର ଲାଭ କରି ମୁଁ ଅଭିଭୂତ ହୋଇ ଉଠୁଥିଲି । ଆଜି ସେ ମୋ ଠାରୁ କେତେଦୂରରେ ରହିଲେଣି । ମୁଁ କେବଳ ବାରମ୍ବାର ତାଙ୍କ ଅମ୍ଳାନ ମହନୀୟତାକୁ ସ୍ମରଣ କରି ଅଶ୍ରୁସିକ୍ତ ନୟନରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

## ମୁକୁନ୍ଦପୁରରେ ଶେଷଦିନ

ମୁଁ ୧୯୩୩ ମସିହାରେ ଆମ ସ୍କୁଲକୁ ମି.ଇ.ବୃତ୍ତି ପରୀକ୍ଷା ପାଇଁ ନିର୍ବାଚିତ ହୋଇ ପୁରୀରେ ପରୀକ୍ଷା ଦେଇଥିଲେ ହେଁ ବୃତ୍ତି ପାଇ ପାରିନଥିଲି ।

ପରୀକ୍ଷାରୁ ଫେରି ଅଳ୍ପ କେତେଦିନ ସାଙ୍ଗସାଥୀଙ୍କ ଗହଣରେ ସ୍କୁଲରେ କଟାଇବାକୁ ବାଧ୍ୟ ହୋଇଥିଲି । ଦୀର୍ଘଦିନର ସ୍ନେହାନୁବନ୍ଧନ ଛିଣ୍ଡାଇବା ସହଜ ହୋଇ ନଥିଲା । ଅବଶେଷରେ ବିଦାୟ ମୁହୂର୍ତ୍ତ ଉପସ୍ଥିତ ହେଲା ଓ ଅଶ୍ରୁଳ ନୟନରେ ମୋର ପ୍ରିୟ ଶିକ୍ଷାକ୍ଷେତ୍ର ଅତି ପ୍ରିୟ ସାଥୀମାନଙ୍କଠାରୁ ବିଦାୟ ଗ୍ରହଣ କରିଥିଲି ।

ମି.ଇ. ସ୍କୁଲରେ ସୁଦୀର୍ଘ ଚାରି ବରଷ ଅତିବାହିତ ହୋଇଥିଲା । କହିବା ବାହୁଲ୍ୟ ଯେ ଏହି ବିଦ୍ୟାଳୟକୁ ବହୁ ନେତା, ସ୍ୱାଧୀନତା ସଂଗ୍ରାମୀ, କଂଗ୍ରେସର ପ୍ରଚାରକ ବାରମ୍ବାର ଆସି ଆମ ଛାତ୍ରାବାସରେ ଅତିଥି ହୁଅନ୍ତି । ରାତ୍ରି ଓ ସକାଳେ ସେ ଆମ ପିଲାଙ୍କୁ ଏକତ୍ର କରି ସ୍ୱାଧୀନତା ଲାଭ ଆମର ଜନ୍ମସିଦ୍ଧ ଅଧିକାର, ମହାତ୍ମା ଗାନ୍ଧୀ ଦେବଦୂତ ରୂପେ ଅବତୀର୍ଣ୍ଣ ହୋଇ ଆମ ଦେଶକୁ ସ୍ୱାଧୀନ କରିବେ, ଏଥିରେ କେହି ସନ୍ଦେହ କରିବାର କାରଣ ନାହିଁ, ଗାନ୍ଧୀ ମାନବ ରୂପରେ ସ୍ୱର୍ଗଚ୍ୟୁତ ଦେବଦୂତ, ସେ ଅସମ୍ଭବ ସମ୍ଭବ କରି ପାରିବେ - ଏହିପରି ପ୍ରାୟ ପ୍ରତି ମାସରେ ୮/୧୦ ଜଣ ଆସି ଆମ ମନରେ ଜାତୀୟତା, ସ୍ୱାଧୀନତା ଓ ମହାତ୍ମା ଗାନ୍ଧୀ ଯେ ଦେବଦୂତ ଏ ଧାରଣା ବାରମ୍ବାର ସୃଷ୍ଟି କରୁଥାନ୍ତି । ମୋର ଅବଚେତନ ମନରେ ଗାନ୍ଧିଜୀଙ୍କ ପ୍ରତି ଏକ ଉଚ୍ଚଧାରଣା ସୃଷ୍ଟି ହୋଇ ବୟସ ବଢ଼ିବା ସଙ୍ଗେ ସେହି ଧାରଣା ଦୃଢ଼ୀଭୂତ ହେବାରେ ଲାଗିଲା । ଛାତ୍ର ଜୀବନରୁ ଗାନ୍ଧୀଗତ ପ୍ରାଣ ହୋଇ ଏବେ ଏ ପରିଣତ ବୟସରେ ମଧ୍ୟ ସେହି ଧାରଣା ଅବ୍ୟାହତ ରହିଛି ।

## ପ୍ରଜ୍ଞାନୁଗ୍ରସତେ ବିଧି

ମଣିଷର କୌଣସି ଇଚ୍ଛା ବା ବାସନା କାର୍ଯ୍ୟକାରୀ ହୁଏ ନାହିଁ । ଯେଉଁ ଇଚ୍ଛାକୁ ନିୟତିର ଅଦୃଶ୍ୟ ସ୍ୱୀକୃତି ମିଳିଥାଏ, ତାହାକୁ କହନ୍ତି ଭାଗ୍ୟ ରୁଚିର ଅନୁକୂଳ ହେଲା । ମାତ୍ର ଯାହାକୁ ନିୟତି ଅନୁମୋଦନ ନକରିବ, ତାହା ଛାର ମାନବର ସମସ୍ତ ସାମର୍ଥ୍ୟକୁ ପ୍ରବଳ ପବନରେ ଶୁଷ୍କ ପତ୍ର ପରି ଉଡ଼ାଇ ନେବ । ଏତେ ଗୌରଚନ୍ଦ୍ରିକାର ଅବତାରଣାର ତାତ୍ପର୍ଯ୍ୟ ରୂପେ ଏତିକି କହିଲେ ଯଥେଷ୍ଟ ହେବ ଯେ ପ୍ରାଥମିକ ସ୍ତରରୁ ମି.ଇ. ପର୍ଯ୍ୟନ୍ତ ମୁଁ ଅତ୍ୟନ୍ତ ସୁନାମର ସହିତ ସବୁ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲି । ଅଧିକ ଅଧ୍ୟୟନ କରି ଏକ ବଡ଼ ଅଫିସର ହେବାର ସୁନେଲି ସ୍ୱପ୍ନରେ ବିଭୋର ହୋଇ ଉଠିବା ମୋ ପକ୍ଷରେ ଏକାନ୍ତ ସ୍ୱାଭାବିକ

ହୋଇଥିଲା । ମାତ୍ର ଭାଗ୍ୟଅନୁକୂଳ ନଥିଲେ ସମସ୍ତ ସମ୍ଭାବନା ଥାଇ ମଧ୍ୟ ଅକସ୍ମାତ ରାମ ରାଜା ବନୌଗତ ବା "ଉଇଁଲା ବେଳକୁ ଦିନକର ଶିରୀ ରାହୁ କିବା କଲା ଗ୍ରାସ" କିପରି ଅତି ଅବିଶ୍ୱସନୀୟ ପରିବର୍ତ୍ତନ ସୃଷ୍ଟି ହୋଇ ପ୍ରତ୍ୟାଶୀକୁ ରାଜସିଂହାସନରୁ ବନଚାରୀ କରିଦେବାକୁ ଏକ ଦଣ୍ଡ ମାତ୍ର ଲାଗିନଥାଏ ।

ଘଟଣାଚକ୍ରରେ ଭାଗ୍ୟର ବିଡ଼ମ୍ବନା ମୋତେ ଅଧ୍ୟାୟୀରୁ ବଞ୍ଚିତ କରି ଅଧ୍ୟାପକ (ଶିକ୍ଷକ) କରିଦେଲା ଓ ମୋର ସମସ୍ତ ଆଶା ଓ ଉଚ୍ଚଚିନ୍ତା ମୂଳରେ ନିଷ୍ଠୁର ଆଘାତ ଆଣି ମୋତେ ଜର୍ଜ୍ଜରିତ କରିବାରେ ଲାଗିଲା । ଏ ପ୍ରକାର ବିଡ଼ମ୍ବନା ଯେ ବିଧିନିର୍ଦ୍ଦିଷ୍ଟ, ଏକଥା ମୋ ମନ ସ୍ୱୀକାର କରିବାକୁ ଆଦୌ ପ୍ରସ୍ତୁତ ହେଉ ନଥିଲା ।

## ମହାତ୍ମା ଗାନ୍ଧୀଙ୍କ ହରିଜନ ପଦଯାତ୍ରା

ମି.ଇ. ଅଧ୍ୟୟନ ସମୟରୁ ମୋର ଅବଚେତନମନରେ ମହାତ୍ମା ଗାନ୍ଧୀଙ୍କ ପ୍ରତି ଗଭୀର ଭକ୍ତି ଓ ସମ୍ମାନ ସୃଷ୍ଟି ହୋଇ ସାରିଥିଲା । ୧୯୩୪ ମସିହାରେ ଗାନ୍ଧିଜୀଙ୍କ ଐତିହାସିକ ହରିଜନ ପଦଯାତ୍ରା ପୁରୀ ସିଂହଦ୍ୱାର ଠାରୁ ଆରମ୍ଭ ହୋଇ ଭଦ୍ରଖଠାରେ ଶେଷ ହୋଇଥିଲା । କଥାରେ ଅଛି - ଶୁଶ୍ରାବ ପୂର୍ବେ ଭବଦୀୟ କୀର୍ତ୍ତି, କର୍ଣ୍ଣାଚତ୍ୟୁପ୍ତ ଦୂୟୋର୍ବିବାଦେ ନଚ ଚକ୍ଷୁସୀମେ ପରିହତ୍ତୁକାମ୍ୟ -ସମାଗତୋଽହଂ ତଦଦର୍ଶନାୟର - ଦ୍ୱୟୋର୍ବିବାଦେର ପରି ମୁଁ ଏହି ପଦଯାତ୍ରାର ଅବସ୍ଥାନ ବା ରହଣିସ୍ଥାନଗୁଡ଼ିକ ବିଷୟରେ ଅବଗତ ହେବା ପରେ ସେହି ମହାପୁରୁଷଙ୍କୁ ଅତି ପାଖରୁ ଦର୍ଶନ କରିବାର ବଳବତୀ ଇଚ୍ଛା ଜାଗ୍ରତ ହେଲା ।

ଗାନ୍ଧିଜୀ ପୁରୀରୁ ଯାତ୍ରାରମ୍ଭ କରି ମୋର ପ୍ରିୟ ପରିଚିତ ମାଟି ଦାଣ୍ଡମୁକୁନ୍ଦପୁରସ୍ଥ ରାମଦାସ ମଠରେ ଅବସ୍ଥାନ କରିବା ସମ୍ବାଦରେ ମୁଁ ଶିହରୀ ଉଠିଲି । ଭାବିଲି, ଏ ଅପୂର୍ବ ସୁଯୋଗ ହାତଛଡ଼ା କରିବା ମୂର୍ଖତା ହେବ । ମୁଁ ନିର୍ଦ୍ଦିଷ୍ଟ ଦିନ ସକାଳୁ ବୋଉକୁ କହି ଅତି ବ୍ୟଗ୍ର ଚିତ୍ତରେ ଆସି ମି.ଇ. ସ୍କୁଲ ଛାତ୍ରାବାସରେ ପହଞ୍ଚିଲି । ସମସ୍ତ ଅନ୍ତେବାସୀ ବିଶେଷ କରି ଚିନ୍ତାମଣି ପାଣିଗ୍ରାହୀ ଆନନ୍ଦରେ ଅଧୀର ହୋଇ ଉଠିଥିଲେ । ଆମେ ଦୁହେଁ ଏକାଠି ଭୋଜନ କରିଥିଲୁ ।

ଗାନ୍ଧୀଜୀ ଆସି ମୁକୁନ୍ଦପୁର ବଡ଼ ପୋଖରୀ ଉପରେ ଥିବା ରାମଦାସ ମଠରେ ରାତ୍ରିଯାପନ କରିବାର ସ୍ଥିର ହୋଇଥାଏ । ଯେତେବେଳେ ଆମ ସ୍କୁଲ ସନ୍ନିକଟ ଜଗନ୍ନାଥ ସଡ଼କ ଦେଇ ପଦଯାତ୍ରୀମାନେ କରଣ ସାହି ଆଡ଼କୁ ଅଗ୍ରସର ହେଲେ, ଆମେ ହଷ୍ଟେଲରୁ କେତେଜଣ ପିଲା ସେମାନଙ୍କ ପଛେ ପଛେ ଯାଇଥିଲୁ ।

ମହାତ୍ମାଜୀଙ୍କୁ ଦର୍ଶନ କରିବା ପାଇଁ ଅଗଣିତ ଲୋକ ସମବେତ ହୋଇଥାନ୍ତି । କିଛି ସମୟ ପରେ ସଭା ହେଲା । ଆମେ କେତେଗୁଡ଼ିଏ ପିଲା ଆଗଧାଡ଼ିରେ ବସିଥାଉ । ମହାତ୍ମାଜୀ ନିର୍ଦ୍ଦିଷ୍ଟ ସମୟରେ ସଭାସ୍ଥଳକୁ ଆସୁଥିବା ବେଳେ ବିପୁଳ ଜୟଧ୍ୱନିରେ ସମଗ୍ର ଅଞ୍ଚଳ ମୁଖରିତ ହୋଇ ଉଠିଥିଲା । ସମସ୍ତେ ଦଣ୍ଡାୟମାନ ହୋଇ ସେଇ ମହାନ୍ ବ୍ୟକ୍ତିଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ । ଆମେ କେତେଜଣ ପିଲା ଆଗଧାଡ଼ିରେ ଠିଆ ହୋଇଥାଉ । ଗାନ୍ଧିଜୀ ମଞ୍ଚ ଆଡ଼କୁ ଯିବା ବେଳେ ଆମ୍ଭମାନଙ୍କ ମୁଣ୍ଡରେ ହାତଥୋଇ ଥୋଇ ଯାଉଥାନ୍ତି । ସେତେବେଳର କଥା ମୋର ମନେ ଅଛି । ସେଇ ମହାପୁରୁଷଙ୍କ ପବିତ୍ର କରସ୍ପର୍ଶରେ ଦେହ ଶୀତେଇ ଉଠିଥିଲା କି ଏକ ଅନନୁଭୂତ ପୁଳକ ପ୍ରବାହରେ ମୋ ଅନ୍ତର ପୂରି ଉଠିଥିଲା । ଗାନ୍ଧିଜୀ ସଭାରେ ଯାହା କହିଲେ ମୁଁ କିଛି ହେଲେ ବୁଝି ପାରୁନଥିଲି ।

ମହାତ୍ମାଜୀ ଜଣେ ଦେବଦୂତ । ସେ ନର ରୂପରେ ଜନ୍ମ ହୋଇ ଆମ ଭାରତ ମାତାଙ୍କୁ ଫିରଙ୍ଗିଙ୍କ କବଳରୁ ଉଦ୍ଧାର କରିବେ - ଏହିପରି ବାରମ୍ବାର ଶୁଣି ଏପରି ଜଣେ ପରିତ୍ରାତାଙ୍କୁ ସ୍ୱଚକ୍ଷୁରେ ଦେଖିବାର ବଳବତୀ ଇଚ୍ଛା ଥିଲା । ଆଜି ତାହା ପୂର୍ଣ୍ଣ ହୋଇଥିବାରୁ ମୁଁ କେବଳ ଗାନ୍ଧିଜୀଙ୍କ ମୁହଁ, ହାତ ଲୁଗା ଓ ଚାଦରକୁ ବାରମ୍ବାର ନିରୀକ୍ଷଣ କରୁଥିଲି ।

ତହିଁ ଆରଦିନ ଗାନ୍ଧିଜୀ ପଦଯାତ୍ରୀମାନଙ୍କ ଗହଣରେ ପିପିଲିର ସଦାବର୍ତ୍ତ ମଠରେ କିଛି ସମୟ ରହି ଆମ ଗାଁ ପାଖ ଗୁଡ଼ିଆ ପୋଖରୀରେ ଅଧିକ ସମୟ ରହିବାର ସ୍ଥିର ହୋଇଥାଏ । ରାତି ରାତି ଗୁଡ଼ିଆ ପୋଖରୀରେ ପହଞ୍ଚିବା ପାଇଁ ମୁଁ ବାଳକାଟି, ବାଲିପାଟଣାର କେତେଜଣ ସାଙ୍ଗସାଥୀଙ୍କ ସହିତ ଗୁଡ଼ିଆ ପୋଖରୀରେ ପହଞ୍ଚିଗଲି । କ୍ଷୁଧା, ନିଦ୍ରା କିମ୍ବା ପଥଶ୍ରାନ୍ତି ମୋତେ କିଛି ହେଲେ ଜଣା ପଡୁନଥିଲା । ଗାନ୍ଧିଜୀ ଓ ପଦଯାତ୍ରୀମାନଙ୍କ ରହଣି ପାଇଁ କଖାରୁଆପଡ଼ାର ବିରାଟ ଆମ୍ବ ତୋଟାକୁ ବେଶ୍ ସଫା ସୁତର କରାଯାଇଥାଏ । ଆମେ ସେଠାରେ ରାତ୍ରିଯାପନ ଉଦ୍ଦେଶ୍ୟରେ ଯାଇ ଦେଖିଲୁ, ମୁକୁନ୍ଦପୁରର ସାଧୁବାବୁ (ସାଧୁଚରଣ ମହାନ୍ତି) ଅଛନ୍ତି ଓ ଆମକୁ ଦେଖିବା ମାତ୍ରେ ସେ ଅତ୍ୟନ୍ତ ଖୁସି ହୋଇଥିଲେ ।

## ଆମ ଗାଁ ପାଖ ଗୁଡ଼ିଆ ପୋଖରୀରେ ଗାନ୍ଧିଜୀଙ୍କୁ ଦର୍ଶନ

ସାଧୁବାବୁ ଥିଲେ ଜଣେ ବିଶିଷ୍ଟ ଏବଂ ସଚ୍ଚୋଟ କଂଗ୍ରେସ କର୍ମୀ । ସେ ଆମ ସ୍କୁଲକୁ ବାରମ୍ବାର ଆସି ମହାତ୍ମାଜୀ, ସ୍ୱାଧୀନତା, ସୂତାକଟା, ସଫାଇ ଆଦି ବିଷୟରେ ବକ୍ତୃତା ଦେଇ ଆମ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲେ । ତୋଟାରେ

ଆମକୁ ଦେଖିବା ପରେ ଚୁଡ଼ା, ଗୁଡ଼, ନଡ଼ିଆ ଖାଇବାକୁ ଦେଲେ ଓ ସେଇ ତୋଟାରେ ଶୋଇ ପଡ଼ିବାକୁ କହିଥିଲେ ।

ପରଦିନ ମହାତ୍ମାଜୀଙ୍କ ଉପସ୍ଥିତିର ଶୁଭମୁହୂର୍ତ୍ତ ଆସନ୍ନ ଜାଣି ତତ୍ରତ୍ୟ କର୍ମୀଙ୍କ ସହ ସାଧୁବାବୁ ରାସ୍ତା ଉପରକୁ ଆସିଗଲେ । ଅଳ୍ପ ସମୟରେ ପୂର୍ବ ପରି ମହାତ୍ମା ଗାନ୍ଧୀଙ୍କ ଜୟ, ଭାରତ ମାତାକି ଜୟର ହର୍ଷୋତ୍ଫୁଲ୍ଲ ଧ୍ୱନି ଶୁଣାଗଲା । ମୁଁ ମୋ ସାଥୀମାନଙ୍କ ସହିତ ରାସ୍ତା କଡ଼ରେ ଅପେକ୍ଷ କରିଥାଏ । ବିରାଟ ଜନସମୁଦ୍ର ମଧ୍ୟରେ ମହାତ୍ମାଜୀ ସ୍ୱତନ୍ତ୍ର ଭାବରେ ବାରିହୋଇ ପଡୁଥାନ୍ତି ।

ଏଠାରେ ମହାତ୍ମାଜୀ ଅଧିକ ସମୟ ରହିବା ସ୍ଥିର ହୋଇଥିବାରୁ ତାଙ୍କ ରହଣୀ ପାଇଁ ଛଣ ଛପର ଘରଟିଏ ସଣ୍ଡାସ୍ ଓ ମୂତ୍ରୀ ପ୍ରସ୍ତୁତ କରାଯାଇଥାଏ । କିଛି ସମୟ ବିଶ୍ରାମପରେ ସୂତାକଟା ଆରମ୍ଭ ହେଲା । ମହାତ୍ମାଙ୍କ ସହିତ ଅନେକେ ପଦଯାତ୍ରୀ ସୂତା କାଟିଥିଲେ । କ୍ରମେ କ୍ରମେ ଅଗଣିତ ଜନତା ସମଗ୍ର ତୋଟାଟିକୁ ପୂର୍ଣ୍ଣ କରି ଦେଲେ । ଏପରିକି ସ୍ତ୍ରୀ ଲୋକମାନେ ମଧ୍ୟ ଟାଟ ଗାଡ଼ିରେ ଆସିଥିଲେ । ଗୋଟିଏ ଦିନ ପରେ ପୁଣି ସେହି ଦିବ୍ୟଦର୍ଶନର ସୁଯୋଗ ପାଇ ମୁଁ ନିଜକୁ ଧନ୍ୟ ମନେ କରିଥିଲି ।

ଏହାର ପରବର୍ତ୍ତୀ ରହଣୀସ୍ଥାନ ବାଲକାଟି ଉ.ପ୍ରା.ସ୍କୁଲ ହତାରେ ସ୍ଥିର ହୋଇଥାଏ । ଏକାଦିକ୍ରମେ ତିନିଦିନ ଧରି ଏହି ଦିବ୍ୟ-ଦର୍ଶନର ଆନନ୍ଦ ଉପଭୋଗ କରିବାର ବାସନା ଥିଲେ ମଧ୍ୟ ମୁଁ ବାଲକାଟି ଯାଇ ପାରିନଥିଲି । ମନରେ ଖୁବ୍ ଦୁଃଖ ନେଇ ଘରକୁ ଫେରି ଆସିଥିଲି ।

ଆଶ୍ଚର୍ଯ୍ୟର କଥା, ମୋ ଭାଗ୍ୟ ଏପରି ଅନୁକୂଳ ଥିଲା ଯେ ଘଟଣା ଚକ୍ରରେ ମୁଁ ସେଇ ପୁଣ୍ୟପୀଠ ବାଲକାଟି ସ୍କୁଲରେ ଶିକ୍ଷକ ରୂପେ ନିରବଚ୍ଛିନ୍ନ ଭାବରେ ୩୩ ବର୍ଷ କାର୍ଯ୍ୟ କରିଥିଲି ଓ ଗାନ୍ଧିଜୀ ବସିଥିବା ନିର୍ଦ୍ଦିଷ୍ଟ ସ୍ଥାନକୁ ପ୍ରତିଦିନ ଦର୍ଶନ କରିବାର ସୁଯୋଗ ଲାଭ କରୁଥିଲି ।

## ଅଧ୍ୟୟନ କରିବା ବୟସରେ ଅଧ୍ୟାପକ ହେଲି

ମୋର ଉଚ୍ଚଶିକ୍ଷା ବନ୍ଦ ହେଲା । । ବାପା ବହୁ ଚେଷ୍ଟା କରି ମଧ୍ୟ ବୋଉର ଦୃଢ଼ ପ୍ରତିବାଦକୁ ଉପେକ୍ଷା କରି ପାରିନଥିଲେ । ବିରକ୍ତି ଓ ଆବେଗଭରା କଣ୍ଠରେ କହିଥିଲେ - ଆଦୌ ଅକ୍ଷର ଶିକ୍ଷା କରିନଥିବା ମାଇପିଟାଏ ପାଠ ପରି ମହାନ୍ ଧନର ମାହାତ୍ମ୍ୟ ବୁଝିବ କିପରି । ଅଯଥାରେ ଘରେ ଅଶାନ୍ତି ସୃଷ୍ଟିକରିବା

ଉଚିତ ହେବନାହିଁ ଭାବି ଗଭୀର ମନଦୁଃଖରେ ବାପା ମୋ ସହିତ କଥା କହିବା କିମ୍ବା ମୋ ପାଖକୁ ଆସିବାକୁ ଇଚ୍ଛା କରୁନଥିଲେ । ମୁଁ ଭାବିଥିଲି, ବୋଉର ମୋ ପ୍ରତି ଏପ୍ରକାର ଅହେତୁକ ମମତା ଓ ବାତ୍ସଲ୍ୟ ମୋ ଭବିଷ୍ୟତକୁ ଅନ୍ଧକାରାବୃତ୍ତ କରି ଦେଲା । ମାତ୍ର ପରବର୍ତ୍ତୀ ଜୀବନରେ ନିୟତିକୁ ଅତିକ୍ରମକରିବା ବା ତାର ବିରୁଦ୍ଧିଚରଣ କରିବାର ଶକ୍ତି ଦେବତାଙ୍କର ବି ନାହିଁ - ଏହା ଉପଲବ୍ଧି କରିଥିଲି । ତଥାପି ଅଧିକ ଅଧ୍ୟୟନ କରିବାର ସୁଯୋଗରୁ ବଞ୍ଚିତ ହୋଇ ଏବେ ମଧ୍ୟ ନିୟତିର ନିଷ୍ଠୁରତାକୁ ସ୍ମରଣ କରି ମର୍ମାହତ ହୋଇ ଉଠୁଛି ।

\+ \+ \+ \+

ମୋ ଦାଦା ବାଲୁକେଶ୍ୱର ନାୟକ ଟ୍ରେନିଂ ପାଶ୍ କରିବା ପରେ ନିମାପଡ଼ା ନିକଟବର୍ତ୍ତୀ ଭିଲିଗ୍ରାମରେ ଶିକ୍ଷକତା କରୁଥାନ୍ତି । ଉକ୍ତ ଭିଲିଗ୍ରାମ ବିଦ୍ୟାଳୟରେ ଜଣେ ଦ୍ୱିତୀୟ ଶିକ୍ଷକର ଆବଶ୍ୟକତା ଥିଲା । ଉକ୍ତ ସ୍ଥାନରେ ମୋତେ ନିଯୁକ୍ତ କରିବା ପାଇଁ ଦାଦା ମନସ୍ଥ କରି ବଡ଼ଦିନ ଛୁଟିରେ ଗାଆଁକୁ ଆସିଲେ । ବାପାଙ୍କ ସହିତ ପରାମର୍ଶ କରିବା ପରେ ବୋଉର ମତାମତ ନେବା ଏକାନ୍ତ ପ୍ରୟୋଜନ ମନେକରି କିପରି ବୋଉକୁ ଏକଥା କହିବେ ସାହସ କରି ପାରିନଥିଲେ । ସମୟ ସରି ଆସୁଥିବାରୁ ସେ ଦିନେ ବୋଉକୁ ସବୁକଥା କହିଲେ । ବୋଉ କହିଲା, – ତୁ ତୋ ଭାଇଙ୍କି ପଚାରେ । ମୁଁ ତ ଗୋଟାପଣେ ଦୋଷୀ ହୋଇ ଯାଇଛି । ପୁଅ ସୁଆଗୀ ହୋଇ ତାଙ୍କ ପୁଅର ଜୀବନ ମାଟି କରି ଦେଲି । ତେଣୁ ତାଙ୍କ ପୁଅ କଥା ସେ ବୁଝନ୍ତୁ । ବୋଉର ଏ ଅଭିମାନ ମିଶା କ୍ରୋଧ ସଂପର୍କରେ ଦାଦା ପୂର୍ବରୁ ଅବହିତ ଥିଲେ । ବହୁ ଆଲୋଚନା ଆଲୋଡ଼ନ ଓ କଥା କଟାକଟି ପରେ ବାପା, ବୋଉ ଓ ଦାଦାଙ୍କର ଏକ ସମନ୍ୱୟ କମିଟି ବସିଲା । ଏଥିରେ ବୋଉ ସର୍ତ୍ତଆରୋପ କଲା, - ମୁଁ ଦାଦାଙ୍କର ପୂର୍ଣ୍ଣ ଦାୟିତ୍ୱରେ ରହିବି । ଦାଦାଙ୍କ ପାଖରେ ଏକ ବିଛଣାରେ ଶୋଇବି । ପ୍ରତି ୧୫ ଦିନରେ ଖଣ୍ଡିଏ ଲେଖାଏଁ ଚିଠି ଦେବି । ଏ ସବୁ କରିବାରେ ସାମାନ୍ୟ ବ୍ୟତିକ୍ରମ ହେଲେ ଅଥବା ମୋ ପୁଅକୁ ସେଠାରେ ରହିବାକୁ ସୁଖ ନଲାଗିଲେ ତୁ ତୁରନ୍ତ ଖବର ଦେବୁ ଓ ମୁଁ ଲୋକ ପଠାଇ ତାକୁ ଘରକୁ ନେଇ ଆସିବି । ଦାଦା ମୋ ବୋଉ ଦ୍ୱାରା ଆରୋପିତ ସକଳ ସର୍ତ୍ତକୁ ଗ୍ରହଣ କରିଗଲେ । ଏଥର ଶେଷ ପର୍ଯ୍ୟାୟର ଚିନ୍ତା ପଡ଼ିଲା ।

ଦାଦା ମୋତେ ଅଲଗା ସ୍ଥାନକୁ ଡାକିନେଇ କହିଲେ – "ଏ ପର୍ଯ୍ୟନ୍ତ ତୁ କିଛି ଜାଣିନାହୁଁ । ମୁଁ ତୋତେ ମୋ ସହିତ ନେବି । ସେଠାରେ ମୋର ଛାତ୍ର

୩/୪ ଜଣ ଅଷ୍ଟମ ଶ୍ରେଣୀରେ ପଢୁଛନ୍ତି । ତୁ ନାମକୁ ମାତ୍ର ଶିକ୍ଷକ ରହି ମାଟ୍ରିକ୍ ପଢ଼ିବୁ ଏବଂ ଘରୋଇ ଭାବରେ ପରୀକ୍ଷା ଦେବାର ସମସ୍ତ ସୁବିଧା ମୁଁ କରିବି ।'' ଦାଦାଙ୍କ କଥାରେ ମୁଁ ଆଦୌ ରାଜି ହୋଇ ନଥାନ୍ତି । ମାତ୍ର ମାଟ୍ରିକ ପଢ଼ିବାର ଯେଉଁ ସମ୍ଭାବନା ମୋ ଆଗରେ ଥୋଇ ଦେଲେ, ସେଥିରେ ମୁଁ ଅତ୍ୟନ୍ତ ଆଶାୟୀ ହୋଇ ପଡ଼ିଲି । ଭାବିଲି, ଏଠାରେ ଘରେ ବସି କିଛି ବି କରିପାରିବି ନାହିଁ । ତେଣୁ ଦାଦାଙ୍କ ପ୍ରସ୍ତାବରେ ରାଜି ହୋଇଗଲି । ଅଧ୍ୟୟନ କରିବାର ପ୍ରକୃଷ୍ଟ ସମୟରେ ଅଧ୍ୟାପନା କରିବାକୁ ସ୍ୱୀକୃତ ହେଲି । କେବଳ ମାଟ୍ରିକ ପଢ଼ିବାର ସୁଯୋଗ ଆଶାରେ ।

## କର୍ମକ୍ଷେତ୍ର ଅଭିମୁଖେ ଯାତ୍ରା

୧୯୩୫ ମସିହା ଜାନୁଆରୀ ପହିଲାରେ ଦାଦା, ମୁଁ ଓ ମୋହନ ଦାଦା (ଭିଳିଗ୍ରାମ ସନ୍ନିକଟ ସାତପୁରୀ ସ୍କୁଲର ଶିକ୍ଷକ) ଆମେ ଏକାଠି ନିମାପଡ଼ା ଅଭିମୁଖେ ଯାତ୍ରାରମ୍ଭ କଲୁ । ହରିଷପୁର ପର୍ଯ୍ୟନ୍ତ ନାଳି ରାସ୍ତା ଥାଏ । ତା ପରଠାରୁ କଦର୍ଯ୍ୟ ମାଟିରାସ୍ତା । ମଝିରେ ଦି ଥର ବିଶ୍ରାମ କରି ଦ୍ୱିପ୍ରହର ବେଳକୁ ଆମେ ଦହିଜଙ୍ଗ ନାମକ ସ୍ଥାନରେ ପହଞ୍ଚିଲୁ ଓ ସେଠାରେ ବିଶ୍ରାମ କଲୁ । ସେଠାରେ ସଡ଼କ ଉପରେ ଥିବା ଚଟି ଦୋକାନଟି ପଥଚାରୀଙ୍କ ପାଇଁ ଜଳଖିଆ ଖାଇ ବିଶ୍ରାମ କରିବାର ପ୍ରକୃଷ୍ଟ ସ୍ଥାନ ବୋଲି ବିବେଚିତ ହେଉଥାଏ । ତତ୍ରତ୍ୟ ଦୋକାନୀଙ୍କ ନାମ ହୁରୁଷୀ ଓ ସେ ଏକ ସ୍ୱତନ୍ତ୍ର ଜଳଖିଆ ପ୍ରସ୍ତୁତ କରୁଥିବାରୁ ବେଶ୍ ଜଣାଶୁଣା ହୋଇଥାନ୍ତି । ଏଇ ଜଳଖିଆର ନାମ 'ଚୁଡ଼ା କୋଦମା' । ବିଶେଷତ୍ୱ ଏହି ଯେ ଚୁଡ଼ାଘଷା ଉପରେ ଖାଣ୍ଟି ଗୁଆଘିଅ ଓ ଗୋଲ ମରିଚ ଗୁଣ୍ଡ ସାଙ୍ଗକୁ ସାମାନ୍ୟ କର୍ପୂର ମିଶାଯାଇଥାଏ । ଜଳଖିଆ ଖାଇବା ପରେ ମୁଁ ତା'ର ଉପାଦେୟତା ବେଶ୍ ଉପଲବ୍ଧି କରିଥିଲି ।

ଜାନୁଆରୀ ମାସ ଖରାର ତୀବ୍ରତା ଆଦୌ ନଥାଏ । ଆମେ କିଛି ସମୟ ପରେ ଅଗ୍ରସର ହେଲୁ । ଦହିଜଙ୍ଗ ପରେ ତଳି ଅଣ୍ଡିଆ ଓ ତାପରେ ନିମାପଡ଼ା ପଡ଼ିଲା । ରାତି ହୋଇଯିବା ଆଶଙ୍କାରେ ଆମେ ଆଉ ବିଶ୍ରାମ ନକରି ଅଗ୍ରସର ହେଲୁ । ଖେବିରିପୁର ମଠଠାରୁ ଗହୀର ବିଲ ଦେଇ ପ୍ରାୟ ସନ୍ଧ୍ୟା ୭ଟା ସୁଦ୍ଧା ଆମେ ଭିଳିଗ୍ରାମଠାରେ ପହଞ୍ଚିଲୁ । ରାତିରେ ମୁଁ କିଛି ଖାଇଲି ନାହିଁ । ଦାଦା ଭଗବାନ ସେନାପତିଙ୍କ ଏକ ଉଚ୍ଚ ପିଣ୍ଡିରେ ମୋତେ ଶୁଆଇ ଦେଇ ମୋ ତଳିପାରେ ସୋରିଷ ତେଲ ଘଷିବା ପାଇଁ ଆଣିଦେଲେ ।

ସକାଳୁ ଆମେ ଗାଁ ମୁଣ୍ଡରେ ଥିବା ସ୍କୁଲ ଘରକୁ ଚାଲି ଆସିଲୁ । କିଛି

ସମୟ ପରେ ପିଲାମାନେ ଆସିଲେ । କିଛି ଲୋକ ମୋତେ ଦେଖିବା ପାଇଁ ମଧ୍ୟ ଆସିଥିଲେ । ସେତେବେଳେ ଦି ଓଳିଆ ସ୍କୁଲ କରା ଯାଉଥିଲା । ପିଲାଙ୍କୁ ପଢ଼ାଇବା କଥା ମୁଁ ମୋଟେ ଚିନ୍ତା କରୁନଥାଏ । ଦାଦା ଆସି ମୋତେ ୨ୟ ଶ୍ରେଣୀ ପିଲାଙ୍କ ପଢ଼ା ଦେଖିବା, ମାନସାଙ୍କ ପଚାରିବା ଆଦି ସହିତ ପଣିକିଆ ବୋଲାଇବା ପାଇଁ କହିଥିଲେ । ଏହା ଏକ ଗତାନୁଗତିକ ରୀତିରେ ଚାଲିଥିଲେ ମଧ୍ୟ ମୋର ସେ ଦିଗରେ ଆଦୌ ନିଷ୍ଠା ନଥିଲା । ୫/୬ ଦିନ ପରେ ଗାଆଁର ୩/୪ ଜଣ ପିଲା (ବୈକୁଣ୍ଠ, ଲୋକନାଥ ଚତୁର୍ଭୁଜ ଆଦି) ଆମରି ସ୍କୁଲ ପାଖ ରାସ୍ତାରେ ଅଗି ପୋଖରୀ ଦେଇ ନିମାପଡ଼ା ହାଇସ୍କୁଲକୁ ପଢ଼ିବାକୁ ଯାଉଥିଲେ । ସେଇଦିନ ସ୍କୁଲରୁ ଫେରି ଦାଦାଙ୍କ ସହିତ କଥାଭାଷା ହେଲେ ଓ ମୋତେ ସବୁପ୍ରକାର ସାହାଯ୍ୟ କରିବାକୁ କହିଗଲେ ।

ବର୍ଷାରମ୍ଭ ସମୟ । ବହିପତ୍ର ମଧ୍ୟ କିଣା ହୋଇ ନଥାଏ । ମାସକ ପରେ ପାଠପଢ଼ା ଆରମ୍ଭ ହେଲା ଓ ସେଇ ପିଲାମାନେ ମୋ ସହିତ ବିଭିନ୍ନ ବିଷୟରେ ଆଲୋଚନା ଆରମ୍ଭ କଲେ । ମୁଁ ବର୍ଷକ ଆଗରୁ ପାଶ୍ କରିଥାଏ । ବିଭିନ୍ନ ବିଷୟରେ ଆଲୋଚନା ପରେ ସେମାନେ ବହୁତ ଖୁସି ହେଲେ ଓ ପ୍ରତିଦିନ ରାତିକୁ ମୋ ପାଖକୁ ଆସି ପଢ଼ିଲେ । ମୁଁ ମଧ୍ୟ ସେମାନଙ୍କ ସହିତ ପଢ଼ିଲି । କ୍ରମେ ୮ମ ଶ୍ରେଣୀ ପାଠ ମୋତେ ବେଶ୍ ସହଜ ବୋଧ ହେଲା । ଗଣିତ ପାଠଟିରେ ମୋର ଆଗ୍ରହ ନଥିବା କଥାଆଗରୁ କହିଛି । ଏତଦ୍‌ଭିନ୍ନ ଅନ୍ୟ ସମସ୍ତ ବିଷୟ ମୁଁ ଅନାୟାସରେ ଆୟତ୍ତ କରି ପାରିଥିଲି ।

ମୁଖ୍ୟତଃ ଦାଦା ସବୁଶ୍ରେଣୀର ପିଲାଙ୍କୁ ପଢ଼ାନ୍ତି । ମୁଁ କେବଳ ଜଗିଥାଏ । ଗତାନୁଗତିକ ଏବଂ ଏକାନ୍ତ ଆନ୍ତରିକତା ଶୂନ୍ୟ ଭାବରେ ମଝିରେ ମଝିରେ ପିଲାଙ୍କ ସିଲଟର ଲେଖା ଦେଖି ଦେଉଥାଏ ।

୮ମ ଶ୍ରେଣୀର ଷାଣ୍ମାସିକ ପରୀକ୍ଷାର ପ୍ରଶ୍ନ ପାଇ ଉତ୍ତର ନିଜେ ନିଜେ ଲେଖିଥିଲି । ବାର୍ଷିକ ପରୀକ୍ଷା ପରେ ଉକ୍ତ ପ୍ରଶ୍ନର ଉତ୍ତର ଦେଖି ମୋତେ ସାହାଯ୍ୟ କରୁଥିବା ପିଲାମାନେ ଭାରି ଖୁସି ହୋଇ ଯାଇଥିଲେ ।

ବର୍ଷଟିଏ କଟିଗଲା । ଏହା ଭିତରେ ମୁଁ ଦୋଳଛୁଟି, ଗ୍ରୀଷ୍ମ, ଦୁର୍ଗାପୂଜା ଏବଂ ଧାନକଟା ଛୁଟିରେ ଘରକୁ ଯାଉଥାଏ । ଦାଦାତ ବୋଉ କଥା ଅନୁସାରେ ନିୟମିତ ଦି ଧାଡ଼ି ଲେଖି ଚିଠିଟିଏମାନ ପଠାଉଥାନ୍ତି । ଘରକୁ ଯିବା ତାରିଖ ଜାଣି ବୋଉ ଲୋକଟିଏ ପଠାଇ ଦେଇଥାଏ । ମୁଁ ହାଲିଆ ହୋଇଗଲେ ସେ ଲୋକ

ମୋତେ କାନ୍ଧରେ ବସାଇ କିଛିବାଟ ନେବା ପାଇଁ ତାକୁ କଡ଼ା ତାଗିଦ୍ କରାଯାଇଥାଏ । ଲୋକଟି ଖୁବ୍ ବଳିଷ୍ଠ । ନାମ ପରୀକ୍ଷିତ ଖୁଣ୍ଟିଆ । ଏ ପ୍ରକାର ଅଭିନବ ବ୍ୟବସ୍ଥାର ସ୍ମୃତି ମୁଁ କେବେ ବି ଭୁଲି ପାରିବି ନାହିଁ ।

୧୯୩୬ ମସିହାରେ ମୋ ମୂଳଲକ୍ଷ୍ୟରେ ଗତି କରୁଥାଏ । ନବମ ଶ୍ରେଣୀର ପାଠ ପଢ଼ା ଆରମ୍ଭ କରିଦେଲି । ଗାଁ ପିଲାମାନେ ମୋତେ ସବୁ ଦିଗରୁ ସାହାଯ୍ୟ କରୁଥାନ୍ତି । ମୁଁ ନାମକୁ ମାତ୍ର ଶ୍ରେଣୀ କାର୍ଯ୍ୟ କରୁଥିଲେ ମଧ୍ୟ ସ୍କୁଲ ସମୟ ମଧ୍ୟରେ ୯ମ ଶ୍ରେଣୀର ପାଠ ପଢୁଥାଏ । ଦାଦା ସମୁଦାୟ ପିଲାଙ୍କୁ ପଢ଼ାଉ ଥାଆନ୍ତି ।

## ତତ୍କାଳୀନ ଦରମା ଓ ବିଲ୍ ବ୍ୟବସ୍ଥା

ମୁଁ ୧୯୩୫ ମସିହାରେ ଚାକିରିକଲା ବେଳକୁ ଅନ୍‌ଟ୍ରେଣ୍ଡ ମି.ଇ. ଶିକ୍ଷକ ଟ. ୬(ଛଅ) ଟଙ୍କା ଓ ଟ୍ରେଣ୍ଡ୍ ଶିକ୍ଷକମାନେ ଟ. ୯ (ନଅଟଙ୍କା) ବେତନ ଲୋକାଲ ବୋର୍ଡ଼ରୁ ପାଉଥାନ୍ତି । ଶିକ୍ଷକମାନେ ପ୍ରତିମାସରେ ବିଲ୍ ପ୍ରସ୍ତୁତ କରି କାକଟପୁର ସ.ଇ. ଅଫିସରେ ଦାଖଲ କରନ୍ତି ଓ ପ୍ରତି ୩ ମାସରେ ଥରେ ମନିଅର୍ଡ଼ର ମାଧ୍ୟମରେ ଶିକ୍ଷକମାନଙ୍କୁ ଦରମା ଦେବାର ବ୍ୟବସ୍ଥା ପ୍ରଚଳିତ ଥାଏ । ଶିକ୍ଷକର ପ୍ରାପ୍ୟ ଦରମାରୁ ମନିଅର୍ଡ଼ର୍ କମିଶନ୍ କଟାଯିବାର ପ୍ରଥା ମଧ୍ୟ ଦୀର୍ଘଦିନ ଯାଏ ଚାଲିଥିଲା । ମୋର ପ୍ରଥମ ଦରମାପ୍ରାପ୍ତି ଦିନଟି ବେଶ୍ ସ୍ମରଣୀୟ ଥିଲା । ପୋଷ୍ଟମ୍ୟାନ୍ ସ୍କୁଲକୁ ଆସିଲେ । ମୋ ସହିତ ତାଙ୍କ ପରିଚୟ ନଥିଲା । ପୁଣି ମୋତେ ଜଣେ ଶିକ୍ଷକ ହିସାବରେ ଗ୍ରହଣ କରିବାକୁ ସେ ଆଦୌ ପ୍ରସ୍ତୁତ ନଥିଲେ । ଦାଦା କୌଣସି କାମରେ ବାହାରକୁ ଯାଇ ଫେରି ନଥାନ୍ତି । ପୋଷ୍ଟମ୍ୟାନ୍ ଦରମା ନଦେଇ ନିମାପଡ଼ା ଫେରିଗଲେ । ଦାଦା ଏକଥା ଶୁଣି ଖୁବ୍ ବ୍ୟସ୍ତ ହେଲେ । ମୋତେ ସାଥୀରେ ନେଇ ପରଦିନ ନିମାପଡ଼ା ଡାକଘରକୁ ଗଲେ । ପୋଷ୍ଟମାଷ୍ଟର ଦାଦାଙ୍କୁ ସାକ୍ଷୀ ପକାଇବା ପରେ ମୁଁ ଦରମା ପାଇଥିଲି ସର୍ବ ପ୍ରଥମ ଥର ପାଇଁ ।

## କାକଟପୁରର ମା ମଙ୍ଗଳାଙ୍କୁ ଦର୍ଶନ କଲି

ପ୍ରତି ମାସରେ ଶିକ୍ଷକମାନେ ଦାଦାଙ୍କ ସହିତ କାକଟପୁର ଯାଉଥାନ୍ତି । ୧୯୩୬ ମସିହାର ଅଗଷ୍ଟ କିମ୍ବା ଜୁଲାଇ ମାସ ହେବ ମୁଁ କାକଟପୁର ଯିବା ପାଇଁ ଇଚ୍ଛା ପ୍ରକାଶ କଲି । ଦାଦା ଖୁବ୍ ଅନିଚ୍ଛା ସତ୍ତ୍ୱେ ରାଜି ହେଲେ । ମୋହନ ଦାଦାଙ୍କ ସହିତ ମୁଁ କାକଟପୁର ଯାତ୍ରା କଲି । ଗତ ରାତ୍ରିରେ ଅସରାଏ ବର୍ଷା ହୋଇଥାଏ । ଆମେ ଦଉଡ଼ିଦିଆଠାରେ ସଡ଼କକୁ ଉଠି ଅଗ୍ରସର ହେଲୁ । ଅଳ୍ପ ଦୂରରେ ପଡ଼ିଲା ମରଣଯନ୍ତା ସାଇକେଲ ଯୋର । କେବଳ ପାଦ ଚଲା ବ୍ୟତୀତ

ଅନ୍ୟ କୌଣସି ଉପାୟ ନଥାଏ ସେତେବେଳେ । ସାଇଲୋ ଯୋଡ଼ଟି ଏପରି ଚିକିଟା ଖସଡ଼ା ମାଟି ଯେ ଯେତେ ସାବଧାନ ହୋଇ ପାଦ ପକାଇଲେ ମଧ୍ୟ ପ୍ରତି ମୁହୂର୍ତ୍ତରେ ଗୋଡ଼ ଖସି ଯିବାର ଆଶଙ୍କା ଥାଏ । ଯାହା କହନ୍ତି ସାଇଲୋରେ ପାଦେ ଆଗକୁ ଗୋଡ଼ ପକାଇଲେ ଦି ପାଦ ପଛକୁ ଖସି ଆସେ । ମୁଁ ପ୍ରଥମ ଥର ପାଇଁ ଏହାର ସତ୍ୟତା ଉପଲବ୍ଧି କରିଥିଲି । ଯାହା ହେଉ ଅତି ସତର୍କତାର ସହିତ ବହୁ କଷ୍ଟରେ ସେ ଦୁର୍ଗମ ସ୍ଥାନଟି ପାରି ହୋଇ ଆମେ ଗୋପାଳପୁର ଦେଇ ତୁଳସୀପୁର ଉ.ପ୍ରା.ଠାରେ ବିଶ୍ରାମ କଲୁ । ସେତେବେଳକୁ ଥାମ ସଂଖ୍ୟା ବହୁତ ବଢ଼ିଯାଇଥାଏ । ଅଳ୍ପ ବିଶ୍ରାମ ପରେ ପୁଣି ଚାଲିଲୁ । ଖରା ନଥିଲେ ମଧ୍ୟେ ପାଗ ମେଘୁଆ ରହି ଅସହ୍ୟ ଗୁଳୁଗୁଳି ଅନୁଭୂତ ହେଉଥାଏ ।

ତୁଳସୀପୁର ପରେ ଆମେ ଅମରେଶ୍ୱର ଲତାହରଣ ଆଦି ଅନେକ ସ୍ଥାନ ଅତିକ୍ରମ କରି ନୟାହାଟ ଉ.ପ୍ରା.ସ୍କୁଲଠାରେ ପହଞ୍ଚିଲୁ । ସ୍କୁଲର ଶିକ୍ଷକ ସୋମନାଥ ଦୀକ୍ଷିତଙ୍କ ସହିତ ଅଳ୍ପ ସମୟ ସୌଜନ୍ୟମୂଳକ ସମ୍ଭାଷଣ ପରେ ଅଗ୍ରସର ହେଲୁ । ମୁଁ ତାଙ୍କ ଟ୍ରେନିଂ ସାଙ୍ଗ ବିଶ୍ୱନାଥ (ମୋ ବଡ଼ଭାଇ)ର ସାନଭାଇ ଜାଣି ମୋତେ ବହୁତ ସ୍ନେହ କଲେ । ଫେରିବା ବେଳେ ରାତିରେ ଏଠାରେ ରହି କାଲି ସକାଳୁ ଭିଳିଗ୍ରାମ ଯିବାକୁ କହିଥିଲେ । ବାଟରେ ବଲରା (ପ୍ରାଚୀର ଧାର) ଅତିକ୍ରମ କରି କାକଟପୁର ଉ.ପ୍ରା. ସ୍କୁଲରେ ପହଞ୍ଚିଗଲୁ । ସେଠାରେ ଜିନିଷପତ୍ର ରଖି ଆମେ ସମସ୍ତେ ମଙ୍ଗଳାଙ୍କ ଦର୍ଶନ ପାଇଁ ବାହାରିଲୁ । ଏହା ମୋର ପ୍ରଥମ ଦର୍ଶନ ହୋଇଥିବାରୁ ମୁଁ ଅତ୍ୟନ୍ତ ଉଦ୍‌ଗ୍ରୀବ ହୋଇ ଉଠିଥାଏ । ଦେବୀଙ୍କର ସୌମ୍ୟମୂର୍ତ୍ତି ଦେଖି ମୁଁ ଅଭିଭୂତ ହୋଇଗଲି । ସେଠାରେ ପ୍ରସିଦ୍ଧ ପ୍ରସାଦ ଗଜମଣ୍ଡାର ପ୍ରଶସ୍ତି ଶୁଣିଥିଲେ ମଧ୍ୟ ସ୍ୱାଦ-ଅନୁଭୂତି ଆଦୌ ନଥିଲା । ମନ୍ଦିର ପ୍ରାଙ୍ଗଣରେ ଆମେ ସମସ୍ତେ ଏହି ଦିବ୍ୟପ୍ରସାଦରେ ଉଦରପୂର୍ଣ୍ଣ କରି କାକଟପୁର ଉ.ପ୍ରା.ବିଦ୍ୟାଳୟକୁ ଫେରି ଯାଇଥିଲୁ । ଏହାପରେ ମୁଁ ଅନେକଥର ଏହି ପ୍ରସାଦ ମଗାଇ ଖାଇଚି, ମାତ୍ର ୧୯୫୦ ମସିହା ବେଳକୁ ଏହି ଅପୂର୍ବ ପ୍ରସାଦର ଗୌରବ ଅନେକ ପରିମାଣରେ ଊଣା ହୋଇ ଆସିଥିଲା । ସେଠାରେ ପ୍ରାୟ ୪ଟା ବେଳକୁ ସବ୍-ଇନ୍ସପେକ୍ଟର ହୃଷୀକେଶ ମିଶ୍ର ଆସି ଉପସ୍ଥିତ ହେଲେ ଓ ଶିକ୍ଷକମାନଙ୍କ ଠାରୁ ବିଲ୍ ଗ୍ରହଣ ପରେ ତାଙ୍କ ନିକଟରେ ଗଚ୍ଛିତ ଥିବା ଆଦେଶନାମା (circular ) ଗୁଡ଼ିକ ଟିପି ନେବା ପାଇଁ ଡାକି ଦେଲେ । ଏହି ପର୍ବ ଅଳ୍ପ ସମୟରେ ଶେଷ ହୋଇ ଯାଇଥିଲା ।

ଏହାର ପରବର୍ତ୍ତୀ ଅଧ୍ୟାୟ ମୋ ଜୀବନର ଗତିପଥ ବଦଳାଇବାରେ ପ୍ରେରଣା ଦେଇଥିଲା । ଘଟଣାଟି ଏହିପରି - ସବ୍‌ଇନ୍ସପେକ୍ଟରଙ୍କ ଗତ ମାସର ତାଲିକା

ଅନୁସାରେ ଶିକ୍ଷକମାନେ ସେମାନଙ୍କର ଦାୟିତ୍ୱ କେତେଦୂର ସଂପନ୍ନ କରିଛନ୍ତି, ପ୍ରଥମେ ତାହାର ଏକ ସମୀକ୍ଷା କରିନେଲେ । ପରେ ଆସନ୍ତା ମାସ ପାଇଁ ସବ୍-ଇନ୍ସପେକ୍ଟରଙ୍କ ପରିବାରର ମାସିକ ଖର୍ଚ୍ଚ ତୁଲାଇବାକୁ କେଉଁ ଶିକ୍ଷକଙ୍କୁ କେଉଁ ଦାୟିତ୍ୱ ଅର୍ପଣ କରାଗଲା, ତାହାର ଏକ ତାଲିକା ପଢ଼ି ନିର୍ଦ୍ଦିଷ୍ଟ ସମୟପରେ ବସାରେ ଦେଇଯିବାକୁ ଶ୍ରଦ୍ଧାମିଶା ଆଦେଶ ଦେଲେ । ବିନା ବିଚାରରେ ଉକ୍ତ ତାଲିକାର ଦ୍ରବ୍ୟ ଯଥା ସମୟରେ ବସାରେ ଆଣି ପହଞ୍ଚାଇ ଦେବାରେ ଆଦୌ ତ୍ରୁଟି ହେବ ନାହିଁ ବୋଲି ଶିକ୍ଷକମାନେ କହିଥିବା ଶୁଣି ମୁଁ ଆଚମ୍ବିତ ହୋଇ ଯାଇଥିଲି । ସବ୍-ଇନ୍ସପେକ୍ଟର ମହୋଦୟଙ୍କର ପରିବାର ପାଇଁ ଚାଉଳ, ଘିଅ, ଡାଲି, ପରିବା, ତେଲ ଓ ମସଲା ଆଦି ସମୁଦାୟ ଆବଶ୍ୟକ ପଦାର୍ଥ ଶିକ୍ଷକମାନେ ଅକାତରରେ ଦେବା ପାଇଁ ସହର୍ଷ ଅଙ୍ଗୀକାର କରିବାକୁ କେହି ଉତ୍କୋଚ ବୋଲି ଗ୍ରହଣ କରୁନଥିଲେ । ଏହା ଥିଲା ବହୁ ପୂର୍ବରୁ ପ୍ରଚଳିତ ଏକ ଘୃଣ୍ୟ ପ୍ରଥା । ସବ୍-ଇନ୍ସପେକ୍ଟରଙ୍କୁ ଏସବୁ ଦେବା ବିଧି ବୋଲି ଏକ ହୀନ ମାନସିକତା ଶିକ୍ଷକମାନଙ୍କ ମନରେ ବଦ୍ଧମୂଳ ହୋଇ ରହି ଯାଇଥାଏ । ମୋର ଚରିତ୍ର ଥିଲା ଭିନ୍ନ ପ୍ରକାରର ଓ ଅନେକ ଗାନ୍ଧିବାଣୀ ମୁଁ ଦାଣ୍ଡ-ମୁକୁନ୍ଦପୁରରୁ ମନେ ରଖିଥିଲି । ଅନ୍ୟାୟର ପ୍ରତିରୋଧ କରି ନପାରିଲେ ପ୍ରତିବାଦ କରିବାକୁ ପଛାଇବା ଉଚିତ ନୁହେଁ । ଏହି ବାଣୀଟି ମୋ ଅନ୍ତରରେ ପ୍ରତିଧ୍ୱନିତ ହୋଇ ଉଠୁଥାଏ । ଅତ୍ୟନ୍ତ ଧୈର୍ଯ୍ୟର ସହିତ ମୁଁ ଏହାକୁ ମନରେ ସାଇତି ରଖିଥିଲି ଏବଂ ଏହାର ମୂଳୋତ୍ପାଟନ ପାଇଁ ଉପାୟ ଚିନ୍ତା କରିବାରେ ଲାଗିଲି ।

ନୟାହାଟରେ ପହଞ୍ଚିଲା ବେଳକୁ ଘଡ଼ିଏ ରାତି ହୋଇ ଯାଇଥିଲା । ମୁଁ, ମୋହନ ଦାଦା ଓ ଆଉଜଣେ ଆମରି ପରି ଦୂରବର୍ତ୍ତୀ ସ୍ଥାନର ଶିକ୍ଷକ ସୋମନାଥ ଭାଇନାଙ୍କର ଅତିଥି ଭାବରେ ଚର୍ଚ୍ଚିତ ହୋଇଥିଲୁ ।

ଆମ ଖାଦ୍ୟପେୟର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଓ ଆମେ ସେଥିପାଇଁ ଚିନ୍ତିତ ବା ବ୍ୟସ୍ତ ନଥିବାରୁ ତିନି ହେ ସ୍କୁଲ ବାରଣ୍ଡାରେ ଶୋଇ ଖୁସି ଗପ କରୁଥାଉ । ମୁଁ ଶିକ୍ଷକମାନଙ୍କଠାରୁ ଭେଟିରୂପେ ଉତ୍କୋଚ ଗ୍ରହଣ କରୁଥିବା କଥାର ପ୍ରତିବାଦ କରୁଥିବାରୁ ମୋହନ ଦାଦା କହିଲେ; - ତୁ ନୂଆ ହୋଇ ଆସିଥିବାରୁ ଏ ସମ୍ପର୍କରେ ବିଶେଷ କିଛି ଜାଣିନାହୁ । ତେଣୁ ତୁ ଚିନ୍ତିତ ହୋଇ ପଡୁଛୁ ମାତ୍ର ଏହା ଆମର ବହୁ ପୂର୍ବରୁ ଦେହଘସା ହୋଇଗଲାଣି । ଶୁଣିବ ଏକ ମଜାକଥା ? ମୁଁ ବ୍ୟଗ୍ରତା ପ୍ରକାଶ କରିବାରୁ ସେ ଆରମ୍ଭ କରି କହିଲେ; - ଏ ଗତବର୍ଷ କଥା - ସର୍କଲ ସବ୍-ଇନ୍ସପେକ୍ଟର ପରିଦର୍ଶନରେ ଅନୁକୂଳ କଲେ ସମଗ୍ର ସର୍କଲ ବୁଲି ଆସିବାକୁ ସଂପୂର୍ଣ୍ଣ ଏକମାସ ଲାଗିଯାଏ । ସ୍କୁଲ ସଂଖ୍ୟା ସେତେ ବେଶୀ ନଥିବାରୁ ଗୋଟିଏ ସ୍କୁଲଠାରୁ

ଅନ୍ୟ ସ୍କୁଲଟି ଦୂରରେ ଥାଏ । ସବ୍-ଇନ୍ସପେକ୍ଟର ଗଲାବେଳେ ଭାଣପୁର ବାମନ ଆଚାର୍ଯ୍ୟଙ୍କ ସ୍କୁଲ ଦେଇ ଗଲେ । ସ୍କୁଲ ବନ୍ଦ ଥିଲା । ପଚାରି ବୁଝିଲେ ୨ ଦିନ ହେଲା ମାଷ୍ଟ୍ରେ ନାହାନ୍ତି । ସବ୍-ଇନ୍ସପେକ୍ଟର ଚାଲିଗଲେ । ସେତେବେଳର ବିଧାନ ଅନୁସାରେ ସ.ଇ. ଯେଉଁ ସ୍କୁଲରେ ପହଞ୍ଚିବେ ସେଠାରେ ଭୋଜନ ସାରିବା ପରେ ପରବର୍ତ୍ତୀ ସ୍କୁଲଯାଏ ଯିବା ପାଇଁ ପ୍ରଥମେ ପହଞ୍ଚିଥିବା ସ୍କୁଲର ଶିକ୍ଷକ ଏକ ଡାଟ ଗାଡ଼ିର ବ୍ୟବସ୍ଥା କରିବେ । ସବ୍-ଇନ୍ସପେକ୍ଟର ଆଚାର୍ଯ୍ୟଙ୍କ ସ୍କୁଲ ବନ୍ଦ ଥିବାରୁ ଗାଡ଼ିଟି ପରବର୍ତ୍ତୀ ସ୍କୁଲଯାଏ ଯାଇ ଫେରି ଆସିଥିଲା । ପରିଦର୍ଶନ ଶେଷରେ ଅଫିସକୁ ପ୍ରତ୍ୟାବର୍ତ୍ତନ ପାଇଁ ମଧ୍ୟ ଉକ୍ତ ନିୟମ ପାଳିତ ହେଉଥିଲା । ଦୁଃଖର କଥା, ଅନେକ ଦିନ ପରେ ସବ୍-ଇନ୍ସପେକ୍ଟର ପ୍ରତ୍ୟାବର୍ତ୍ତନ ସମୟରେ ମଧ୍ୟ ବାମନଙ୍କ ସ୍କୁଲ ବନ୍ଦ ଥିବା ଦେଖି ସେ ଅତ୍ୟନ୍ତ ବିରକ୍ତି ପ୍ରକାଶ କରିଥିଲେ ।

ସବ୍-ଇନ୍ସପେକ୍ଟରଙ୍କ ଆଗମନ ଏବଂ ପ୍ରତ୍ୟାଗମନ ଉଭୟ ସମୟରେ ସ୍କୁଲ ବନ୍ଦ ଥିବା ଜାଣି ବାମନ ବାବୁ ଏକ ଅଭିନବ ଉପାୟ ଚିନ୍ତା କଲେ । ୪/୫ ଦିନ ପରେ ଏକ ଭାରୁଆକୁ ସାଙ୍ଗରେ ନେଇ ଚାଉଳ, ଚୁଡ଼ା, ଘିଅ, କଦଳୀ ସମେତ ଭାରଟିଏ ନେଇ ସବ୍-ଇନ୍ସପେକ୍ଟରଙ୍କ ବସାରେ ପହଞ୍ଚିଲେ ଓ ମାଆଙ୍କୁ ସବ୍-ଇନ୍ସପେକ୍ଟରଙ୍କ କ୍ରୋଧ ଶାନ୍ତିର ଉପଚାର ପାଇଁ ନିବେଦନ କରି ସ୍ୱଗୃହାଭିମୁଖେ ସହର୍ଷ ପ୍ରତ୍ୟାବର୍ତ୍ତନ କରିଥିଲେ ।

ପରବର୍ତ୍ତୀ ମାସରେ ବାମନ ଅନ୍ୟମାନଙ୍କ ସହିତ ବିଲ୍ ନେଇ ଯାଇଥିଲେ । ସମସ୍ତ କାର୍ଯ୍ୟ ଶେଷରେ ସବ୍-ଇନ୍ସପେକ୍ଟର କହିଲେ; – "ବାମନ, ମୁଁ ଗଲାବେଳେ ଓ ଫେରିବା ବେଳେ ତୁମ ସ୍କୁଲ ବନ୍ଦ ଥିଲା । ତୁମେ ଏପରି ବେପରୁଆ କାର୍ଯ୍ୟ କରୁଥିବାର ବହୁ ବେନାମୀ ଚିଠି ମୁଁ ପାଇଛି । ଅଫିସକୁ ଫେରି ମୁଁ ତୁମ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ପାଇଁ ନିଷ୍ପତ୍ତି ଗ୍ରହଣ କରିବାକୁ ଯାଉଥିବା ବେଳେ ମୋ କଲମର ମୂନ ହଠାତ୍ ଭାଙ୍ଗିଗଲା । ଅନ୍ୟ କଲମ ଆଣି କିଛି ଲେଖିବାକୁ ଆରମ୍ଭ କରନ୍ତେ ହାତ ଥରି ଉଠିଲା । ଏହାର ଅର୍ଥ ତୁମେ ଠିକ୍ ବୁଝି ପାରୁଥିବ । ମୁଁ ତୁମକୃତ ଯାବତୀୟ ଅପରାଧ ମୋ ଇଚ୍ଛା ଓ ବିବେକ ବିରୁଦ୍ଧରେ ସହ୍ୟ କରୁଛି । କିନ୍ତୁ ମନେରଖ, ଏ ପାପକୁ ଉପରେ ଥିବା ଅଦୃଶ୍ୟ ଶକ୍ତି ସହସ୍ର ଲୋଚନରେ ଉତ୍ତମ ରୂପେ ନିରୀକ୍ଷଣ କରୁଛନ୍ତି । ଶତଚେଷ୍ଟା କରି ମଧ୍ୟ ତୁମ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବାକୁ ଅସମର୍ଥ । ମାତ୍ର ତୁମେ ତୁମ ଡ଼ଙ୍ଗାରେ ଜାଣିଶୁଣି ପାଣି ପୂରାଉଛ । ନିଜକୁ ସଜାଡ଼ି ନିଅ, ନହେଲେ ଏପରି ଟୋପିଏ ଟୋପି ପାଣି ପଶି ଦିନେ ତୁମ ଡଙ୍ଗାଟି ଟୁବ୍ କରି ବୁଡ଼ିଯିବ ।"

କିଛି ସମୟ ନୀରବ ରହି ପୁଣି କହିଲେ, " – ମୋର ଜଣେ ବଙ୍ଗାଳୀ ବନ୍ଧୁ କଥା ପ୍ରସଙ୍ଗରେ ଏକ ଥଟ୍ଟାଳିଆ କଥା କହିଥିଲେ । ତାକୁ ମୁଁ ହସରେ ଉଡ଼ାଇ ଦେଇଥିଲି । ମାତ୍ର ଆଜି ତୁମରିଠାରେ ତାହା ସତ୍ୟରୂପେ ମୋ ଆଗରେ ଛିଡ଼ାହୋଇ ଯାଇଛି । ଢ଼ଗଟି ଶୁଣ -

"କାଲା ବ୍ରାହ୍ମନ୍ ଗୋରା ଶୁଦ୍ର
ଯାକେ ଡ଼ରେ ମହାରୁଦ୍ର ।

ତୁମେ ବ୍ରାହ୍ମଣ କୂଳରେ ଜନ୍ମ ହୋଇ ମଧ୍ୟ ସଂପୂର୍ଣ୍ଣ କଳା ଏବଂ ତୁମେ ରୁଦ୍ର ବା ମହାଦେବଙ୍କୁ ଡରାଇବାର କଳାରେ ସିଦ୍ଧହସ୍ତ । ମୋ କଥା ଖରାପ ଭାବରେ ନନେଇ ଉପଦେଶ ଭାବି ନିଜକୁ ସଜାଡ଼ି ନିଅ ।''

କଥାଟି ଶୁଣି ଆମେ ହସି ଉଠିଥିଲୁ ସତ; ମାତ୍ର ମୋ ଅବଚେତନ ମନ ଏପ୍ରକାର ଘୃଣ୍ୟ ପରଂପରାର ଆଶୁ-ଅବସାନ ପାଇଁ ବ୍ୟସ୍ତବିବ୍ରତ ହେବାରେ ଲାଗିଲା ।

## ଶିକ୍ଷକରୁ ଧର୍ମଭାଇ ହୋଇଗଲି

ମଣିଷ ଜୀବନର ପ୍ରତ୍ୟେକ କାର୍ଯ୍ୟ ସର୍ବନିୟନ୍ତା ପ୍ରଭୁ ପରମେଶ୍ୱରଙ୍କ ନିର୍ଦ୍ଦେଶରେ ସଂଘଟିତ ହୁଏ । ଏହା ମୋ ଜୀବନର ଏକ ସ୍ମରଣୀୟ ଘଟଣାରୁ ପ୍ରମାଣିତ ହୋଇଛି ।

୧୯୩୬ ମସିହା ଏପ୍ରିଲ ମାସ । ମୁଁ ସ୍କୁଲ ଛୁଟିପରେ ଗ୍ରାମର ଶେଷ ପ୍ରାନ୍ତରେ ଥିବା ଶ୍ରୀଧର ସେନାପତିଙ୍କ ଘରକୁ ଯାଇ ଫେରୁଥାଏ । ଭିଲିଗ୍ରାମ ଦାଣ୍ଡଟିର ଏକ ବୈଶିଷ୍ଟ୍ୟ ଏହି ଯେ ଏପ୍ରିଲ ମାସରେ ମଧ୍ୟ ଗାଁ ଦାଣ୍ଡରେ ପାଣିର ଏକ କ୍ଷୀଣ ଧାର ଚାଲିଥାଏ । ଚିରାଭ୍ୟାସ ବଶତଃ ଗ୍ରାମବାସୀମାନେ ଓଦା ପାଦରେ ଯାତାୟାତ କରିବାରେ ଅଭ୍ୟସ୍ତ ଥାଆନ୍ତି । ମୁଁ କିନ୍ତୁ ଗାଁ ଭିତରକୁ ଆସିଲେ କଠୋଉ ମାଡ଼ିଆସେ, ଦାଦା ମଧ୍ୟ । ଅଭ୍ୟସ୍ତ ନଥିବାରୁ ଆମ ପାଦରେ ପାଣିଖିଆ ଆରମ୍ଭ ହେବା ପରେ ଆମେ ଖଡ଼ମ୍ ବ୍ୟବହାର କରୁଥାଉ । କେଜାଣି କାହିଁକି ଘଟଣା ଦିନ ମୁଁ ଖାଲି ପାଦରେ ଯାଇ ଫେରୁଥାଏ । ହଠାତ୍ ପଛରୁ ଜଣେ ସ୍ତ୍ରୀ ଲୋକ କଣ୍ଠରୁ ଶୁଣିଲି - "ହେ, ବୁରୁନ୍ଦି, ଆରେ ତୁ ସେଆଡ଼େ ଯାଉଚୁ କାହିଁକି ? ତୁ ମୋତେ ଭୁଲି ମୋ ଘରକୁ ମଧ୍ୟ ଭୁଲି ଗଲୁଣି ପରା ।'' ପଛକୁ ଚାହିଁ ଦେଖିଲି ଗାଁ ମୁଖିଆ ଏବଂ ଆମ ସ୍କୁଲର ଚେୟାରମେନ୍ ଅଗଣି ବାବୁଙ୍କ ପତ୍ନୀ ତାଙ୍କ ପିଣ୍ଡାରେ ଛିଡ଼ା ହୋଇ ଏପରି କହିଛନ୍ତି । ସନ୍ଦେହାଚ୍ଛନ୍ନ ହୋଇ ଫେରିଲି

ତାଙ୍କ ପାଖକୁ । ଅତି ପାଖରେ ଦେଖି ସେ ନିଜର ଭ୍ରମ ବୁଝିପାରି କହିଲେ, "ସାର, ମୋ ସାନଭାଇ ବୁରୁନ୍ଦି (ବୃନ୍ଦାବନ ସାମନ୍ତରାୟ) କଟକରେ ପଢୁଛି। ଆପଣଙ୍କ ପଛପଟ ମୋତେ ଠିକ୍ ତାଆରି ପଛପରି ଦେଖାଯିବାରୁ ମୁଁ ଏପରି ଭୁଲ କରି ପକାଇଛି । କାହିଁକି ମୋର ଏ ଭ୍ରମ ହେଲା ଆଦୌ ବୁଝି ପାରୁନାହିଁ । ମନରେ କିଛି ଭାବିବେ ନାହିଁ । ମୋ ଭୁଲ ପାଇଁ ମୁଁ ଗଭୀର ଅନୁତପ୍ତ ।'' ମୁଁ କହିଲି, – "ଏଥିରେ ଏତେ ଦୁଃଖ କରିବା କିମ୍ବା ବାରମ୍ବାର ଭୁଲ ମାଗିବା ଏବଂ ଗୁରୁତର ଅପରାଧୀ ପରି ଚିନ୍ତିତ ହୋଇ ଉଠିବାର କିଛି କାରଣ ନାହିଁ । ''

ମୁଁ ଆସି ସ୍କୁଲରେ ପହଞ୍ଚିଲି । କିଛି ସମୟ ପରେ ପିଲାମାନେ ଉପରଓଳି ସ୍କୁଲକୁ ଆସିଲେ । ମୁଁ କିଛି କିଛି ପଢ଼ାଇବାରେ ମନ ଦେଲି । ଦିନ ଏଗାରଟାର ଘଟଣା ମୋ ମନରେ କୌଣସି ରେଖାପାତ କରିନଥିଲା । ମୁଁ ଉକ୍ତ ଘଟଣାକୁ ସଂପୂର୍ଣ୍ଣ ଭୁଲିଯାଇଥିଲି ।

ସ୍କୁଲ ଛୁଟି ହେଲା । ପିଲାମାନେ ପାଟିତୁଣ୍ଡ କରି ଘରମୁହାଁ ହୋଇ ଧାଉଥାନ୍ତି । ଏତିକି ବେଳେ ଅଗଣି ବାବୁ ସ୍କୁଲ ଘର ଆଡ଼କୁ ଆସୁଥିବାର ଦେଖାଗଲା । ସେ ବଡ଼ମାଷ୍ଟ୍ରଙ୍କୁ ଦେଖାକରି କହିଲେ, " – ଆପଣ ଓ ସାନମାଷ୍ଟ୍ରେ ସନ୍ଧ୍ୟା ବେଳକୁ ଆମ ଘରକୁ ଯିବେ । କିଛି ସାମାନ୍ୟ କଥାଭାଷା ଅଛି ।'' ମୁଁ ଯାଉଛି କହି ସେ ଚାଲିଗଲେ ।''

ଦାଦା ବା ମୁଁ କିଛି ଭାବି ପାରିଲୁ ନାହିଁ । ଦ୍ୱିପ୍ରହର ଘଟଣା ମୁଁ ସଂପୂର୍ଣ୍ଣ ଭୁଲି ଯାଇଥାଏ । ସନ୍ଧ୍ୟାରେ ଆମେ ପହଞ୍ଚିଲୁ । ଅଗଣିବାବୁ ଆରମ୍ଭ କଲେ, - "ଆପଣଙ୍କ ପୁତୁରା ଆମ ସାନମାଷ୍ଟ୍ରେ ଆଜି ମୋ ସ୍ତ୍ରୀଙ୍କୁ ଅପମାନ ଦେଇଛନ୍ତି । ଆପଣ ସେ କଥା ତାଙ୍କଠାରୁ ଶୁଣନ୍ତୁ ।'' କଥା ସରି ନାହିଁ; ଅଗଣିବାବୁଙ୍କ ସ୍ତ୍ରୀ ଭିତରୁ ପାଟି କରି କହିଲେ,"– ମିଛ, ମିଛ, ତାହା ମିଛ ।'' କହି ଅଗଣି ବାବୁଙ୍କ ସ୍ତ୍ରୀ ନିଜେ ଆସି ଦାଦାଙ୍କୁ ମୁଣ୍ଡିଆ ମାରି କହିଲେ, " – ଆଜିଠାରୁ ଆପଣ ମୋର ଦାଦା ଓ ସାନମାଷ୍ଟ୍ରେ ମୋର ଧର୍ମଭାଇ ରୂପେ ଗଣାଯିବେ । ଅଜାଣତରେ ମୁଁ ଯେଉଁ ଭୁଲ କରିଛି, ତାହାର ସଂଶୋଧନ ପାଇଁ ମୋତେ ଏତିକି ଅନୁମତି ଦିଅନ୍ତୁ ।''

ଦାଦାଙ୍କୁ ସମସ୍ତ ଘଟଣା କହିବା ପରେ ଅଗଣି ଭାଇନା ହସି ଉଠି କହିଲେ, " –ଦାଦା, ଏତ ବଢ଼ିଆ କଥାଟିଏ ହେଲା । ଆପଣ ଝିଆରୀଟିଏ ମୁଁ ଶଳାଟିଏ ସେ ଭାଇଟିଏ ଅତି ଅଳ୍ପ ସମୟ ଓ ପରିଶ୍ରମରେ ପାଇଗଲେଣି । ଏହାହିଁ ପ୍ରଭୁଙ୍କ ଇଚ୍ଛା ଥିଲା । ହଁ ଏହାକୁ ଆନୁଷ୍ଠାନିକ ମାନ୍ୟତା ଦେଇ ମୁଁ କାଲି ଆମଠି ଘରେ

ଏକ ଖାନାପିନାର ଆୟୋଜନ କରିବି !'' ଦାଦା ଏଥିରେ ଅତ୍ୟନ୍ତ ପ୍ରୀତ ହୋଇ କହିଲେ, – "ଦୂର ଜାଗାରେ କାଶୀ ପାଇଁ ମୁଁ ଖୁବ୍ ଚିନ୍ତିତ ଥିଲି । ତାକୁ ଏକାବେଳେକେ ଭଉଣୀ, ଭିଣୋଇ, ଭଣଜା, ଭାଣିଜୀ ମଧ୍ୟ ମିଳିଗଲେ । ବାଃ, ଈଶ୍ୱରଙ୍କର କି ଅପାର କରୁଣା ! କି ବିଚିତ୍ର ବିଚାର !''

ପରଦିନ ଭୋଜି ପରେ ପରେ ମୁଁ ଗ୍ରାମର ଶିକ୍ଷକ ହୋଇ ରହିପାରିଲି ନାହିଁ। ଅଗଣି ଭାଇନାଙ୍କ ସ୍ତ୍ରୀଙ୍କର ମୁଁ ଭାଇ ହେବା ଫଳରେ ମୋର ଅନେକ ଧର୍ମ ଭଉଣୀ ଆପେ ଆତ୍ମପ୍ରକାଶ କଲେ । ମୁଁ ସେଇଦିନ ଠାରୁ ଅଗଣି ବାବୁଙ୍କୁ ଭାଇନା ଓ ତାଙ୍କ ସ୍ତ୍ରୀଙ୍କୁ ସଖୀ ନାନୀ ବୋଲି ଡାକିଲି । ଅବସ୍ଥା କ୍ରମେ ଏପରି ହେଲା ଯେ ଗ୍ରାମର ପ୍ରାୟ ଅଧାଅଧି ଲୋକ ମୋତେ ଶଳା ଲେଖାରେ ଖୁବ୍ ଥଟ୍ଟା କରିବାରେ ଲାଗିଲେ। ଏ ପ୍ରକାର ମନଖୋଲା ଶ୍ରଦ୍ଧା ଓ ମମତାରେ ମୁଁ ଯଥେଷ୍ଟ ଆନନ୍ଦ ପାଉଥିଲି ।

## ମମତାରେ ମାୟା ମୁଗ୍ଧ ମୁଁ

ଯାଡ଼କୁ ମୁଁ ପ୍ରତିଦିନ ସନ୍ଧ୍ୟା ସମୟରେ ସଖୀ ନାନୀ ଘରକୁ ଆସିବାକୁ ଏକପ୍ରକାର ବାଧ୍ୟ ହୋଇ ପଡ଼ିଲି । ମମତାର ଅନାବିଳ ଆକର୍ଷଣ ମୋତେ ଅବଶ କରି ପକାଇଲା। ପହଞ୍ଚିବା ମାତ୍ରେ ସେ ପଖାଳ, ମାଛଭଜା, ସୁଜି ନଡ଼ିଆ, କେବେ ଚକୁଳି ତ କେବେ ଚିତଉ ପିଠାକରି ମୋତେ କିଛି ନା କିଛି ଖାଇବାକୁ ନିଶ୍ଚୟ ଦିଏ । ନାହିଁ କରିବାର ପ୍ରଶ୍ନଇ ଉଠି ନଥାଏ । ସଖୀ ନାନୀର ସାନଜାଆ ନାରଣ ବୋଉ ଓ ବଡ଼ ଯାଆ ବୈକୁଣ୍ଠ ବୋଉ ବେଳେ ବେଳେ ଆସି ତାଙ୍କ ଘରକୁ ନିମନ୍ତ୍ରଣ କରିଥାନ୍ତି । ପରୀକ୍ଷିତ ବୋଉ, କମଳା ବୋଉ ମଧ୍ୟ ସେମାନଙ୍କ ସହିତ ମିଶି ତାଙ୍କ ଘରକୁ ଡାକିଥାନ୍ତି। ମୁଁ ପ୍ରାୟ ସବୁ ନାନୀଙ୍କ ମନ ରକ୍ଷା କରେ। ଶେଷକୁ ଏପରି ଅବସ୍ଥା ସୃଷ୍ଟି ହେଲା ଯେ ମୁଁ ମାସର ଅନେକ ସମୟ ଗାଆଁ ନାନୀମାନଙ୍କ ଘରେ ଖାଇଲି । ଭାରି ଖୁସି ଲାଗୁଥାଏ । ଖାଉଥିବା ବେଳେ ନାନୀମାନଙ୍କ ସହିତ ପାରିବାରିକ ସୁଖ ଦୁଃଖ କାହାଣୀର ଆଲୋଚନା, ସ୍ନେହ ମମତାର ଆକର୍ଷଣ ମୋତେ ଏବେ ମଧ୍ୟ ଅପୂର୍ବ ପରି ବୋଧ ହେଉଛି ।

କେଉଁ ବିଶେଷ କାରଣରୁ ଜଣେ ସଂପୂର୍ଣ୍ଣ ଅପରିଚିତ ସ୍ତ୍ରୀ ଲୋକଠାରୁ ମୁଁ ଅପ୍ରତ୍ୟାଶିତ ତଥା ଅନାକାଂକ୍ଷିତ ଭାବରେ ଅନାବିଳ ସ୍ନେହ, ମମତା ଓ ଶ୍ରଦ୍ଧା ଲାଭ କରି ନିଜକୁ ସଂପୂର୍ଣ୍ଣ ଭୁଲି ଯାଇଥିଲି, ସେ କଥା ଏବେ ମଧ୍ୟ ମୋ ମାନସ ପଟରେ ବିସ୍ମୟର ପ୍ରଶ୍ନବାଚୀ ସୃଷ୍ଟି କରିବାରେ ଲାଗିଛି । ସେ ମୋଠାରୁ କିଛି

ହେଲେ ପାଇବାର ପ୍ରତ୍ୟାଶା ଆଦୌ ନଥିଲା । କିନ୍ତୁ ମୋତେ ତାର ସ୍ନେହ, ଶ୍ରଦ୍ଧା ଓ ମମତା ବଳରେ ସଂପୂର୍ଣ୍ଣ କିଣି ପକାଇଥିଲା । କେବଳ ପଦେ ଦିପଦ ନାନୀ ଡାକରେ ସେ ସ୍ୱର୍ଗ ସୁଖ ଅନୁଭବ କରୁଥିଲା । ଦିନେ ଅଧେ କୌଣସି କାରଣରୁ ତା ଘରକୁ ଆସି ପାରିନଥିଲେ ସେ ଅଭିମାନରେ ଫାଟି ପଡୁଥିଲା ।

ବର୍ତ୍ତମାନ ସେ ଆଉନାହିଁ । ଏ ପାର୍ଥିବ ସଂସାରର ସମସ୍ତ ମାୟା ମମତାକୁ ପଛରେ ପକାଇ ଦେଇ ଦିବ୍ୟଧାମର ପଥିକ ହୋଇ ସାରିଲାଣି । ସଖୀ ନାନୀର ବିୟୋଗବାର୍ତ୍ତା ମୋତେ କିପରି ବ୍ୟଥିତ କରିଥିଲା, ତାହା ଭାଷାରେ କଦାପି ବ୍ୟକ୍ତ କରିହେବ ନାହିଁ । ସେଇ ସ୍ନେହ କାଙ୍ଗାଳୁଣୀ ସଖୀ ନାନୀର ଅମ୍ଳାନ ସ୍ମୃତିଚାରଣ କରି ମୁଁ କେଇବିନ୍ଦୁ ଲୋତକରେ ତା ସ୍ୱର୍ଗତ ଆତ୍ମାକୁ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲି । ଏ ପର୍ଯ୍ୟନ୍ତ ସଖୀନାନୀ ମୋ ଜୀବନର ଏକ ଅଶ୍ଳଳ ସ୍ମୃତି ରୂପେ ବିଦ୍ୟମାନ ଅଛି ।

## ରହସ୍ୟମୟୀ ରଙ୍ଗନାନୀ

ରଙ୍ଗନାନୀ ଏଇ ନାଁଆଟି ମନେ ପଡ଼ିଲେ ମୁଁ ବିସ୍ମୃତ ଅତୀତର ସେଇ ଆନନ୍ଦମୟ ମୁହୂର୍ତ୍ତଗୁଡ଼ିକର ସ୍ମୃତିଚାରଣ କରିଥାଏ । ହଜିଲା ଦିନର ସେଇ ଅଭୁଲା ମୁହୂର୍ତ୍ତଗୁଡ଼ିକ ଚଳଚିତ୍ରର ରୂପେଲି ପରଦାର ଛବି ପରି ମୋ ଚକ୍ଷୁ ସମକ୍ଷରେ ଉଦ୍‌ଭାସିତ ହୋଇ ଉଠେ । ଦୀର୍ଘ ପଞ୍ଚପଠୀ ବର୍ଷ ତଳର ସୁଦୂର ଅତୀତକୁ ଫେରିଯାଇ ବିଶେଷ ପୁଲକିତ ହୋଇ ଉଠେ । ପର ମୁହୂର୍ତ୍ତରେ ପୁଣି ବିଷାଦ ଜର୍ଜରିତ ହୋଇ ଭାଙ୍ଗିପଡ଼େ ।

ରଙ୍ଗନାନୀଟି ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ରଙ୍ଗରହସ୍ୟ ଆଉ ଥଟ୍ଟାମଜାର ଏକ ଜୀବନ୍ତ ପ୍ରତିମୂର୍ତ୍ତି ସିଏ । ସମସ୍ତଙ୍କ ସହିତ ହସଖୁସିରେ କଥା ହେବା, ସମସ୍ତଙ୍କ ସହିତ ଥଟ୍ଟାମଜା କରି ନିଜେ ଆନନ୍ଦ ପାଇବା ସହିତ ଅନ୍ୟ ମନରେ ଆନନ୍ଦ ସୃଷ୍ଟି କରିବାରେ ସେ ଏକାନ୍ତ ନିପୁଣା ଥିଲେ । ସେ ଭିଲିଗ୍ରାମର ଝିଅ ଏବଂ ଓଡ଼ିଶାର ଲବ୍ଧପ୍ରତିଷ୍ଠ ପ୍ରଶାସକ ନୀଳମଣି ସେନାପତି ଆଇ.ସି.ଏସ୍‌ଙ୍କ ଭ୍ରାତୃ କୁଳମଣି ସେନାପତିଙ୍କ ଧର୍ମପତ୍ନୀ । ସେ ସଦାଚଞ୍ଚଳ, କଳକଳ ଛଳଛଳ ହାସ୍ୟଭରା ଏକ ଦେବୀ ପ୍ରତିମା । ଦେଖିବାକୁ ବେଶ୍ ସୁନ୍ଦରୀ । ସୁନାପାଚିଆ ପରି ଗୋରାତକ ତକ ଦେହ ସାଙ୍ଗକୁ ଶରୀର ଅନୁଯାୟୀ ସୁନ୍ଦର ସ୍ୱାସ୍ଥ୍ୟ ।

ସଖୀନାନୀ ମୋତେ ଧର୍ମଭାଇ ରୂପେ ଗ୍ରହଣ କରିଥିବା କଥା ଶୁଣିବା ପରେ

ସେ କହିଥିଲେ ଭାଉଜ, 'ତୁମକୁ ଭାଇଟିଏ ମିଳିଗଲା, ମାତ୍ର ମୋତେ ମିଳିଲା ଖେଳନାଟିଏ । ବେଳ ଆସୁ ଦେଖିବ ମୁଁ ତାକୁ କେମିତି ନଚାଇବି ।'

ପରଦିନ ସନ୍ଧ୍ୟାରେ ସଖୀନାନୀ ମୋତେ କହିଲା, "- ଭାଇରେ, ରଙ୍ଗନାନୀ ଆସିଛନ୍ତି । ଭାଇଶଳା ହିସାବରେ ତୋତେ ମନଇଚ୍ଛା ଥଟ୍ଟା କରିବେ । ସେ ସମସ୍ତଙ୍କୁ ହସାଇ ନିଜେ ଖୁବ୍ ଆନନ୍ଦ ପାଆନ୍ତି । ଶାଶୁଘରେ ଝିଅ ସଂପୂର୍ଣ୍ଣ ସ୍ୱାଧୀନ ହେବା ନିନ୍ଦନୀୟ । ତେଣୁ ନିଜର ପ୍ରକୃତିଗତ ଥଟ୍ଟା ତାମସା ଓ ହସଖୁସିକୁ ପୂର୍ଣ୍ଣମାତ୍ରାରେ ପ୍ରକାଶ କରିବାର ପ୍ରକୃଷ୍ଟ କ୍ଷେତ୍ର ଭାବରେ ବାପା ଘରକୁ ଚାଲି ଆସନ୍ତି ଓ ଆଠ ଦଶଦିନ ରହି ପୁଣି ଫେରିଯାଆନ୍ତି । ତାଙ୍କ କଥାକୁ ଆଦୌ ଧରିବୁ ନାହିଁ। ସେ ଭାରି ଖୋଲା ମଣିଷ। ଅତ୍ୟନ୍ତ ସ୍ନେହୀ । ମୁହଁଟା ଇସ୍ପାତ ମାତ୍ର ଅନ୍ତରଟା ଫୁଲପରି ।'' ମୁଁ କହିଲି - ତୁଁ କିଛି ଚିନ୍ତା କରନା । ପ୍ରଥମ ଦେଖା ତ ହେଉ ।''

ଦୁଇଦିନ ପରେ ମୁଁ ସଖୀନାନୀ ଘରକୁ ଗଲାବେଳକୁ ମହାମାୟୀ ସେଠାରେ ସଦେହରେ ବିଦ୍ୟମାନ ଥିଲେ । ମୋତେ ଦେଖୁ ଦେଖୁ ଆରମ୍ଭ ହୋଇଗଲା । "ଆରେ, ମୁଁ ତ ମନେ ମନେ ଖୋଜୁଥିଲି । ତୁ' ତ ମୋ ଭାଇଶଳା । ଏଥର ମୋ ତୁଣ୍ଡ ଫିଟିବ ଜାଣିଥା ।'' ସତରେ ପ୍ରଥମ ଦେଖାରେ ଏତେ ଆନ୍ତରିକତା ଓ ପ୍ରାଣ ପ୍ରାଚୁର୍ଯ୍ୟ ମୁଁ ଆଉ କିଛି କହିବାକୁ ସାହସ କଲି ନାହିଁ । ଆଦର ମୋତେ ମୂକ କରି ପକାଇଥିଲା। ମୁଁ ଅଳ୍ପ ହସି ଦେଲି ସିନା, ପଦଟିଏ କଥା ମୋ ପାଟିରୁ ବାହରି ନଥିଲା ।

ମନେପଡୁଛି, ଦେଖାହେବା ମାତ୍ରେ ରଙ୍ଗନାନୀ ତାଙ୍କର ଚିରାଚରିତ ଥଟ୍ଟାର ପେଡ଼ି ଖୋଲି ଦିଅନ୍ତି । ଯିବାକୁ ବାହାରିଲେ ଭିଡ଼ି କରି ବସାଇ ନାନା କଥା କହି ହସାଇ ଥାଆନ୍ତି। ହାସ୍ୟ ରସିକତା, ଥଟ୍ଟାଳିଆ ବ୍ୟବହାର ଏବଂ ହାସ୍ୟୋଦ୍ଦୀପକ ଗଳ୍ପ ବା ଦୃଶ୍ୟ ଅଳ୍ପ ସମୟ ପାଇଁ ହେଲେ ମଧ୍ୟ ମଣିଷ ଜୀବନକୁ ରସାଣିତ କରି ପକାଏ। ମଣିଷ ଦୁଃଖ, ନିର୍ଯ୍ୟାତନା ଏପରିକି କ୍ଷୁଧା ମଧ୍ୟ ବିସ୍ମୃତ ହୋଇ ଉଠେ । ଏ ଦିଗରେ ମୁଁ ରଙ୍ଗନାନୀଙ୍କ ଅସାମାନ୍ୟ ପଟୁତାକୁ ଅଗ୍ରାଧିକାର ଦେଉଛି । ସେଇ ସରଳ, ନିଷ୍କପଟ ହୃଦୟା, ହାସ୍ୟରସିକାଙ୍କ କଥା ମନେ ପଡ଼ିଲେ ମୁଁ ଆପେ ଆପେ ମୁଗ୍ଧ ହୋଇ ଉଠେ। ମୋ' ସ୍ମୃତି ପଟରେ ରଙ୍ଗନାନୀଙ୍କ ଆଚରଣର ବୈଶିଷ୍ଟ୍ୟ ଏକ ଉଜ୍ଜ୍ୱଳ ଆଲେଖ୍ୟରୂପେ ଦୀପ୍ୟମାନ ରହିଅଛି ।

## ହର୍ଷ ଓ ବିଷାଦର ଆବର୍ତ୍ତରେ :

ବିଗତ ଦୁଇବର୍ଷ ମଧ୍ୟରେ ମୁଁ ୮ମ ଓ ୯ମ ଶ୍ରେଣୀର ପାଠ ଶେଷ କରିଥିଲେ ମଧ୍ୟ ସ୍କୁଲରେ ଯେ ଯଥାର୍ଥ କାର୍ଯ୍ୟ ସଂପାଦନରେ ତ୍ରୁଟି କରିଛି, ଏକଥା ମୋ ମନକୁ ବାରମ୍ବାର ଅସ୍ଥିର କରିବାରେ ଲାଗିଲା । ଏ ପ୍ରକାର ଗୁରୁତର ଅପରାଧ କରି ମୁଁ ନିଜକୁ କ୍ଷମା କରିପାରୁନଥାଏ । ଏହି ସମୟରେ ମୁଁ ହଠାତ୍ – ୧୯୩୭ ମସିହା ଜାନୁଆରୀ ୨ ତାରିଖରେ ଖୋର୍ଦ୍ଧା ଟ୍ରେନିଂ ସ୍କୁଲରେ ନାମ ଲେଖାଇବାକୁ ଏକ ଆଦେଶ ପାଇଲି । କିଛି ସମୟ ପାଇଁ ମୁଁ ହର୍ଷ ପୁଣି ପର ମୁହୂର୍ତ୍ତରେ ବିଷାଦ ଜର୍ଜରିତ ହୋଇ ଉଠିଲି । ଶିକ୍ଷକ ମାତ୍ରେ ଟ୍ରେନିଂ ପାଶ୍ କରିବା ନିହାତି ଆବଶ୍ୟକ । ଶୀଘ୍ର ଅର୍ଥାତ୍ ମାତ୍ର ଦୁଇ ବର୍ଷ ପରେ ଏ ପ୍ରକାର ଆଦେଶ ଆଶୀର୍ବାଦ ବୋଲି କହି ଦାଦା ଅତ୍ୟନ୍ତ ଖୁସି ହୋଇ ଉଠିଥିଲେ । ମୁଁ ମଧ୍ୟ । ମାତ୍ର ବିଷାଦର କାରଣ ହେଲା - ଭିଲିଗ୍ରାମର ସମସ୍ତ ପରିବାରଠାରୁ ଦୂରେଇ ରହିବା ସହିତ ସଖୀ ନାନୀର ବ୍ୟସ୍ତତାକୁ କିପରି ସହ୍ୟ କରିବି । ଏ ଉଭୟ ଚିନ୍ତା ମୋତେ ଯୁଗପତ୍ ହର୍ଷ ଓ ବିଷାଦର ଆବର୍ତ୍ତରେ ଉବୁଟୁବୁ କରୁଥିଲା ।

ବଡ଼ ସନ୍ତର୍ପଣରେ ମୋର ଟ୍ରେନିଂ ଯିବା କଥାଟି ସଖୀନାନୀକୁ ଜଣାଇଲି । ତାହ ସହିତ କହିଲି; " – ମୋ କଥାରେ ବିଶ୍ୱାସ କର ନାନୀ – ମୁଁ ଟ୍ରେନିଂ ପଢ଼ି ସାରି ପୁଣି ତୁମରିମାନଙ୍କ ନିକଟକୁ ଫେରି ଆସିବି ।''

ଏତିକି କଥାରେ ପରିସ୍ଥିତି ଭିନ୍ନ ମୋଡ଼ ନେଲା । ସଖୀନାନୀ ଅଧିକ ଆବେଗ ଭରା କଣ୍ଠରେ କହିଲା, " – ଆଉ ଅଧିକ ମିଛ କହି ମୋତେ ଭଣ୍ଡାଇବାକୁ ଚେଷ୍ଟା କରନା । ଯାହା ହେବାର ଥିଲା ହୋଇଗଲା । ଏହାର ପୁନରାବୃତ୍ତି ଅସମ୍ଭବ । ତୁ ନିଶ୍ଚୟ ଯିବୁ ଏଇ କଥାଟି ମାତ୍ର ସତ । ମୁଁ ପୁରାଣରୁ ପଢ଼ିଛି ଯଶୋଦା ମାଆ କୃଷ୍ଣଙ୍କୁ ପୁଅଠାରୁ ଅଧିକ ସ୍ନେହ, ଆଦର ଓ ବାତ୍ସଲ୍ୟ ଦେଇଥିଲେ ମଧ୍ୟ କୃଷ୍ଣଥିଲେ ପାଳିତ ପୁତ୍ର । ଘଟଣାଚକ୍ରରେ ଶୀଘ୍ର ଫେରି ଆସିବି କହି ମଥୁରା ଯାଇଥିଲେ ପରା । ଫେରିଲେ କି ? ମାଆ, ଭଉଣୀଙ୍କୁ ମିଛ କହିବା ପୁଅ ଆଉ ସାନ ଭାଇମାନଙ୍କର ସ୍ୱଭାବସିଦ୍ଧ ପ୍ରକୃତି । ହଇରେ, କାଶିଆ, କପିଳାଙ୍କ ଭିତରେ ପାଣି ଗଳୁ ନଥିଲା । କପିଳା ରାଜା ହେବାପରେ ଆଉ କାଶିଆକୁ ଭେଟିଥିଲା କି ? ତୁ ତ ସେଇ ନାଁ ଧରିଛୁ । ଆଉ ତୋର ମୋର ଦେଖା ସାତ ସପନ ମନେ ହେଲାଣି । ଯା, ଠାକୁରାଣୀ ତୋର ମଙ୍ଗଳ କରିବେ । ମନ ହେଲେ ଖଣ୍ଡିଏ ଖଣ୍ଡିଏ ଚିଠି ଦେଇ ଏ ଭଉଣୀମାନଙ୍କୁ ମନେ ପକାଇବୁ ।'' ମୁଁ ବା ଆଉ କି ଉତ୍ତର ଦେବି ଛଳଛଳ ଆଖିରେ ସ୍କୁଲକୁ ଫେରି ଆସିଥିଲି ।

## ମାନସ ମନ୍ଥନ

ଦାଦାଙ୍କ ସହିତ ମୁଁ ଅଗ୍ରସର ହେଉଥାଏ ସତ; ମାତ୍ର ମୋ ମନଟି ପୂରାପୂରି ଭିଲିଗ୍ରାମର ପ୍ରତ୍ୟେକଙ୍କ ବିଶେଷ କରି ସଖୀନାନୀ ପାଖରେ ଅଟକି ରହିଥାଏ ।

ଚାଲୁ ଚାଲୁ ଭାବୁଥାଏ, – କେଡ଼େ ମହିୟସୀ ଏଇ ଜନନୀପ୍ରତିମ ସ୍ନେହମୟୀ ସଖୀନାନୀ ସତେ ! ଏପରି ସରଳ, ନିଷ୍କପଟ ତଥା ବାତ୍ସଲ୍ୟମୟୀ ଦେବୀ ପ୍ରତିମାଟିଏ ମୁଁ ମୋ ଜୀବନରେ ଆଉ କେଉଁଠି ହେଲେ ଦେଖିବାକୁ ପାଇନାହିଁ । ସବୁ ଦେଇ କିଛି ନ ନେବାର ମାନସିକତାରେ ଗଢ଼ା ତା'ର ଜୀବନ ।

ସଖୀନାନୀ ଓ ରଙ୍ଗନାନୀ ଉଭୟେ ପୃଥକ୍ ପୃଥକ୍ ଚରିତ୍ରର ନାରୀ ହେଲେ ମଧ୍ୟ ଉଭୟେ ମଧ୍ୟ ଉଭୟଙ୍କ ଭୂମିକାରେ ସାର୍ଥକ ଅଭିନେତ୍ରୀ ଥିଲେ । ଜଣେ ସ୍ନେହ, ମମତା ଓ ବାତ୍ସଲ୍ୟ ଓ କରୁଣାର ମୂର୍ତ୍ତିମନ୍ତ ପ୍ରତିମା । ଅନ୍ୟ ଚରିତ୍ରଟି ଅର୍ଥାତ୍ ରଙ୍ଗନାନୀଙ୍କ ଜୀବନର ପରିଭାଷା ଥିଲା - ଯାବତ ଜୀବେତ ସୁଖଂ ଜୀବେତ୍ । ଏ ଦୁଇଟି ନାରୀ ଚରିତ୍ର ବା ଜୀବନଦର୍ଶନ ସ୍ୱତନ୍ତ୍ର ଥିଲେ ମଧ୍ୟ ଉଭୟେ ଉଭୟଙ୍କ ସ୍ଥାନରେ ପ୍ରଶଂସନୀୟ ଥିଲେ ।

## ଖୋର୍ଦ୍ଧାରେ ଟ୍ରେନିଂ ଅଧ୍ୟୟନ

ଘରେ ବଡ଼ଦିନ ଛୁଟିଟି କଟାଇ ମୁଁ ୧୯୩୭ ମସିହାର ଜାନୁଆରୀ ଦୁଇ ତାରିଖରେ ଖୋର୍ଦ୍ଧା ଯିବା ପାଇଁ ମୋର ପୂର୍ବ ପ୍ରସ୍ତୁତି ଶେଷ କରି ଦେଇଥିଲି ।

ମୋ ବଡ଼ଭାଇଙ୍କ ମୁସଲମାନ ସଙ୍ଗୀତ ପିପିଲିବାସୀ ଆଜାଦ ଅଲ୍ଲୀ ମୋତେ ସାଇକେଲରେ ନେଇ ଖୋର୍ଦ୍ଧା ଟ୍ରେନିଂ ସ୍କୁଲରେ ଛାଡ଼ିଦେଇ ଫେରି ଆସିଥିଲେ । ମୋ ପରେ ପରେ ଅନେକ ଛାତ୍ର ଉପସ୍ଥିତ ହୋଇଗଲେ । ଆମ୍ଭମାନଙ୍କର admission ସରିଲା । ପ୍ରଧାନ ଶିକ୍ଷକ ଆମ୍ଭମାନଙ୍କୁ ହଷ୍ଟେଲରେ ବିଭିନ୍ନ କୋଠରୀରେ ରହିବାର ବ୍ୟବସ୍ଥା କରି ଦେଇଥିଲେ । ୩ ତାରିଖରେ ଆମେ ଶ୍ରେଣୀରେ ଯୋଗ ଦେଇ କେବଳ ପରିଚୟ ପ୍ରଦାନ ପର୍ବରେ ସମୁଦାୟ ସମୟ ଅତିବାହିତ କରିଥିଲୁ । ମୁଁ ସଂପୂର୍ଣ୍ଣ ସମତଳ ଅଞ୍ଚଳରୁ ଆସିଥିବାରୁ ଏ ବଣ-ପାହାଡ଼ ଘେରା ପଥୁରିଆ ଭୂମିରେ ନିଜକୁ ସାମିଲ କରି ପାରିନଥିଲି; ମାତ୍ର କିଛିଦିନ ପରେ ସେଇ ପ୍ରାକୃତିକ ବିଭବ-ବିମଣ୍ଡିତ ବଣ-ପାହାଡ଼ ସହିତ ନିବିଡ଼ ଭାବରେ ସଂପର୍କଶୀଳ ହୋଇ ଉଠିଥିଲି ।

ଏଠାର ବଣ ପାହାଡ଼ର ମନଲୋଭା ଦୃଶ୍ୟ, ବିଶେଷ କରି ଅଦୂରସ୍ଥ ବହୁ

ଐତିହାସିକ କୀର୍ତ୍ତିପୁଷ୍ଟ ବରୁଣେଇ ପର୍ବତମାଳାର ଶିଖର-ଶୋଭୀ ମେଘମାଳର କମନୀୟ ଦୃଶ୍ୟ ମୋତେ ମୁଗ୍ଧ କରି ପକାଉଥିଲା ।

ଟ୍ରେନିଂ ସ୍କୁଲର ନିତ୍ୟ-ନୈମିତ୍ତିକ କାର୍ଯ୍ୟନିର୍ଘଣ୍ଟ ସଂପର୍କରେ ସୂଚନା ଦେଇ ପ୍ରଧାନ ଶିକ୍ଷକ ପ୍ରତ୍ୟେକ ଗୁରୁଛାତ୍ରଙ୍କୁ ଏଇ ନିୟମମାନ ଯଥାରୀତି ପାଳନ କରିବାକୁ ଜଣାଇ ଦେଇଥିଲେ । ଠିକ୍ ସକାଳୁ ନିତ୍ୟକର୍ମ ସାରି ପ୍ରାୟ ଏକଘଣ୍ଟା ବଗିଚା କାମ କରିବା ବାଧ୍ୟତାମୂଳକ ଥିଲା । ବିଶେଷ କରି ଖୋର୍ଦ୍ଧାର ଚତୁଃସ୍କୋଣାକାର, ସୁଗଭୀର ଏବଂ ବିରାଟକାୟ କୂପ(ବାମ୍ପୀ)ମାନ ଦେଖି ମୁଁ ଖୁବ୍ ଭୟଭୀତ ହୋଇ ପଡ଼ିଥିଲି । ଆମେ କୂଅର ମଝିରେ ଥିବା କାଠପଟା ଉପରେ ଠିଆ ହୋଇ ଅନେକ ତଳେ ଥିବା ପାଣି ଉଠାଇ ବଗିଚା ନାଳରେ ଢ଼ାଳୁ । ୨/୩ ଜଣ ପିଲା କିଆରୀ ମାନଙ୍କରେ ପାଣି ମଡ଼ାଇବାକୁ ବଗିଚାରେ ରହିଥାନ୍ତି । ଏତେ ଗଭୀରତାରୁ ପାଣି ଟାଣିବାକୁ ପଡୁଥିବାରୁ ବେଶୀ ପିଲା ଅଳ୍ପ ଅଳ୍ପ ସମୟ ପାଇଁ ପାଣି ଉଠାଇଥାନ୍ତି । ଏ ଦୂରୁହ କାର୍ଯ୍ୟ ପାଇଁ ମୁଁ ଖୁବ୍ ଡରିଯାଇଥିଲି । ମାତ୍ର କିଛିଦିନ ନିୟମିତ ଅଭ୍ୟାସ ପରେ ପାଣି କାଢ଼ିବାରେ ମୋର କିଛି ଅସୁବିଧା ହୋଇନଥିଲା ।

ଖୁବ୍ ସମ୍ଭବ ମାର୍ଚ୍ଚମାସ ବେଳକୁ ଟ୍ରେନିଂ ସ୍କୁଲ ଟାଙ୍ଗୀ ଉଠି ଯିବାରୁ ତତ୍ରତ୍ୟ ହେଡ୍‌ମାଷ୍ଟରର ଅନ୍ୟତ୍ର ନିଯୁକ୍ତି ପାଇବା ପର୍ଯ୍ୟନ୍ତ ଆପାତତଃ ଖୋର୍ଦ୍ଧା ଟ୍ରେନିଂ ସ୍କୁଲରେ ଅବସ୍ଥାନ କରିବାର ନିର୍ଦ୍ଦେଶ ଥିଲା । ଦୁଇ ଦୁଇ ଜଣ ପ୍ରବୀଣ ପ୍ରଧାନ ଶିକ୍ଷକଙ୍କ ଆଦର୍ଶ ଶିକ୍ଷାଦାନ ଆମ୍ଭମାନଙ୍କର ଅଯାଚିତ ସୌଭାଗ୍ୟ ବୋଲି ମନେକରି ଆମେ ଗୁରୁଛାତ୍ରମାନେ ଆନନ୍ଦିତ ହେଉଥିଲୁ । ଟାଙ୍ଗୀରୁ ଆସିଥିବା ହେଡ୍‌ମାଷ୍ଟରଙ୍କ ଯଥେଷ୍ଟ ଜ୍ଞାନ ଓ ଯୋଗ୍ୟତା ଥିଲା । ମାତ୍ର ଖୋର୍ଦ୍ଧା ସ୍କୁଲର ହେଡ୍‌ମାଷ୍ଟରଙ୍କ ପରି ସେ ଅଧିକ ସମୟ ଶିକ୍ଷାଦାନରେ ବ୍ୟୟ ନକରି ବହୁ ସମୟ ବକ୍ତୃତା ଛଳରେ ତାଙ୍କର ଅଭିଜ୍ଞତା, ଆମେ ଶିକ୍ଷାକ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନ କଲେ କିପରି କାର୍ଯ୍ୟକରି ଜନସାଧାରଣଙ୍କ ପ୍ରୀତିଭାଜନ ହେବୁ, ଏହି ଉପାୟଗୁଡ଼ିକ ବକ୍ତୃତା ଛଳରେ ପରିବେଷଣ କରୁଥିଲେ । ଅବଶ୍ୟ ଏହା ସବୁ ଅଦରକାରୀ ଉପଦେଶ ନଥିଲା । ମାତ୍ର ଜଗନ୍ନାଥ ସାହୁ ପ୍ରଥମେ ଶିକ୍ଷାଦାନ ନିମନ୍ତେ ଉଦ୍ଦିଷ୍ଟ ଥିବା କିଣ୍ଡର ଗାର୍ଟେନ, ମଣ୍ଟେସୋରି ଏବଂ ଫ୍ରୋବେଲଙ୍କ ପ୍ରବର୍ତ୍ତିତ ଶିକ୍ଷାପଦ୍ଧତିମାନଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନା କରି ତହିଁରେ ନିଜର ଯୁକ୍ତିଯୁକ୍ତ ମତ ପ୍ରଦାନ କରୁଥିଲେ । ପ୍ରତିଦିନର ପାଠ-ଟୀକା (lesson note ) ସଂପର୍କରେ ପ୍ରଥମେ ପଞ୍ଚସୋପାନ ଓ ପରେ ତ୍ରିସୋପାନ ପଦ୍ଧତି ସଂପର୍କରେ ଆଲୋଚନା କରି ସେ ଆମ୍ଭମାନଙ୍କୁ ତ୍ରିସୋପାନ ପଦ୍ଧତି ଅନୁସରଣ କରିବାକୁ କହିଥିଲେ ।

ପ୍ରତ୍ୟହ ପ୍ରାକ୍ଟିସିଂରେ ଟିଚିଙ୍ଗ ଦେବା, ସମାଲୋଚନା ଓ ଶେଷରେ ଆମେ

ଫେରିବା ପରେ ଶ୍ରେଣୀ କକ୍ଷରେ ସମାଲୋଚନାର ବିଭିନ୍ନ ଦିଗ ସଂପର୍କରେ ସୁଚିନ୍ତିତ ମତାମତ ଓ ପାଠଟୀକାର ତ୍ରୁଟି ସଂପର୍କରେ ଜ୍ଞାନ ପ୍ରଦାନ ଆଦି କାର୍ଯ୍ୟ ଆମ୍ଭମାନଙ୍କୁ ପ୍ରଭୂତ ସାହାଯ୍ୟ କରୁଥିଲା । ଆମ୍ଭମାନଙ୍କ ଦ୍ୱାରା ଲିଖିତ ପାଠ-ଟୀକା ଶିକ୍ଷାଦି ଶେଷରେ ଉତ୍ତମରୂପେ ଆଲୋଚିତ ହେବା ପରେ ଶିକ୍ଷକ ତହିଁରେ ନିଜର ମନ୍ତବ୍ୟ ପ୍ରଦାନ କରି ପାଠ-ଦାନ ମୂଲ୍ୟାଙ୍କନ ସ୍ୱରୂପ ନମ୍ବର ଦେଇଥାନ୍ତି ।

## ଗୁରୁଙ୍କ ଗୃହରେ ଗୁରୁ ହେଲି

ହେଡ୍‌ମାଷ୍ଟର ଜଗନ୍ନାଥ ସାହୁଙ୍କର ଏକମାତ୍ର ପୁତ୍ରର ନାମ ବିଷ୍ଣୁ । ୨ୟ ଶ୍ରେଣୀର ଛାତ୍ର ବିଷ୍ଣୁଙ୍କୁ ହେଡ୍‌ମାଷ୍ଟର ପ୍ରତିଦିନ ସକାଳେ ପଢ଼ାନ୍ତି । ଏତେ ଛୋଟ ପିଲାଙ୍କୁ ପଢ଼ାଇବା ତାଙ୍କ ପକ୍ଷରେ ଅତ୍ୟନ୍ତ ଆୟାସସାଧ୍ୟ ହୋଇଥିଲା । ମଝିରେ ମଝିରେ ମାଡ଼ ଦେବାପାଇଁ ସେ ପଛାଉନଥିଲେ । ମାଡ଼ ଖାଇ ବିଷ୍ଣୁ କାନ୍ଦିଲେ ଘରେ ସାର୍‌ଙ୍କ ସ୍ତ୍ରୀ ମନଇଚ୍ଛା ପାଟି କରନ୍ତି । କ୍ରମେ ଅବସ୍ଥା ଅସମ୍ଭାଳ ହେଲା । ଦିନେ ସାର୍ ମୋତେ ଡାକି କହିଲେ, " – ତୁମକୁ ମୁଁ ଗୋଟିଏ ଅନୁରୋଧ କରିବି । ଆଶା ତୁମେ ମୋ କଥା ରଖିବ ।''

ମୁଁ କିଛି ବୁଝିନପାରି କେବଳ ସାର୍‌ଙ୍କ ଆଡ଼କୁ ଏକ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ ରହିବାରୁ ସେ କହିଲେ, " – ତୁମେ ଆମ ବିଷ୍ଣୁକୁ ସକାଳୁ ମାତ୍ର ଘଣ୍ଟାଏ ପଢ଼ାଇବ। ମୁଁ ଜାଣେ ଟ୍ରେନିଂ ସ୍କୁଲ ଗୁରୁଛାତ୍ରମାନଙ୍କ ମଧ୍ୟରୁ ତୁମେ ଏ କାମଟି ମୋର ଯଥାର୍ଥ ଭାବରେ କରି ପାରିବ । ମୁଁ ପୋଥି ବାଇଗଣକୁ ତୁମରି ମାଧ୍ୟମରେ ବାଡ଼ି ବାଇଗଣ କରିବି ଏବଂ ତୁମେ ମଧ୍ୟ ନିରେଖିବା ଆଗରୁ ତନୟ ମୁଖ, ଲଭିବ ତନୟର ପାଳନ ସୁଖ ପରି ତୁମର ଶିକ୍ଷାଦାନର ପ୍ରାୟୋଗାତ୍ମକ ଅଭିଜ୍ଞତା ଭବିଷ୍ୟତରେ ତୁମକୁ ଯଥେଷ୍ଟ ସାହାଯ୍ୟ କରିବ । ମୁଁ ତୁମ ସାଥି ସାଥି ରହି ଦିଗ୍‌ଦର୍ଶନ ଦେବି । କିଛି ମାତ୍ର ଅସୁବିଧା ହେବନାହିଁ ।''

ସବୁକଥା ଶୁଣିବା ପରେ ମୋର ଆଉ କହିବାର କିଛି ନଥିଲା । ପୁନଶ୍ଚ ଜଣେ ଅତି ଯୋଗ୍ୟ ଶିକ୍ଷକଙ୍କଠାରୁ ଉପଯୁକ୍ତ ଦିଗ୍‌ଦର୍ଶନ ପାଇ ଅଗ୍ରସର ହେବାରେ ଯଥେଷ୍ଟ ସୁବିଧା ହେବ, ଏହି ସମ୍ଭାବନାରେ ମୁଁ ସ୍ୱୀକୃତ ହୋଇଥିଲି ।

ତହିଁ ଆରଦିନଠାରୁ ବିଷ୍ଣୁକୁ ପାଠ ପଢ଼ାଇବାକୁ ଯିବା ସ୍ଥିର ହେଲା ମାତ୍ରେ ପ୍ରାରମ୍ଭିକ ସ୍ତରରେ ମୋତେ କେଉଁ ଉପାୟ ଅବଲମ୍ବନ କରିବାକୁ ହେବ, ତାର ସୂଚନା ଦେଇଥିଲେ ସାର୍ ।

ବିଷ୍ଣୁ ଗୁରୁଛାତ୍ରଙ୍କର ଆଦୌ ଅପରିଚିତ ନଥିଲା । ହଷ୍ଟେଲରେ ପଶି ନିତି ଖୁଜୁବୁଜୁ କରିବା ତା'ର ଏକ ଅଭ୍ୟାସ ଥିଲା । ମୁଁ ପ୍ରାୟ ୭ଟା ବେଳକୁ ପ୍ରଧାନ ଶିକ୍ଷକଙ୍କ କ୍ୱାର୍ଟରରେ ପହଞ୍ଚି ବିଷ୍ଣୁକୁ ଗପ କରିବା ବୋଲି କହିବାରେ ସେ ବେଶ୍ ଆଗ୍ରହୀ ହୋଇ ମୋ ଠାରୁ ଗପଟିଏ ଶୁଣିଲା । ପରେ ପରେ ମୁଁ ତାକୁ ସେ ଜାଣିଥିବା କିଛି ଗପ କହିବାକୁ କହିବାରେ ପ୍ରଥମେ ରାଜି ହୋଇ ନଥିଲେ ମଧ୍ୟ ଅସଂଲଗ୍ନ ଭାବରେ ଗପଟିଏ କହିଲା । ମୁଁ ସେ କହିଥିବା ଗପଟି ସଜାଡ଼ି କରି ତାକୁ କହିଦେଲି । ଏତିକିରେ ସେ ଦିନର ପାଠପଢ଼ା ସମାପ୍ତ ହୋଇଥିଲା ।

କ୍ରମାଗତ ୩/୪ ଦିନ ଏହିପରି ଚାଲିବା ପରେ ବହି ପଢ଼ିବା ସଂଖ୍ୟାଲେଖିବା ଆଦି ଧୀରେ ଧୀରେ ଆରମ୍ଭ କରିବା ଦେଖି ସାର୍ ମନାକରି କହିଲେ, " – ଶ୍ରେଣୀରେ ବହିପଢ଼ା, ଅଙ୍କକଷା ହେଉଛି । ତୁମେ ତାକୁ ବାହାରେ ବୁଲିବା ବାହାନାରେ ସାଥୀରେ ନେଇ ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଗଛ, ତାହାର ନାମ, ପତ୍ରର ରଙ୍ଗ, ଦୂରେ ଦିଶୁଥିବା ପାହାଡ଼, ପାଖର ପଲଟନ ପଡ଼ିଆ ଓ ପୋଖରୀ, ପଥରରେ କି କି କାମ ହୁଏ, କୋଠାଗୁଡ଼ିକ କି କି ଜିନିସରେ ତିଆରି ଆଦିର ଧାରଣା ଦେଇ ପରଦିନ ସେଇ ଦେଖିଥିବା ପଦାର୍ଥ ବା ସ୍ଥାନ ସଂପର୍କରେ ଗଣିତ ପଚାରିବ । ପ୍ରକୃତି ପର୍ଯ୍ୟବେକ୍ଷଣ ଆପେ ଆପେ ସୃଷ୍ଟି ହୋଇଯିବ ।''

ଏ ସବୁ ସଂପର୍କରେ ପ୍ରତିଦିନ ମୋତେ ଯେଉଁ ଅଗ୍ରୀମ ଉପଦେଶ ମିଳୁଥାଏ, ବାସ୍ତବରେ ତାହାକୁ କାର୍ଯ୍ୟରେ ପ୍ରୟୋଗ କରି ମୁଁ ବେଶ୍ କିଛି ଅଭିଜ୍ଞତା ହାସଲ କରିଥିଲି । ଛୋଟ ପିଲାଙ୍କୁ ଗଳ୍ପ ମାଧ୍ୟମରେ ଗଣିତ ଶିକ୍ଷାଦେବାର ପଦ୍ଧତି ମୁଁ ମୋର ପୂଜ୍ୟ ଗୁରୁ ଜଗନ୍ନାଥ ସାହୁଙ୍କ ଠାରୁ ଆହରଣ କରିଥିଲି । ପ୍ରତିଦିନ ଶ୍ରୁତିଲିଖନ, ଗଣିତ, ପଣକିଆ ଓ ଅନ୍ୟପାଠ ଅତ୍ୟନ୍ତ ଆଗ୍ରହର ସହିତ ବିଷ୍ଣୁ ଗ୍ରହଣ କରି ମୋତେ ଏକ ସଫଳ ଶିକ୍ଷକ ରୂପେ ପ୍ରତିପାଦିତ କରିଥିଲା । ଏ କଥା କହିବାର ଉଦ୍ଦେଶ୍ୟ ଏହି କି ହେଡ୍‌ମାଷ୍ଟର ମୋର ପ୍ରଶଂସା ସବୁ ଗୁରୁଛାତ୍ରଙ୍କ ଆଗରେ କରିବାରେ ମୁଁ ଲଜ୍ଜିତ ହୋଇଥିଲି । ମୋର ଏ ସାଫଲ୍ୟର ଅସଲି ଚାବିକାଠି ଯେ ସାର୍, ନିଜେ ଏକଥା ସେ ଆଦୌ ପ୍ରକାଶ କରି ନଥିଲେ । ଯାହାହେଉ ବିଷ୍ଣୁ ସବୁ ଦିଗରୁ ଭଲ ଛାତ୍ରଟିଏ ହୋଇଗଲା । ଦିନଟିଏ ମଧ୍ୟ ମୁଁ ତା ଉପରେ ରାଗି ନାହିଁ ବା ତା ଦିହରେ ହାତ ଦେଇନାହିଁ ।

ପରୀକ୍ଷା ସମୟ ହୋଇ ଆସିଲା । ମୁଁ ପ୍ରତ୍ୟେକ ବିଷୟ ପ୍ରତି ଯଥୋଚିତ ଧ୍ୟାନ ଦେଇଥାଏ । ପରୀକ୍ଷାରେ ଆଶାନୁରୂପ ସଫଳତା ଲାଭ କରି ପାରିନଥିଲେ

ମଧ୍ୟ second division ରେ ପାଶ୍ କରିଥିଲି ।

ପରୀକ୍ଷା ଶେଷରେ ବିଦାୟର ବିଷାଦିତ ଲଗ୍ନ ଉପସ୍ଥିତ ହେଲା । ଟ୍ରେନିଂ ସ୍କୁଲରେ ଏକ ସମାବର୍ତ୍ତନ ଉତ୍ସବରେ ବିଭିନ୍ନ ବକ୍ତା ବହୁ ମୂଲ୍ୟମାନ ପରାମର୍ଶମାନ ଗୁରୁଛାତ୍ରମାନଙ୍କୁ ପ୍ରଦାନ କରିଥିଲେ ।

ମୁଁ ବିଷ୍ଣୁକୁ କୁଣ୍ଡାଇ ପକାଇ ଆଶୀର୍ବାଦ କରୁଥିବା ଅବସରରେ ଅଜାଣତରେ ମୋ ଚକ୍ଷୁ ଲୁହ ଛଳ ଛଳ ହୋଇ ଆସିଲା । ଗୁରୁ ଓ ଗୁରୁପତ୍ନୀ ମୋତେ ଅଶେଷ ଆଶୀର୍ବାଦ ପ୍ରଦାନ କରି ଭବିଷ୍ୟତରେ ନିଜକୁ ଜଣେ କୃତୀ ଶିକ୍ଷକ ରୂପେ ପ୍ରତିଷ୍ଠିତ କରିବାକୁ ଉପଦେଶ ଦେଇଥିଲେ । ଗୁରୁ ପତ୍ନୀ ମୋ ମୁଣ୍ଡରେ ହାତ ବୁଲାଇ ଅନେକ ମଙ୍ଗଳ କାମନା କରିଥିବା କଥା ମୁଁ ଏବେ ମଧ୍ୟ ଭୁଲି ପାରୁନାହିଁ । କଥା ପ୍ରସଙ୍ଗରେ ହେଡ୍‌ମାଷ୍ଟର କହିଲେ, "–କାଶୀନାଥ, ମୁଁ ତୁମର ଗୁରୁ । ମୁଁ ତୁମଠାରୁ ତୁମେ ବିଷ୍ଣୁଠାରୁ ଗୁରୁ ଦକ୍ଷିଣା ପାଇବା ବିଧି ।'' ମୁଁ କହିଲି, "ସାର୍ - ଆପଣ ମୋଠାରୁ ପାଇବେ ଓ ବିଷ୍ଣୁ ତରଫରୁ ମୋତେ ଦେବେ । ତେଣୁ ଏହା ସମାନ ସମାନ ହୋଇ ପ୍ଲସ୍ ମାଇନସ୍ ପରି କ୍ୟାନ୍‌ସଲ୍ କରାଯାଉ । ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରିବି ଯେ ଆପଣ ମୋତେ ଯେଉଁ ଜ୍ଞାନ ପ୍ରଦାନ କରିଛନ୍ତି ଏବଂ ବିଶେଷ କରି ପ୍ରଦତ୍ତ ଜ୍ଞାନ କୌଶଳକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାର ଯେଉଁ ଅପୂର୍ବ ସୁଯୋଗ ଦେଇଛନ୍ତି, ତାର ପ୍ରତିଦାନ ମୁଁ ଆଦୌ ଦେଇ ପାରିବି ନାହିଁ ।'' ଗୁରୁଜୀ ସହର୍ଷ ବଦନରେ କହିଲେ - "ତୁମେ ଯାହା ଦେଲ ତାହା ଯଥେଷ୍ଟ । ଯାଅ, – ଜଣେ ସଫଳ ଶିକ୍ଷକ ରୂପେ ନିଜକୁ ପ୍ରତିଷ୍ଠିତ କରି ପାରିଥିବା ସମ୍ବାଦ ମିଳିଲେ ତାହାହିଁ ହେବ ମୋ ପାଇ ଯଥାଯୋଗ୍ୟ ଗୁରୁ ଦକ୍ଷିଣା ।'' ଜୀବନରେ ଏଇ ବିଦାୟ ମୁହୂର୍ତ୍ତଟି ଅବିସ୍ମରଣୀୟ ରହିଗଲା ।

## ନିମାପଡ଼ାରେ ସର୍ବପ୍ରଥମ ଶିକ୍ଷକ ସମାବେଶ

ଖୋର୍ଦ୍ଧାରେ ଟ୍ରେନିଂ ପରୀକ୍ଷା ଚାଲିଥିବା ବେଳେ ଖବର ପାଇଲି, – ନିମାପଡ଼ା ଗୁଣ୍ଡିଚାବାଡ଼ି ତୋଟାରେ ପ୍ରାକ୍ଟିସିଂ ଉ.ପ୍ରା.ର ଶିକ୍ଷକ ଉଦୟ ଆଚାର୍ଯ୍ୟ ଓଡ଼ିଶାର ସର୍ବ ପ୍ରଥମ ପ୍ରାଥମିକ ଶିକ୍ଷକ ସମ୍ମିଳନୀ ପାଇଁ ଅବିଭକ୍ତ ପୁରୀ ଜିଲ୍ଲାର ଶିକ୍ଷକମାନଙ୍କୁ ଅନୁରୋଧ କରିଛନ୍ତି । ଡିସେମ୍ବର ୧୯୩୭ ମସିହାରେ ଏହା ଅନୁଷ୍ଠିତ ହେବା ପାଇଁ ସ୍ଥିର ହୋଇଥାଏ ।

ମୁଁ ଏପରି ଏକ ସୁଯୋଗ ଖୋଜୁଥାଏ, – ଯେଉଁଠି ସର୍କଲ ସବ୍-ଇନ୍ସପେକ୍ଟର ଓ ଲୋକାଲ ବୋର୍ଡ଼ ସଭ୍ୟମାନେ ନିରୀହ ପ୍ରାଥମିକ ଶିକ୍ଷକମାନଙ୍କୁ

ଚତୁରତାର ସହିତ ଲୁଣ୍ଠନ କରୁଥାନ୍ତି, ସେମାନଙ୍କ ମୁଖା ଖୋଲି ଦେବା ପାଇଁ । ଏ ପ୍ରକାର ଏକ ସମ୍ମିଳନୀରେ ଉକ୍ତ ବିଷୟକୁ ଉପସ୍ଥାପନା କରିବା ଉଦ୍ଦେଶ୍ୟରେ ମୁଁ ମୋ ଅଭିଜ୍ଞତା ଓ କିଛି ଶୁଣାକଥାକୁ ବର୍ଣ୍ଣନା କରି ଆଚାର୍ଯ୍ୟଙ୍କୁ ଏକ ନାତି ଦୀର୍ଘ ପତ୍ରଟିଏ ଲେଖିଥିଲି । ଠିକ୍ ଆମ ପରୀକ୍ଷାର ଅବ୍ୟବହିତ ପରେ ପରେ ।

ମୁଁ ପରୀକ୍ଷା ପରେ ଘରେ ଥାଏ । ସେତେବେଳକୁ ମୋର ସେହି ବାତ୍ସଲ୍ୟ, ମମତା ଓ ସ୍ନେହର ଜୀବନ୍ତ ପ୍ରତିମୂର୍ତ୍ତି ମୋ ବୋଉ ମୋଠାରୁ ସବୁଦିନ ପାଇଁ ବହୁଦୂରକୁ ଚାଲି ଯାଇଥାଏ, ମୋତେ ସଂପୂର୍ଣ୍ଣ ଏକାକୀ ତଥା ଅସହାୟ କରି । ଘରେ ସବୁଥାଇ ମୋତେ ଚାରି ଆଡ଼ ଶୂନ୍ୟ ଦେଖାଯାଉଥାଏ । ତୁରନ୍ତ ଭିଲିଗ୍ରାମ ଯାଇ ସେଇ ସଖୀନାନୀ ସହିତ ଦେଖା କରିବାକୁ ମନ ବ୍ୟାକୁଳ ହୋଇ ଉଠୁଥାଏ ।

ମୁଁ ଦିନ ଦଶଟା ସୁଦ୍ଧା ପହଞ୍ଚି ଆଚାର୍ଯ୍ୟଙ୍କ ସହିତ ସାକ୍ଷାତ କରିବାରେ ସେ ଅତ୍ୟନ୍ତ ଆଗ୍ରହର ସହିତ ମୋ ସହିତ ଆଲୋଚନା କଲେ ।

ଉକ୍ତ ଅଭିଯୋଗକୁ ଏକ ପ୍ରସ୍ତାବ ଆକାରରେ ମୁଁ ସଭାରେ ଉପସ୍ଥାପିତ କରିବାର ସ୍ଥିର ହେଲା । ଚାରିଆଡୁ ଶିକ୍ଷକମାନେ ଆସିବାରେ ଲାଗିଥାନ୍ତି । ଦୁଃଖର କଥା କେତେକ ଶିକ୍ଷକ ଉକ୍ତ ପ୍ରସ୍ତାବର ଘୋର ବିରୋଧ କରି କହିଲେ, " – ନଈରେ ଘର କରି କୁମ୍ଭୀର ସହିତ ଶତ୍ରୁତା ବୁଦ୍ଧିମାନର କାର୍ଯ୍ୟ ନୁହେ, ଏହାକୁ ବନ୍ଦ କର ।'' ମାତ୍ର ଆଚାର୍ଯ୍ୟଙ୍କ ଦୃଢ଼ ଯୁକ୍ତି ଓ ଆଉ କେତେଜଣ ଶିକ୍ଷକଙ୍କ ସମର୍ଥନରେ ଉକ୍ତ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହାର ସୁଦୂରପ୍ରସାରୀ ପରିଣତି ଶିକ୍ଷକମାନେ ଅଳ୍ପଦିନରେ ଅନୁଭବ କରିଥିଲେ । ଏହାହିଁ ଥିଲା ପ୍ରାଥମିକ ଶିକ୍ଷକ ସଂଘର ସ୍ମରଣୀୟ ଜନ୍ମତିଥି ।

## ଫେଏରେ କାଶିଆ ଲେଉଟିଲା

ନିମାପଡ଼ା ସମ୍ମିଳନୀ ରାତିଯାଏ ଚାଲିଲା । ଦୂର ଦୂରାନ୍ତରୁ ଆସିଥିବା ଶିକ୍ଷକମାନଙ୍କ ପାଇଁ ରହିବା ଓ ଖାଇବା ବ୍ୟବସ୍ଥା ଉ.ପ୍ରା. ସ୍କୁଲରେ ହୋଇଥାଏ । ମୁଁ ସେଇଠାରେ ରାତିରେ ରହିଗଲି ।

ଠିକ୍ ସକାଳୁ ସ୍ନାନାଦି ନିତ୍ୟକର୍ମ ସାରି ବାହାରିଲି ଭିଲିଗ୍ରାମ ଅଭିମୁଖେ । ବାଟଯାକ କେବଳ ଭିଲିଗ୍ରାମର ଅନୁଭୂତିମାନ ମନେପଡ଼ି ବେଶ୍ ଖୁସି ଲାଗୁଥାଏ । ସଡ଼କରୁ ଏକ ପାଦଚଲା ବାଟଦେଇ ମୁଁ କେତେବେଳେ ସ୍କୁଲଠାରେ ପହଞ୍ଚିଲି, ଜାଣିପାରିନଥିଲି ।

ଦାଦା ଆଉ ସେଠାରେ ନଥିଲେ । ତାଙ୍କ ସ୍ଥାନରେ ଚକ୍ରଧରବାବୁ ଭିଲିଗ୍ରାମ ସ୍କୁଲକୁ ଆସିଥାନ୍ତି । ଚକ୍ରଧର ବାବୁଙ୍କ ସହିତ ସୌଜନ୍ୟମୂଳକ କିଛି କଥାବାର୍ତ୍ତା ପରେ ମୁଁ ଗାଁ ଭିତରକୁ ଯିବାକୁ କହିବାରେ ସେ ଆପତ୍ତି କରିନଥିଲେ। ପୂର୍ବରୁ ମୋ ଆସିବା କଥା ଅଗଣି ଭାଇନାଙ୍କୁ ଚିଠିରେ ଜଣାଇ ଦେଇଥାଏ ଓ ସେ ସଖୀନାନୀ ସହିତ ଅନ୍ୟ ନାନୀମାନଙ୍କୁ ଜଣାଇ ଦେଇଥାନ୍ତି । ମୁଁ ଗାଁ ଭିତରକୁ ଯାଉଥିବା ବେଳେ ଅଧ ବାଟରେ ତାଙ୍କୁ ଭେଟିଲି ଓ ଦୁହେଁ ସାଥୀ ହୋଇଗଲୁ । ଦାଣ୍ଡ ଦୁଆରେ ନାନୀକୁ ଦେଖି ମୁଁ ନମସ୍କାର ହେଲି ଓ ସେ ମୋ ହାତଧରି ଘରକୁ ନେଇଗଲା । ପରେ ପରେ ଆଉ ଆଉ ନାନୀମାନେ ଆସି ନାନାପ୍ରକାର ପ୍ରଶ୍ନ କରୁଥିବା ବେଳେ ମୁଁ ମନେ ମନେ ଅନ୍ୟ ଜଣକୁ ଖୋଜୁଥାଏ । ଏ ଦୀର୍ଘ ବ୍ୟବଧାନ ପରେ ପୁଣି ସେଇ ପ୍ରିୟ ପରିଚିତ ସ୍ଥାନକୁ ଆସିବା ପରେ ମୋ ଅବଚେତନ ମନରେ ସୁପ୍ତ ସ୍ମୃତି ଅକସ୍ମାତ ଆତ୍ମ ପ୍ରକାଶ କଲା – ସେଇ ଚିର-ହାସ୍ୟମୟୀ-ରଙ୍ଗନାନୀକୁ ଦେଖିବା ପାଇଁ । ଏତେ ଲୋକଙ୍କ ଭିତରେ ମୁଁ ମନେ ମନେ ଖୋଜିବାରେ ଲାଗିଥାଏ। କଥାରେ ଅଛି - "ଏ ମନ ପାଞ୍ଚୁଥାଏ ଯାହା କାଳେ ପ୍ରାପତ ହୁଏ ତାହା ।" ସତକୁ ସତ ହଠାତ୍ ଦାଣ୍ଡରୁ ଏକ ପ୍ରିୟ ପରିଚିତ କଣ୍ଠରୁ ଶୁଭିଲା -

ନଈରେ ବାଳିଆ ଚହଟିଲା
ବନ୍ଧାଣଥାଳି ସଜାଲୋ ଭାଉଜ
ଫେଏରେ କାଶିଆ ଲେଉଟିଲା ।

ଏହିପରି ଅଜସ୍ର ଅବାନ୍ତର ପରିହାସରେ ମୋତେ ବ୍ୟତିବ୍ୟସ୍ତ କରିବାରେ ଲାଗିଲେ । ମୁଁ ତାଙ୍କୁ କିଛି ଉତ୍ତର ନଦେଇ କେବଳ ତାଙ୍କ ଆଡ଼କୁ ସହାସ୍ୟ ବଦନରେ ଚାହିଁ ରହିଥିଲି । ଅଳ୍ପ ସମୟ ପରେ କୌଣସି କାର୍ଯ୍ୟାନୁରୋଧରେ ସେ ଚାଲି ଯାଇଥିଲେ। ତାଙ୍କ ଉପସ୍ଥିତି ଅସହ୍ୟ ହୁଏ ଅଥଚ ତାଙ୍କ ଅଦର୍ଶନ ମଧ୍ୟ ସୁଖକର ମନେ ହୁଏ ନାହିଁ । ଏପରି ଗୋଟିଏ ବିଚିତ୍ର ଚରିତ୍ରର ଲୋକ ମୋ ଜୀବନରେ ସେ ଥିଲେ ପ୍ରଥମ ଓ ଶେଷ ।

\+ \+ \+ \+

ମୁଁ ସ୍କୁଲର ୨ୟ ଶିକ୍ଷକ ରୂପେ କାର୍ଯ୍ୟ କଲି । ଏଥର ମୋତେ ସ୍କୁଲଟି କୌଣସି ଦିଗରୁ ଆନନ୍ଦ ଦେଇ ପାରୁ ନଥିଲା । ଭଲ ସ୍କୁଲଟିଏ କରିବା ପାଇଁ ନିତାନ୍ତ ଆବଶ୍ୟକ, ଯାହା ତାହା ଏଠାରେ ଘୋର ଅଭାବ ଦେଖି କିପରି କଅଣ କଲେ ଏହି ସ୍କୁଲଟି ଏହାର ସୀମିତ ପରିସର ମଧ୍ୟରେ ଏକ ଆଦର୍ଶ ଅନୁଷ୍ଠାନରେ

ପରିଣତ ହୋଇପାରିବ, ଏଇ କଥା ମୁଁ ବାରମ୍ବାର ଚିନ୍ତା କରୁଥାଏ । ଗ୍ରାମବାସୀମାନଙ୍କ ସହିତ ମୋର ସଂପର୍କ ଅତ୍ୟନ୍ତ ନିବିଡ଼ । ଛାତ୍ର ସଂଖ୍ୟା ବୃଦ୍ଧି କରିବାରେ ଅସୁବିଧା ନାହିଁ । ସାମାନ୍ୟ ଚେଷ୍ଟା କଲେ ବିଦ୍ୟାଳୟର ଛାତ୍ର ସଂଖ୍ୟା ଆଶାତୀତ ଭାବରେ ବଢ଼ି ପାରିବ । ଟ୍ରେନିଂ ସ୍କୁଲରୁ ଲବ୍ଧ ପୋଥିଗତ ଜ୍ଞାନକୁ ମୁଁ କାର୍ଯ୍ୟରେ ପରିଣତ କରିବାର ଦୃଢ଼ ସଂକଳ୍ପ ନେଲି । ଟ୍ରେନିଂ ସ୍କୁଲରୁ ଆହରଣ କରିଥିବା ବହୁ ମୂଲ୍ୟବାନ ପାଠକୁ ବାସ୍ତବ ରୂପ ଦେବା କିପରି ଆୟାସସାଧ୍ୟ, ତାହା ଅନୁଭବୀ ହିଁ ଜାଣନ୍ତି । ମୁଁ ପ୍ରଥମେ ଆଖୁ କିଆରୀରେ ପଶିଲା ପରି କେଉଁ ଆଖୁ ଧଣ୍ଡାଟା ବଡ଼ ବାଛିବା ପରି ବିଦ୍ୟାଳୟର ଉନ୍ନତି କଳ୍ପେ କେଉଁ କାର୍ଯ୍ୟଟି ଆରମ୍ଭ କରିବି ସ୍ଥିର କରି ପାରିଲି ନାହିଁ । ପୁନଶ୍ଚ ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ପ୍ରଧାନ ଶିକ୍ଷକ ଚକ୍ରଧର ବାବୁଙ୍କ ଉପରେ ନ୍ୟସ୍ତ ଥିଲା ।

ଅପ୍ରତ୍ୟାଶିତ ଭାବରେ ମୋର ଟ୍ରେନିଂ ପରୀକ୍ଷାଫଳ ବାହାରିଲା । ୧୯୩୮ ଫେବୃଆରୀ ମାସରେ ଏବଂ ମାର୍ଚ୍ଚ ମାସରେ ଚକ୍ରଧର ବାବୁଙ୍କର ଅନ୍ୟତ୍ର ଟ୍ରାନ୍ସଫର ହୋଇ ମୋତେ ଆମ ସ୍କୁଲର ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ଦିଆଗଲା । ଏଥିରେ ଗ୍ରାମରେ ସମସ୍ତଙ୍କ ମନରେ ଆନନ୍ଦ ଉଲ୍ଲାସ ଦେଖା ଯାଇଥିଲା । ଏଥର ମୁଁ ସ୍ୱାଧୀନ ଭାବରେ ମୋ ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ପାଇଁ କୌଣସି ପ୍ରତିବନ୍ଧକର ଅସୁବିଧା ନଥିଲା । ବୋଧହୁଏ ମାର୍ଚ୍ଚ ମାସ ୧୦ କିମ୍ବା ୧୨ ତାରିଖରେ ଅଂସାଳୋ ଗ୍ରାମର ରଘୁନାଥ ସାହୁ ଆମ ସ୍କୁଲକୁ ଦ୍ୱିତୀୟ ଶିକ୍ଷକ ରୂପେ ଆସିଲେ । ରଘୁବାବୁ ବେଶ୍ ସୁସ୍ଥ-ସବଳ ଏବଂ ମୋଠାରୁ ବୟସରେ ଏଗାର ବର୍ଷ ବଡ଼ଥିଲେ । ଏତେ ଦିନ ପରେ ମଧ୍ୟ ରଘୁବାବୁ ଟ୍ରେନିଂ ଯିବାର ଆଦେଶ ନପାଇବା ଆଶ୍ଚର୍ଯ୍ୟ ବୋଧ ହୋଇଥିଲା ।

ସର୍ବପ୍ରଥମ କାମ ରୂପେ ମୁଁ ସ୍କୁଲ ହତାର ବାଡ଼ ଓ ଏକ ଉତ୍ତମ ଫାଟକ କଥା ଚିନ୍ତା କଲି । ସ୍କୁଲ ଚେୟାରମେନ୍ ଥିଲେ ଅଗଣି ଭାଇନା । ତାଙ୍କୁ କହିବା ମାତ୍ରେ ୨/୩ ଦିନ ଭିତରେ ସେ ଭଲ ଫାଟକଟିଏ ଲଗାଇ ଦେଲେ । ତା ପରେ ପରେ ସୁଦୃଢ଼ ବାଡ଼ ମଧ୍ୟ ରଘୁବାବୁଙ୍କ ଦାୟିତ୍ୱରେ ପିଲାମାନଙ୍କ ଦ୍ୱାରା କରାଗଲା । ସମୁଦାୟ ହତାଟିକୁ ହାଣି ମାଟିଗୁଣ୍ଡ ଓ ଘାସବଛା କାମ ମୁଖ୍ୟତଃ ପିଲାମାନେ କରିଥିଲେ । ଏହାପରେ ଫାଟକଠାରୁ ସ୍କୁଲଘର ପର୍ଯ୍ୟନ୍ତ ୪ ଫୁଟ ଓସାରର ରାସ୍ତାଟିଏ ପ୍ରାୟ ଫୁଟେ ଉଚ୍ଚ କରି ପ୍ରସ୍ତୁତ କରାଗଲା । ଫଳରେ ହତାଟି ସାନବଡ଼ ହୋଇ ଦୁଇ ଭାଗରେ ବିଭକ୍ତ ହୋଇଗଲା । ରାସ୍ତାଟିର ପୂର୍ବପଟଟି ଅପେକ୍ଷାକୃତ ବଡ଼ ଥିବାରୁ ତହିଁରେ ଅନେକ ଗୁଡ଼ିଏ ପଟାଳି କରି ଲଙ୍କା ଓ ବିଭିନ୍ନ ଋତୁ ଉପଯୋଗୀ ଫସଲ କରାଯାଇ

ଗଛ ଉଠିବା ପରେ ପ୍ରତି କିଆରୀକୁ ୪/୫ ଜଣଙ୍କ ଦାୟିତ୍ୱରେ ଛାଡ଼ି ଦିଆଗଲା । ପଶ୍ଚିମପଟରେ କେବଳ ଔଷଧୀୟ ବୃକ୍ଷ ତୁଳସୀ, ଦୟଣା, ଧନ୍ୱନ୍ତରୀ, ବିଷଲ୍ୟକରଣୀ ଓ ହେମ କେଦାର ଆଦିରେ ପୂର୍ଣ୍ଣ କରି ଦିଆଗଲା । ଫାଟକରୁ ଲମ୍ବି ଆସିଥିବା ରାସ୍ତାଟିର ଉଭୟ ପାର୍ଶ୍ୱରେ ନାନା ରଙ୍ଗର କ୍ରୋଟନ ଗଛ ଓ କେତେ ବୁଦା ମଲ୍ଲୀ ମଧ୍ୟ ଲଗାଯାଇ ରାସ୍ତାଟିକୁ ସବୁଠାରୁ ସୁନ୍ଦର ଓ ଆକର୍ଷଣୀୟ କରାଯାଇଥିଲା । ବିଭିନ୍ନ ଔଷଦ ଉଦ୍ଭିଦ ସଂଗ୍ରହ କାର୍ଯ୍ୟ କେବଳ ପିଲାମାନେ କରିଥିଲେ । ଆମେ ଦୁଇ ଶିକ୍ଷକ ପିଲାମାନଙ୍କୁ ଉତ୍ସାହିତ କରିବା ସହିତ ନିଜେ ଶରୀରଶ୍ରମ ମଧ୍ୟ କରୁଥିଲୁ ।

ମାସକ ପରେ ବଗିଚା ତଥା ରାସ୍ତାଟି ଭାରି ସୁନ୍ଦର ଦେଖାଗଲା । ଗ୍ରାମବାସୀ, ପଥଚାରୀ ଏପରିକି ଆଗନ୍ତୁକ ଶିକ୍ଷକମାନେ ହଠାତ୍ ଏ ପ୍ରକାର ପରିବର୍ତ୍ତନରେ ବିସ୍ମୟ ପ୍ରକାଶ କରିଥିଲେ । ଅଳ୍ପଦିନ ମଧ୍ୟରେ ଖୋର୍ଦ୍ଧା ଟ୍ରେନିଂ ସ୍କୁଲର ବଗିଚା ଓ ଔଷଧ ଉଦ୍ୟାନର ସ୍ୱପ୍ନ ମୋର ସାର୍ଥକ ହୋଇଥିବାରୁ ମୁଁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲି ।

## ଛାତ୍ରସଂଖ୍ୟା ବୃଦ୍ଧି ଥିଲା ମୋର ଦ୍ୱିତୀୟ ସ୍ୱପ୍ନ

ଆଗରୁ କହିଛି, ପ୍ରଥମ ଦୁଇବର୍ଷ ମୁଁ ମାନସିକ ଅବସାଦଗ୍ରସ୍ତ ହୋଇ ସ୍କୁଲ କାର୍ଯ୍ୟରେ ଯଥେଷ୍ଟ ଅବହେଳା କରିଥିଲି । ଏବେ ସେହି ଗୁରୁତର ପାପର କ୍ଷାଳନ ପାଇଁ ମୋତେ ପ୍ରାୟଶ୍ଚିତ କରିବାକୁ ପଡ଼ିବ । ବିଦ୍ୟାଳୟ ତଥା ଛାତ୍ରଛାତ୍ରୀମାନଙ୍କର ସର୍ବାଙ୍ଗୀନ ଉନ୍ନତି ବିଧାନ ପାଇଁ ମୁଁ ପ୍ରତିଶ୍ରୁତିବଦ୍ଧ । ବର୍ତ୍ତମାନ କର୍ତ୍ତବ୍ୟ ସଚେତନ ହୋଇ ମୋତେ ଅଗ୍ରସର ହେବାକୁ ପଡ଼ିବ ।

ଯେଉଁ ସମୟର କଥା ମୁଁ ବର୍ଣ୍ଣନା କରୁଛି, ସେତେବେଳେ ଗାଁ ଗହଳର ଝିଅ ପିଲାମାନଙ୍କୁ ଆଦୌ ପାଠ ପଢ଼ାଇବାର ମନୋବୃତ୍ତି ସୃଷ୍ଟି ହୋଇ ନଥିଲା । ଦଶବର୍ଷ ବା ତା ଠାରୁ କମ୍ ବୟସରେ ଝିଅମାନଙ୍କ ବାଲ୍ୟ ବିବାହ ସଂପନ୍ନ କରାଯିବାର ଏକ ଅବୈଜ୍ଞାନିକ କୁତ୍ସିତ ମନୋବୃତ୍ତି ଲୋକଙ୍କ ମନରେ ବସାବାନ୍ଧି ରହିଥିଲା ।

ମୁଁ ଏପରି ଏକ ଦୁରୂହ ଓ ଅସମ୍ଭବ କାର୍ଯ୍ୟକୁ ଏତେ ଶୀଘ୍ର ହାତକୁ ନେଇ କୃତକାର୍ଯ୍ୟ ହେବାର ଆଶା କରିବାରେ ଯଥେଷ୍ଟ କାରଣ ମଧ୍ୟ ଥିଲା । ଝିଅ ପିଲାମାନେ ଘରକାମରେ ସାହାଯ୍ୟ କରିଥାନ୍ତି । ଯାହାକି ଅଶୀ ଶତାଂଶ ପିଲା ସେ କାମ ନକଲେ ଘର ଅଚଳ ହୋଇଯିବ ନାହିଁ । ଏହି ସମ୍ଭାବନାକୁ ଯୁକ୍ତି ଛଳରେ ଉପସ୍ଥାପିତ କରି କାର୍ଯ୍ୟ କରିବାରେ ମୋର ଏକ ଅପୂର୍ବ ସୁଯୋଗ ଥିଲା ।

ସଖୀନାନୀର ଝିଅାରୀ ଚନ୍ଦ୍ରମା ନିଜେ ନିଜେ କିଛି ଅକ୍ଷର ଶିଖିଥିଲା । ବୟସ ୭ରୁ ଟିକିଏ ଅଧିକ । ତାକୁଇ ପ୍ରଥମେ ସ୍କୁଲକୁ ନେବାକୁ ମୁଁ ବାରମ୍ବାର ଏକ ପ୍ରକାର ଜିଦ୍ କରିବାରେ ଶେଷକୁ ଚନ୍ଦ୍ରମା ବୋଉ କହିଲା, – "ତୁ ତାକୁ ନେଇ ପାଠପଢ଼ା। ଯାଉ ସେ ପଢ଼ିବ। ମାମୁଁ ପାଖେ ଭାଣିଜୀ ପଢ଼ିବ, ଏଥିରେ ମୁଁ ଜମା ଅରାଜି ନୁହେଁ ।"

ଗୋଟାଏ ବିରାଟ ସମସ୍ୟାର ସମାଧାନ ହୋଇଗଲା । ତହିଁ ଆରଦିନ ମୁଁ ନିଜେ ଆସି ଚନ୍ଦ୍ରମାକୁ ସାଥୀରେ ନେଇ ଯାଇଥିଲି । ଦେଖିଲି, ପରିଶ୍ରମ କଲେ ୬ ମାସ ଭିତରେ ପିଲାଟି ୨ୟ ଶ୍ରେଣୀ ଉପଯୋଗୀ ହୋଇଯିବ । ନାମ ଲେଖା ସମୟ ଅତିକ୍ରାନ୍ତ ହୋଇ ଯାଇଥିବାରୁ ମୁଁ ତାକୁ ଘରୋଇ ଛାତ୍ରୀ ଭାବରେ ବସାଇଲି । ଏକଥା ସତ ଯେ ଉଦ୍ଦେଶ୍ୟମୂଳକ ଭାବରେଏକ ନିର୍ଦ୍ଦିଷ୍ଟ ଲାଭ ପାଇ ଏଇ ଝିଅଟି ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଗଲା । ଏପରିକି ସନ୍ଧ୍ୟାରେ ଚନ୍ଦ୍ରମାକୁ ଏକ ଘଣ୍ଟା ପାଇଁ ସ୍କୁଲକୁ ଆଣି ମୁଁ ପଢ଼ାଉଥିଲି ।

ପ୍ରାୟ ୬ ମାସ ପରେ ଚନ୍ଦ୍ରମା ପ୍ରଥମ ଶ୍ରେଣୀର ପାଠ ଶେଷ କରିବାକୁ ସମର୍ଥ ହୋଇଥିଲା । ସ୍କୁଲର ଏକମାତ୍ର ଝିଅ ପିଲାର ଅଗ୍ରଗତି ଦେଖି ଅନ୍ୟ ସାଥୀ ଝିଅମାନେ ପଢ଼ିବା ପାଇଁ ଏକପ୍ରକାର ଜିଦ୍ କଲେ । କ୍ରମେ ଅବସ୍ଥା ଏପରି ହେଲା ଯେ ଲକ୍ଷ୍ମୀ, କମଳା, ଭାରତୀ, ଆଦି ୬/୭ ଜଣ ଭାଣିଜୀ ଆପେ ଆପେ ବାପା ମାନାଙ୍କୁ ସଙ୍ଗରେ ନେଇ ସ୍କୁଲକୁ ଆସିଲେ । ମୁଁ ସମୟ ସଚେତନ ନହୋଇ ଉଦ୍ଦେଶ୍ୟ ପୂରଣ ପାଇଁ ଅଧିକ ଧ୍ୟାନ ଦେଲି । ନାମ ନଲେଖା ହେଲେ ମଧ୍ୟ ସେମାନେ ସମସ୍ତେ ନିୟମିତ ଅଧ୍ୟୟନ ସୁବିଧାରୁ ବଞ୍ଚିତ ହୋଇ ନଥିଲେ । ପରେ ପାଶ୍ୱର୍ବର୍ତ୍ତୀ ଗ୍ରାମ ଭିଲି ଦେଉଳରୁ ମଧ୍ୟ ୨/୩ ଟି ଝିଅ ସ୍ୱତଃପ୍ରବୃତ୍ତ ହୋଇ ମୋ ପାଖକୁ ପଢ଼ିବାକୁ ଆସିଥିଲେ। ସେମାନଙ୍କ ମଧ୍ୟରୁ ମୁଁ କେବଳ ଶୁଭ ଦେଇର ନାମଟି ଏ ଯାଏ ମନେ ରଖିଛି । ମୋର ଦ୍ୱିତୀୟ ସ୍ୱପ୍ନ ଅନାୟାସରେ ସଫଳ ହୋଇଥିବାରୁ ମୁଁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲି । ସ୍କୁଲର ଅଧ୍ୟାପନାର ଅଗ୍ରଗତି ଆଶାନୁରୂପ ଥିଲା । ରାତିଟାରେ ମୁଁ ସ୍କୁଲ ଘରେ ଏକୁଟିଆ ରହୁଥିଲି । ରଘୁବାବୁ ପ୍ରତ୍ୟହ ଯିବା ଆସିବା କରୁଥିଲେ । ମୋର ଏକାକୀତ୍ୱ ଦୂର କରିବା ଉଦ୍ଦେଶ୍ୟରେ ଗ୍ରାମର କେତୋଟି ପିଲା (ସମ୍ଭବ ୧୦/୧୨ ହେବ)ଙ୍କୁ ସଞ୍ଜବେଳକୁ ସ୍କୁଲକୁ ଆସିବାକୁ କହିଲି । ସେମାନେ ଆଗ୍ରହର ସହିତ ଆସିଲେ । ମୁଁ ଶ୍ରେଣୀ ପାଠ ସହିତ ଅନେକ ଶିକ୍ଷଣୀୟ ଗପ କହି ସେମାନଙ୍କ ମନ ଖୁସି କରୁଥିଲି ।

ଗ୍ରାମର ଭଗବାନ ସେନାପତିଙ୍କ ପୁଅ ବୃନ୍ଦନାଥ ରାତିରେ ଆସେ । ତା'ର

ଅଧ୍ୟୟନର ଦ୍ରୁତ ଅଗ୍ରଗତି ଲକ୍ଷ୍ୟ କରି ମୁଁ ତାକୁ ସ୍ୱତନ୍ତ୍ର ଦୃଷ୍ଟି ଦେଲି ଓ ବୃତ୍ତି ପରୀକ୍ଷା ଦେବାକୁ ନିମାପଡ଼ା ନେଇ ଯାଇଥିଲି ।

ବର୍ଷ ଶେଷ ବେଳକୁ ସବ୍-ଇନ୍ସପେକ୍ଟର ପରିଦର୍ଶନରେ ଆସିଥିଲେ । ମୁଁ ତାଙ୍କୁ ପ୍ରଥମ ଥର ପାଇଁ ଦର୍ଶନ କଲି । ଡାକନାମ ମଗୁ ମିଶ୍ର । ସେ ସ୍କୁଲର ବଗିଚା, ଫାଟକ ରାସ୍ତା ଦେଖିବା ପରେ ଶ୍ରେଣୀ ପରିଦର୍ଶନରେ ଅତ୍ୟନ୍ତ ପ୍ରୀତ ହୋଇ ମନ୍ତବ୍ୟରେ ସେ କଥା ଉଲ୍ଲେଖ କରି ଦେଇଥିଲେ । ମୋ ବିଚାରରେ ଏହା ଥିଲା ମୋର ତୃତୀୟ ସଫଳତା ।

## ଲୋକାଲ ବୋର୍ଡ଼ ସଭ୍ୟ ଗଙ୍ଗାଧର ମହାନ୍ତି ଓ ମୁଁ

ବଳଙ୍ଗା ନିକଟସ୍ଥ ଗଡ଼ତୋରିହା ଗ୍ରାମର ଏକ ବିଶିଷ୍ଟ ଜମିଦାର ପରିବାରରେ ଗଙ୍ଗାଧର ମହାନ୍ତିଙ୍କ ଜନ୍ମ । ସେ ସାକ୍ଷୀ ଗୋପାଳ ବନବିଦ୍ୟାଳୟର ଛାତ୍ର ଥିଲେ । ସେ ଗୋପବନ୍ଧୁ, ଗାନ୍ଧୀ ଓ ଅନ୍ୟ ଭାରତୀୟ ନେତାମାନଙ୍କର ପଦାଙ୍କ ଅନୁସରଣ କରନ୍ତି । ସର୍ବଦା ଖଦୀ ବ୍ୟତୀତ ଅନ୍ୟ କୌଣସି ପ୍ରକାର ବସ୍ତ୍ର ପରିଧାନ କରୁନଥିଲେ । ସ୍ଥୂଳତଃ ଜଣେ ବିଶିଷ୍ଟ ଗାନ୍ଧୀବାଦୀ ନେତା ହିସାବରେ ପୁରୀ ଜିଲ୍ଲାରେ ଏକ ପ୍ରତିଷ୍ଠିତ କଂଗ୍ରେସ କର୍ମୀ ଭାବରେ ପରିଚିତ ଥିଲେ ।

ଭିଲିଗ୍ରାମ ଏକ ଖମାର ବହୁଳ ଗ୍ରାମ । ମୁଁ ସୌଭାଗ୍ୟ କ୍ରମେ ସାରା ଭାରତର ଏବଂ ଓଡ଼ିଶାର ବହୁ ଗ୍ରାମାଞ୍ଚଳ ବୁଲିବାର ସୌଭାଗ୍ୟ ଲାଭ କରିଛି । ମାତ୍ର ଗୋଟିଏ ଗ୍ରାମର ଆରମ୍ଭରେ, ଶେଷରେ ଓ ମଝିରେ ବାହାର ଅଞ୍ଚଳର ଏତେ ଲୋକଙ୍କର ଆଧିପତ୍ୟ କୌଣସିଠାରେ ମୋର ଦୃଷ୍ଟିରେ ପଡ଼ିନାହିଁ । ଗ୍ରାମର ଠିକ୍ ପୂର୍ବଦିଗର ଶେଷରେ ଗାଇଡ଼ିପାଞ୍ଚଣ ଶ୍ରୀଧର ସେନାପତିଙ୍କ ଖମାର, ଠିକ୍ ଗ୍ରାମ ମଝିରେ ଶିଶିଲୋର ଖମାର, ପଶ୍ଚିମ ଦିଗର ଶେଷ ପ୍ରାନ୍ତରେ ଗଙ୍ଗାଧର ମହାନ୍ତିଙ୍କ ଖମାର ଓ ତତ୍ ପାର୍ଶ୍ୱବର୍ତ୍ତୀ ଉତ୍ତର ଦିଗରେ ସରାଟ ଶାସନର ଧର୍ମୁ ସ୍ୱାଇଁଙ୍କ ଖମାର ଅବସ୍ଥିତ । ପ୍ରତ୍ୟେକ ଖମାରରେ ଜମିଦାର ବା ତାଙ୍କ ପୁଅ ପୁତୁରା ରହି ଖମାର ଅଧୀନରେ ଥିବା ପ୍ରଚୁର ଚାଷଜମି ପରିଚାଳନା କରିଥାନ୍ତି ।

ଭିଲିଗ୍ରାମର ଥିବା ଚାରି ଗୋଟି ଖମାର ମଧ୍ୟରେ ଗଙ୍ଗାଧର ମହାନ୍ତିଙ୍କ ଖମାରଟି ସର୍ବୋକ୍ରୃଷ୍ଟ । ଖାନ୍‌ଦାନୀ ଚଳଣି । ବଡ଼ଲୋକର ଆଭିଜାତ୍ୟ, ହାକିମି ମନୋବୃତ୍ତି ଏହି ଖମାରରେ ପୂର୍ଣ୍ଣ ମାତ୍ରାରେ ଦୃଷ୍ଟି ଗୋଚର ହୋଇଥାଏ । ୧୯୩୫ ଓ ୩୬ ଦୁଇବର୍ଷ ମଧ୍ୟରେ ମୁଁ ପ୍ରତିଦିନ ଖମାରର ଚାକର, ଗୁମାସ୍ତା ଓ କୃଷି କର୍ମଚାରୀ, ଟହଲିଆ, ତଇନାଥି ଏମାନଙ୍କୁ ବାରମ୍ବାର ଦେଖିଥାଏ । କାରଣ ଏହି

ଖମାରର ଠିକ୍ ବିପରୀତ ଦିଗରେ ଆମ ସ୍କୁଲଟି ଅବସ୍ଥିତ । ଗଙ୍ଗାଧର ମହାନ୍ତି, ତାଙ୍କ ଭାଇ ନରହରି ମହାନ୍ତି ମଝିରେ ମଝିରେ ଖମାରକୁ ଆସି ୨/୪ ଦିନ ରହି ଚାଲି ଯାଉଥିଲେ । ମାତ୍ର ୧୯୩୭ ମସହିାର ଶେଷ ଆଡ଼କୁ ଗଙ୍ଗାଧର ବାବୁଙ୍କ ଦୁଇ ଝିଅ, ଏକମାତ୍ର ପୁଅ ଓ ସ୍ତ୍ରୀ ଆସି ଭିଲିଗ୍ରାମ ଖମାରରେ ସ୍ଥାୟୀ ଭାବରେ ଅବସ୍ଥାନ କଲେ । ଖମାରରେ ଅନେକ ବଖରା ପୁରୁଣା କାଳିଆ ମଉଡ଼ମରା ଘର ଥିଲା । ଠିକ୍ ସରକାରୀ ବଙ୍ଗଳା ପରି । ପ୍ରଶସ୍ତ ବାରଣ୍ଡା । କଚେରୀ ଘର ରହିଥାଏ । ପୋଖରୀ, ଫଳ ବଗିଚା, ଫୁଲ ବଗିଚା ଦେଖିଲେ ଏହା ଏକ ଅଭିଜାତ ପରିବାରର ବିଳାସମୟ ବାସସ୍ଥାନ ବୋଲି ନିଶ୍ଚୟ ମନେ ହେବ ।

ଗଙ୍ଗାଧର ମହାନ୍ତି ସଭ୍ୟ, ଶିକ୍ଷିତ ଓ ଏକ ଗାନ୍ଧୀବାଦୀ ବ୍ୟକ୍ତି । ମାତ୍ର ତାଙ୍କ ରକ୍ତରେ ଜମିଦାରମାନଙ୍କର ଅନେକ ଦୁର୍ଗୁଣର ଗନ୍ଧ ମିଶିଥିଲା । ସେ ଭିଲିଗ୍ରାମ ବା ତାଙ୍କ ନିଜ ଗ୍ରାମର ଲୋକମାନଙ୍କୁ ଆଦୌ ମଣିଷ ଦୃଷ୍ଟିରେ ବିବେଚନା କରୁନଥିଲେ । ଭିଲିଗ୍ରାମର ମାସ୍ତାନ ବ୍ରାହ୍ମଣମାନେ ମୁଖ୍ୟତଃ ନାନା ପ୍ରକାର କୃଷିକାର୍ଯ୍ୟ କରିଥାନ୍ତି । ଏମାନଙ୍କୁ ମହାନ୍ତି ବାବୁ ଅଣ୍ଡିରା ବ୍ରାହ୍ମଣ ଓ ହଳୁଆ ବୋଲି ହୀନ ଦୃଷ୍ଟିରେ ଦେଖନ୍ତି ।

୧୯୩୮ ମସିହାର ପ୍ରାରମ୍ଭରେ ଖମାର ଘରର ସଫାଇ ଚୂନଲିପା ଆଦି କାମ ପରେ ବୋଧହୁଏ ମେ ମାସର ମଝିରେ ଗଙ୍ଗାଧର ବାବୁଙ୍କ ପରିବାର ସ୍ଥାୟୀ ଭାବରେ ଭିଲିଗ୍ରାମରେ ରହିଲେ । ଆଗରୁ ଗଙ୍ଗାଧର ବାବୁ ପୁରୀରେ ଅଧିକାଂଶ ସମୟ ଅତିବାହିତ କରୁଥିଲେ । ପିଲାମାନେ ଆସି ଯିବାରୁ ନିଜେ ଖମାରରେ ମାସକ ମଧ୍ୟରେ ପ୍ରାୟ ୧୦-୧୨ ଦିନ ରହୁଥିଲେ ।

ଦିନକର କଥା – ତାଙ୍କ ଗୁମାସ୍ତାଙ୍କୁ ସ୍କୁଲକୁ ପଠାଇ ମୋତେ ଡକାଇ ପଠାଇଲେ । ମୁଁ ସ୍କୁଲଛୁଟି କରି ଆସି ଦେଖାକଲି । ଲୋକାଲ ବୋର୍ଡ଼ର ଜଣେ ପ୍ରମୁଖ ସଭ୍ୟ ଭାବରେ ଗଙ୍ଗାଧର ବାବୁ ବେଶ୍ ଜଣାଶୁଣା ବ୍ୟକ୍ତି । ମୋତେ ବସିବାକୁ କହି ପଚାରିଲେ, “ – ମାଷ୍ଟ୍ରେ, ଶୁଣିଲି ତୁମେ ଏ ଗାଆଁରେ ଲଙ୍ଗଳା ଛୁଆଙ୍କୁ ସ୍କୁଲକୁ ଡାକି ଆଣୁଛ । ସ୍କୁଲର ବହୁତ ଉନ୍ନତି କରି ସାରିଲଣି । ତୁମେ ଜାଣିନାହଁ ଯେ ଏ ଗାଆଁର ଲୋକେ ହଳକରି ବଞ୍ଚିବେ । ପାଠ ପଢ଼ିବାକୁ ଦୁଇଟି ଜାତି, ବ୍ରାହ୍ମଣ ଓ କରଣ ସୃଷ୍ଟି ହୋଇଛନ୍ତି । ବୃଥା ପରିଶ୍ରମ କରି ଏ ଗାଆଁକୁ ପଣ୍ଡିତ କରିବାକୁ ଚେଷ୍ଟା କରନାହିଁ । ବାରମ୍ବାର ଧୋଇଲେ ଅଙ୍ଗାର କଳା ହିଁ ରହିବ ।'' ତାପରେ ପଚାରିଲେ, “ – ତୁମଘର କେଉଁଠି ? ତୁମେ କେଉଁ ବର୍ଣ୍ଣର ?'' ମୁଁ ଘର ଗୋବିନ୍ଦପୁର ଓ କରଣ ଘର ବୋଲି କହିବା ପରେ ସେ ହଠାତ୍ ପ୍ରସନ୍ନ ହୋଇ

ଉଠି କହିଲେ, "–ଖୁବ୍ ଭଲ ହେଲା । ତୁମେ ଆମ ପରିବାରର ବୋଲି ମନେ କରିବ । କାଲିଠାରୁ ତୁମର ଖାଇବା ଏଠାରେ ହିଁ ହେବ । ଏ ଗାଆଁରେ କିଏ କଅଣ ଖାଆନ୍ତି ଯେ ଜଣେ ଶିକ୍ଷକକୁ ଖାଇବାକୁ ଦେବେ ? ଆହୁରି ଶୁଣ - ତୁମେ ସକାଳୁ କିଛି ସମୟ ମୋ ଦୁଇ ଝିଅଙ୍କୁ ବଙ୍ଗଳା ଆଉ ଇଂରାଜୀ ଶିକ୍ଷା ଦେବ । ରବିକୁ (ପୁଅ) ପାଖରେ ବସାଇ ଅକ୍ଷର ଶିକ୍ଷା ଆରମ୍ଭ କରିବ ।''

ପ୍ରଥମ ସାକ୍ଷାତରେ ତାଙ୍କ ମନୋଭାବରେ ମୁଁ କ୍ଷୁବ୍ଧ ହୋଇଥିଲେ ମଧ୍ୟ ତାଙ୍କ କଥାର ବିରୋଧ କରିବାର ସତ୍‌ସାହସ ମୋର ନଥିଲା । ମୁଁ ମୌନେ ସମ୍ମତି ଲକ୍ଷଣ ପ୍ରକାଶ କରିବାକୁ ବାଧ୍ୟ ହେଲି । ହଠାତ୍ ମନେ ପଡ଼ିଗଲା, ଆମ ସ୍କୁଲର ସମୟ ନିର୍ଘଣ୍ଟ । ତେଣୁ ସକାଳୁ ଖମାରକୁ ଆସି ପଢ଼ାଇବା ଅସମ୍ଭବ ବୋଲି କହିଦେବାରେ ସେ କହିଲେ, " – ଚିନ୍ତାନାହିଁ, ଏ ମାସ ଶେଷରେ ସ୍କୁଲ ୧୦ଟାରୁ ୪ଟା କରାହେବ । ସେ ପର୍ଯ୍ୟନ୍ତ ଅପେକ୍ଷା କର । ମୁଁ ଅର୍ଡ଼ର ପଠାଇ ଦେବି । ତୁମେ ପହିଲାଠାରୁ ଆମ ପିଲାଙ୍କ ପଢ଼ା ଆରମ୍ଭ କଲେ ମଧ୍ୟ କାଲିଠାରୁ ସକାଳେ ଦ୍ୱିପ୍ରହରେ ଏବଂ ରାତିରେ ଏହିଠାରେ ହିଁ ଭୋଜନ କରିବ ।'' ଏହା ମୋ ପ୍ରତି ଏକ ଆଦେଶନାମା ଥିଲା ବୋଲି ଧରି ନେଲି ।

ବର୍ତ୍ତମାନ ଚିନ୍ତା ହେଲା ଗ୍ରାମ ସଂପର୍କ କିପରି ରକ୍ଷା କରିବି ? ସଖୀ ନାନୀ ଓ ଅନ୍ୟମାନଙ୍କୁ କଅଣ କହି ବୁଝାଇବି ? ସବୁଦିନ ପାଇଁ ତା ଘରେ ଖାଇବାକୁ ସଖୀ ନାନୀ ବାଧ୍ୟ କରି ଆସୁଥିଲା । ମୁଁ ତାକୁ ବହୁତ ବୁଝାଇ ସବୁରି ଘରେ ସଂପର୍କଶୀଳ ହେବା ମୋର ନିତାନ୍ତ ଆବଶ୍ୟକ କହିବାରେ ସେ ବୁଝିଗଲା । ବର୍ତ୍ତମାନ ଖମାରରେ ଖାଇବା ବ୍ୟବସ୍ଥା ହେବାରେ ଗ୍ରାମବାସୀ ତଥା ସଖୀନାନୀର ସମ୍ଭାବିତ ପ୍ରଶ୍ନର କି ଉତ୍ତର ଦେବି ଏହି ଚିନ୍ତାରେ ମୁଁ ଅସ୍ଥିର ହେବାକୁ ଲାଗିଲି ।

ଠିକ୍ ଚାରି ପାଞ୍ଚ ଦିନପରେ ଗ୍ରାମର କେତେକ ମୋତେ ସେଇ ପ୍ରଶ୍ନ ପଚାରି କହିଲେ, " - ଶିକ୍ଷକ ଆମର । ମହାନ୍ତି ବାବୁ ତାଙ୍କୁ ତାଙ୍କ ଘରେ ରଖାଇବା ଘୋର ଅନ୍ୟାୟ । ନା, ଆପଣ ଆଉ ତାଙ୍କ ଘରକୁ ଯିବେ ନାହିଁ ।'' ମୁଁ କହିଲି, " ଭାଇ, ମୁଁ ସେପରି କରି ପାରିବି ନାହିଁ । କାରଣ ମୁଁ ଏପରି କରିବାକୁ ବାଧ୍ୟ ହୋଇଛି । ଏହାର ବିରୋଧ କଲେ ଚାରିଦିନ ପରେ ମୁଁ ଆଉ ଏଠାରେ ନଥିବି । ମୁଁ ଏଇ ସ୍କୁଲଟିକୁ ମୋର ସମସ୍ତ ବୁଦ୍ଧି ବିବେକ ଖଟାଇ ଏକ ନୂଆ ରୂପ ଦେବାର ସ୍ୱପ୍ନ ଦେଖୁଛି । ମୋର ସେ ସ୍ୱପ୍ନ ଅଧୁରା ରହିଯିବ । ଆପଣମାନେ କେତେଜଣ ଯାଇ ଗଙ୍ଗାଧର ବାବୁଙ୍କୁ ନିଜକଥା ଜଣାଇଲେ ଭଲ ହେବ ।''

ଦି ଚାରିଦିନ ଗତ ହେବା ପରେ ମଧ୍ୟ ଜଣେ କେହି ଗଙ୍ଗାଧର ବାବୁଙ୍କୁ ସାକ୍ଷାତ କରିବାର ସାହସ ମଧ୍ୟ କରି ପାରିନଥିଲେ । ବହୁତ କହିଲେ ମଧ୍ୟ ବିରାଡ଼ି ବେକରେ ଘଣ୍ଟି ବାନ୍ଧିବାକୁ କେହି ଆଗେଇ ଆସି ନଥିଲେ । ଏ ଗାଆଁ ଲୋକଙ୍କ ସଂପର୍କରେ ଗଙ୍ଗାଧର ବାବୁଙ୍କ ଧାରଣା ଅଭ୍ରାନ୍ତ ଥିବା ସ୍ପଷ୍ଟ ପ୍ରମାଣିତ ହୋଇଗଲା ।

ସଖୀନାନୀ ସମେତ ଅନ୍ୟ ନାନୀମାନଙ୍କୁ ପ୍ରତିଦିନ ୪ଟା ପରେ ନିଶ୍ଚୟ ତୁମମାନଙ୍କ ସହିତ ସାକ୍ଷାତ କରିବି କହି ସେମାନଙ୍କୁ କୌଣସି ମତେ ବୁଝାଇ ଦେଇଥିଲି ଓ ମୋ ଦେବା ପ୍ରତିଶ୍ରୁତି ମଧ୍ୟ ପାଳନ କରିଥିଲି ।

ପରମାସ ପହିଲା ପୂର୍ବରୁ ସ୍କୁଲକାର୍ଯ୍ୟ ୧୦ଟାରୁ ୪ଟା ପର୍ଯ୍ୟନ୍ତ ହେବାର ଅର୍ଡ଼ର ଆସିଗଲା । କାର୍ଯ୍ୟ ମଧ୍ୟ ଯଥାରୀତି ଚାଲିଲା । ଗୋଟିଏ ଦୃଷ୍ଟିରୁ ଏହା ଏକ ଉତ୍ତମ ବ୍ୟବସ୍ଥା ଥିଲା । ୩ ମାସ ଶେଷ ଯାଏ ମୁଁ ଖମାରରେ ତିନି ଓଳି ଭୋଜନ କରୁଥିଲେ ମଧ୍ୟ ଗଙ୍ଗାଧର ବାବୁଙ୍କ ପିଲାମାନଙ୍କୁ ସକାଳୁ ପଢ଼ାଇବାର ସୁଯୋଗ ନଥିଲା ।

ପରବର୍ତ୍ତୀ ମାସ ୨ ତାରିଖ ଠାରୁ ମୁଁ ଖମାର ପିଲାଙ୍କୁ ପଢ଼ାଇବାକୁ ଗଲି । ଏଇ କେତେଦିନ ଭିତରେ ବାବୁଙ୍କ ସ୍ତ୍ରୀ ଓ ଝିଅ ଦୁହିଁଙ୍କ ସହିତ ମୋର ପରିଚୟ ହୋଇ ସାରିଥିଲା । ଉଭୟ ଝିଅ ଉ.ପ୍ରା. ପାଶ୍ କରିଥିଲେ ମଧ୍ୟ ଇଂରାଜୀ ଶିକ୍ଷା କରି ନଥିଲେ । ମୁଁ ପ୍ରଥମେ ଇଂରାଜୀ ଶିକ୍ଷା ଦେବା ଆରମ୍ଭ କରିଥିଲି । ଗଙ୍ଗାଧର ବାବୁଙ୍କ ଅଜବ ଖିଆଲ ଯୋଗୁ ଝିଅ ଦୁହିଁଙ୍କୁ ବଙ୍ଗଳା ବର୍ଣ୍ଣମାଳା ମଧ୍ୟ ଶିଖାଇବାକୁ ବାଧ୍ୟ ହୋଇଥିଲି ।

ଗଙ୍ଗାଧର ବାବୁ ମୋତେ 'ମାଷ୍ଟ୍ରେ' ବୋଲି ସମ୍ବୋଧନ କରନ୍ତି । ପ୍ରାୟ ପୁରୀରେ ଅଧିକାଂଶ ସମୟ କଟାଇବା ଭିତରେ ଦିନେ ଦୁଇଦିନ ଖମାରରେ ରହି ପୁଣି ପୁରୀ ଚାଲିଯାନ୍ତି । ଏଥର ଆସିବା ପରେ ପିଲାମାନଙ୍କର ପଢ଼ା ଦେଖି ଓ ତାଙ୍କ ଆଦେଶ ଅନୁସାରେ କାର୍ଯ୍ୟ କରୁଥିବା ଦୃଷ୍ଟିରୁ ସେ ବହୁତ ଖୁସି ହେଲେ । ପୂଜାରୀ ଓ ଟହଲିଆଙ୍କୁ ଡାକି ହୁକୁମ୍ କଲେ , " – ଦେଖ, ମାଷ୍ଟ୍ରଙ୍କ ଖାଇବା କଥା ସବା ଆଗ ଠିକ୍ ୧୦ଟା ବେଳକୁ କରାଯିବ । ସେ ଖାଇସାରି ସ୍କୁଲକୁ ଯିବେ । ଏଥିରେ ଆଦୌ ବ୍ୟତିକ୍ରମ ହେବ ନାହିଁ ।'' କହିବା ନିଷ୍ପ୍ରୟୋଜନ ଯେ ବ୍ୟତିକ୍ରମ ହୁଏ ଓ ସ୍କୁଲ ଖମାର ମଧ୍ୟରେ ବ୍ୟବଧାନ ପ୍ରାୟ ନଥିବାରୁ ମୁଁ ଖେଳଛୁଟିରେ ଆସି ଖାଇ ଦେଇଯାଏ । ଖାଦ୍ୟ ଦ୍ରବ୍ୟ ସଂପର୍କରେ ନ କହିବା ଭଲ । ପ୍ରତିଦିନ ଖାଦ୍ୟ ଅତ୍ୟନ୍ତ ରାଜସିକ । ମାଛ, ମାଂସ, ଅଣ୍ଡାଠାରୁ ଆରମ୍ଭ କରି ବହୁ ପ୍ରକାର ପରିବା

ତରକାରୀ, ଘିଅ, ଦୁଧ, ଛେନା ଆଦିର ଜଳଖିଆ ବାସ୍ତବିକ ଉପଭୋଗ୍ୟ ଖାଦ୍ୟ ଥିଲା । ମୋ ଖାଇବାରେ ସାମାନ୍ୟତମ ତ୍ରୁଟି ନହେବା ପାଇଁ ବିନି ବୋଉ (ଗଙ୍ଗାଧର ବାବୁଙ୍କ ସ୍ତ୍ରୀ) ବେଶ୍ ସଚେତନ ଥାନ୍ତି ।

କେବଳ ଚାରିଟା ପରେ ମୁଁ ଗ୍ରାମ ଭିତରକୁ ଯାଇ ପ୍ରାୟ ସବୁ ନାନୀଙ୍କ ସହିତ ଆଳାପ ଆଲୋଚନା କରେ । ସେମାନଙ୍କ ଭିତରୁ କେହି ଚୁଡ଼ା, ମୁଢ଼ି ବା ଆଉ କିଛି ଦ୍ରବ୍ୟ ମୋତେ ଅତି ଆଦରରେ ଜଳଖିଆ ରୂପେ ଦେଇଥାନ୍ତି । ସେଇ ସାମାନ୍ୟ ମୂଲ୍ୟର ଜଳଖିଆ ଭିତରେ ମୁଁ ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା ବହୁ ପରିମାଣରେ ଉପଲବ୍ଧି କରିଥାଏ । ବିଦୂରଙ୍କ ଶାଗଭଜା ବା ସୁଦାମାଙ୍କ ଚାଉଳ ଭଜା ପରି ।

ସ୍କୁଲ ଠିକ୍ ଭାବରେ ଚାଲିଥାଏ । ଗୁଡ଼ିଏ ଝିଅ ପିଲା ସ୍କୁଲକୁ ଆଣିବାରେ ସେ ଅଞ୍ଚଳରେ ମୋ ଉଦ୍ୟମ ସର୍ବପ୍ରଥମ । ନିମାପଡ଼ା ଏକ ଆଲୋକିତ ଅଞ୍ଚଳ ହୋଇଥିବାରୁ ସେଠାରେ ଝିଅପିଲାମାନେ ପାଠ ପଢୁଥାନ୍ତି । ଅଧିକ ଛାତ୍ର ଓ ନାମ ଅଲେଖା ଛାତ୍ରୀମାନଙ୍କ ଯୋଗୁ ସ୍ଥାନାଭାବ ହେଉଥିଲେ ମଧ୍ୟ କୌଣସି ମତେ ସେହି ସୀମିତ ପରିସର ମଧ୍ୟରେ କାର୍ଯ୍ୟକୁ ଶୃଙ୍ଖଳିତ କରିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରୁଥାଏ ।

ଏତେବେଳକୁ ସ୍କୁଲର ବଗିଚା ଏକ ଆକର୍ଷଣୀୟ ଅବସ୍ଥାକୁ ଆସି ଯାଇଥାଏ। ପଟାଳି ହୁଡ଼ା ମାନଙ୍କରେ ଗେଣ୍ଡୁ, ମଣ୍ଡା ଓ ହରଗଉରା ସହିତ ରାସ୍ତାଟିର ଉଭୟ ପାର୍ଶ୍ୱରେ ବାକ୍ସ (କ୍ରୋଟନ୍) ଗଛ, ମଝିରେ ମଝିରେ ବଡ଼ ବଡ଼ ମଣ୍ଡା ଓ ମଲ୍ଲୀ ବୁଦାମାନ ବେଶ୍ ଦୃଷ୍ଟି ଆକର୍ଷଣ କରୁଥାଏ । ବିଶେଷ କରି ଛୋଟ ଔଷଧ ଉଦ୍ୟାନଟିରେ ବହୁ ପ୍ରକାର ଉଦ୍‌ଭିଦ ଗ୍ରାମବାସୀଙ୍କର ଅତି ଆଦରଣୀୟ ହୋଇ ଉଠିଥାଏ । ପ୍ରାୟ ଲୋକ ଦରକାରୀ ପତ୍ର, ଫୁଲ ଆଦି ଆମ ବଗିଚାରୁ ନେବା ପାଇଁ ପ୍ରତିଦିନ ଆସିଥାନ୍ତି । ସବୁଠାରୁ ବଗିଚାରେ ଥିବା ଯାଦୁମାରୀ ଗଛଟି ବହୁ ଲୋକଙ୍କ ଆବଶ୍ୟକତା ପୂରଣ କରୁଥାଏ । ଗାଉଁଲୀ ଲୋକ ମାଟି, କାଦୁଅରେ କାମ କରି ପ୍ରାୟ ଚର୍ମରୋଗ ଭୋଗୁଥାନ୍ତି। ସେ ରୋଗୀମାନଙ୍କ ଭିତରେ ଯାଦୁର ସ୍ଥାନ ମୁଖ୍ୟ ଥାଏ । ଯାଦୁମାରୀ ପତ୍ର ସହିତ ଗୋଲମରିଚ କିମ୍ବା ଆଉ କିଛି ଯୋଗ କରି ଲେପ ଦେଲେ ଯାଦୁ ଶୀଘ୍ର ଭଲ ହୋଇ ଯାଉଥିବା କଥା ପତ୍ର ମାଗିବାକୁ ଆସୁଥିବା ଲୋକମାନଙ୍କଠାରୁ ଶୁଣି ଖୁବ୍ ସନ୍ତୋଷ ଲାଭ କରୁଥାଏ । ଔଷଦ ଉଦ୍ୟାନ ମାଧ୍ୟମରେ ମୁଁ ସ୍ୱତଃ ଗ୍ରାମବାସୀଙ୍କ ସାନ୍ନିଧ୍ୟ ଓ ଆଲୋଚନାର ସୁଯୋଗ ପାଉଥିବାରୁ ମୋ ପରିଶ୍ରମର ଉପାଦେୟତା ଉପଲବ୍ଧ କରୁଥାଏ ।

## ଏକ ବିଶେଷ ସ୍ମରଣୀୟ ମୁହୂର୍ତ୍ତ

କିଛିଦିନ ପରେ ଗଙ୍ଗାଧର ବାବୁ ପୁରୀରୁ ଫେରିଲେ । ତହିଁ ଆରଦିନ ସକାଳୁ ମୋ ପାଖରେ ବସି ପଚାରିଲେ, "ମାଷ୍ଟ୍ରେ, ତୁମର କିଛି ଅସୁବିଧା ହେଉଛି କି ?'' ମୁଁ ଅତ୍ୟନ୍ତ ସୁଖ ସୁବିଧାରେ ଅଛି ବୋଲି ଜଣାଇବା ପରେ କହିଲେ, "–କହ ମାଷ୍ଟ୍ରେ, ପିଲାମାନଙ୍କୁ ପଢ଼ାଇବା ପାଇଁ ତୁମେ ମୋ ଠାରୁ କେତେ ପାଇବ ?'' ମୁଁ ଚମକି ପଡ଼ି କହିଲି, " – ମୁଁ ପାଠପଢ଼ାକୁ ବ୍ୟବସାୟ କରିବି ନାହିଁ ବୋଲି ଟ୍ରେନିଂ ସ୍କୁଲରେ ମୋ ଗୁରୁମାନଙ୍କ ଆଗରେ ଶପଥ କରିଛି । ମୁଁ ପଢାଇବି ମାତ୍ର ପ୍ରତିଦାନରେ କିଛି ବି ନେବିନାହିଁ ।'' ଗଙ୍ଗାଧର ବାବୁ ଅଳ୍ପ ହସି କହିଲେ, " – ତୁମେ ଯଥାର୍ଥରେ କରଣ ପିଲା । କରଣ ଜାତି ତା'ର ମାନ ସହିତ ଆମ୍ଭମାନଙ୍କୁ ଯେଉଁ ମୂଲ୍ୟ ଦିଏ, ଅନ୍ୟ କୌଣସି ଜାତିଠାରେ ଏହା ପରିଲକ୍ଷିତ ହୁଏ ନାହିଁ ।''

ଏହାପରେ ଗଙ୍ଗାଧର ବାବୁ ମୋତେ କହିଲେ, " – ତୁମେ ସର୍ବଦା ଖଦଡ଼ ଲୁଗା ଓ ଜାମା ପିନ୍ଧିବ । ପ୍ରତିଦିନ ନିୟମିତ ଦଶମିନିଟ୍ ହେଉ ପଛେ ସୂତା କାଟିବ । ମୁଁ ଖମାରକୁ 'ସମାଜ' କାଗଜ ମଗାଉଛି ଖାସ୍ ତୁମରି ପାଇଁ । ପ୍ରତିଦିନ ସମାଜର ସଂପାଦକୀୟଟି ନିଶ୍ଚୟ ପଢ଼ିବ । ଏପରି କଲେ ତୁମର ଲେଖାରେ ଦକ୍ଷତା ବଢ଼ିବ । ଭବିଷ୍ୟତରେ ଜଣେ ଉତ୍ତମ ଶିକ୍ଷକ ଭାବରେ ପ୍ରତିଷ୍ଠା ପାଇବାର ପଥ ସୁଗମ ହୋଇଯିବ । ହଁ, ମୁଁ ଗୋଟିଏ ଖଦଡ଼ ଧୋତି ଓ ପଞ୍ଜାବୀ ପାଇଁ କନା ଆଣିଦେବି । ସୂତା କାଟିବାର ତକଲି ଓ ବଲଣା କିଛି ମଧ୍ୟ ଯୋଗାଇ ଦେବି । ତୁମେ ଗାନ୍ଧିବାଦୀ ଭାବରେ ନିଜକୁ ଗଢ଼ ।''

ମୁଁ ଅତ୍ୟନ୍ତ ହୃଷ୍ଟ ମନରେ କହିଲି, " – ମୁଁ ଦାଣ୍ଡମୁକୁନ୍ଦପୁରରେ ମି.ଇ. ଅଧ୍ୟୟନ ସମୟରୁ ହିଁ ଗାନ୍ଧୀଙ୍କୁ ଦେବଦୂତ ମନେକରି ଆସୁଛି । ୧୯୩୪ ମସିହାରେ ଥର ଥର କରି ଦୁଇଥର ସେ ମହାତ୍ମାଙ୍କୁ ଦର୍ଶନ କରିବାର ସୁଯୋଗ ମଧ୍ୟ ଲାଭ କରି ନିଜକୁ ଭାଗ୍ୟମାନ ମନେ କରୁଛି ।''

ବାସ୍, ଏଥର ସବୁ ଠିକ୍ ହୋଇଯିବ କହି ଗଙ୍ଗାଧର ବାବୁ ଭିତରକୁ ଗଲେ । ଡାକରେ ମଗାଯାଇଥିବା 'ସମାଜ' ପତ୍ରିକା ଆସିଲା । ମୋର ପ୍ରାତ୍ୟହିକ କାର୍ଯ୍ୟ ମଧ୍ୟରେ 'ସମାଜ' ପଢ଼ିବା ଏକ ମୁଖ୍ୟ କାର୍ଯ୍ୟରେ ପରିଣତ ହୋଇଗଲା ।

## ମୁଁ ସୂତାକଟା ଶିଖିଲି

କିଛିଦିନ ପରେ ଗଙ୍ଗାଧର ବାବୁ ୨ଟି ତକଲି ପୁଳାଏ ବଲଣା ଓ ଏକ ଢ଼ିଙ୍କି ନଟେଇ ଆଣି ଦେଇ କହିଲେ, "ପ୍ରତିଦିନ ୧୦-୧୫ ମିନିଟ୍ ସୂତା କାଟିବ ।

ତକଲିରେ ସେ କେବେ ସୂତାକାଟିବା ମୁଁ ଦେଖିନାହିଁ । ମାତ୍ର ମୋତେ ସୂତାକଟା କିପରି ହୁଏ, କାଟି ଦେଖାଇ ଦେଇଥିଲେ । ଗୋଟାଏ ତକଲିରେ କଟାସୂତା ପୂର୍ଣ୍ଣ ହୋଇଗଲେ ସମୟ ସୁବିଧା ଦେଖି ଡ଼ିଙ୍କି ନଟେଇରେ ସୂତା କାଢ଼ି ରଖି ଦେବ । ଯଦି ସମୟ ସୁବିଧା ନହୁଏ, ତେବେ ସୂତାକଟା ଆଦୌ ବନ୍ଦ କରିବ ନାହିଁ । ତେଣୁ ଦୁଇଟି ତକଲି ଦେଇଛି । ମନେରଖ, ସୂତା କଟା ବନ୍ଦ ହେବ ନାହିଁ ।'' ଭାବିଲି ଏ ମଣିଷଟି କି ଉପାଦାନରେ ଗଢ଼ା ବୁଝି ହେଉନାହିଁ । ଗୋଟିଏ ଦିଗରେ ସତ୍ୟ, ନ୍ୟାୟ, ଧର୍ମ ଓ ଗାନ୍ଧୀ ମହାତ୍ମାଙ୍କ ପ୍ରତି ଗଭୀର ଶ୍ରଦ୍ଧା, ଅନ୍ୟ ଦିଗରେ ତାଙ୍କ ରକ୍ତରେ ମିଶିଯାଇଥିବା ଜମିଦାରୀଆ ହାକିମି ଓ ମଣିଷକୁ ଛୋଟ ନଜରରେ ହେୟ ମନେ କରିବାର ନିକୃଷ୍ଟ ମାନସିକତା । ଏଇ ଗୋଟିଏ ଦୁର୍ଗୁଣ ବ୍ୟତୀତ ସେ ଏକ ଆଦର୍ଶ ଗାନ୍ଧୀବାଦୀ ବ୍ୟକ୍ତି ବୋଲି କହିବାରେ ମୋର ଆଦୌ ଦ୍ୱିଧା ନଥିଲା । ମନୁଷ୍ୟ ମାତ୍ରେ ସୁଗୁଣ ଓ ଦୁର୍ଗୁଣର ଅଧୀନ । ତେଣୁ ଭଲ ଗୁଣଗୁଡ଼ିକର ପରିମାଣ ଅଧିକ ଥିଲେ, କିଛି ଦୁର୍ଗୁଣକୁ ଭଲିଯିବା । "ନିମଜ୍ଜତିନ୍ଦୋ କିରଣେଃସ୍ୱିଂବାଙ୍କ'' ପରି ମନେ କରାଯାଏ ।

## ସ୍କୁଲ ଗୃହର ସଂପ୍ରସାରଣ ଚିନ୍ତା

ମୁଁ ଦୂରବର୍ତ୍ତୀ ସ୍ଥାନର ଶିକ୍ଷକ ହୋଇଥିବାରୁ ଛୁଟି ବ୍ୟତୀତ ଅନ୍ୟଦିନ ଘରକୁ ଯାଇପାରେ ନାହିଁ । ଫଳରେ ସବୁଦିନ ସ୍କୁଲଘରେ ରହେ । ରାତିରେ ପିଲାମାନେ ଆସନ୍ତି । ପ୍ରାୟ ସମସ୍ତେ ଭଣଜା ଭାଣିଜୀ । ଝିଅପିଲା ଗୁଡ଼ାଏ ଆଣି ପଢ଼ାଇବା ବ୍ୟବସ୍ଥା କରିଥିବାରୁ ସେ ଅଞ୍ଚଳରେ ଏକ ନୂତନ ଚିନ୍ତାଧାରାର ଉନ୍ମେଷ ହୋଇଥାଏ । ମୁଁ ରାତିରେ ପିଲାମାନଙ୍କୁ ପଢ଼ାଇ ସାରିବା ପରେ ଖମାରରେ ଖାଇ ସ୍କୁଲରେ ଆସି ଶୁଏ । ଦାଦା ଚାଲିଯିବା ପରେ ସ୍କୁଲରେ ରାତ୍ରିଯାପନ ମୋତେ ଆଦୌ ପ୍ରୀତିପ୍ରଦ ହେଉନଥାଏ ।

ଭାଗ୍ୟ ରୁଚିର ଅନୁକୂଳ ହେଲା । ସରାଟ ଖମାର ଗଙ୍ଗାଧର ବାବୁଙ୍କ ଖମାର ଘରର ବିପରୀତ ଦିଗରେ । ସ୍କୁଲଠାରୁ ଦୂରତ୍ୱ ଏକମାତ୍ର ମେଲାଡ଼ିହ । ଉକ୍ତ ଖମାରର ମାଲିକ ଧର୍ମୁ ସ୍ୱାଇଁଙ୍କ ପୁଅ ସ୍ଥାୟୀ ଭାବରେ ରହି ଖମାର ପରିଚାଳନାର ଦାୟିତ୍ୱ ନେଲେ । ନାମ ଅର୍ଜୁନ ସ୍ୱାଇଁ । ମୋ ଠାରୁ ୨/୩ ବର୍ଷ ବଡ଼ । ସୁନ୍ଦର ସ୍ୱାସ୍ଥ୍ୟ, ବେଶ୍ ମେଳାପୀ ମଧ୍ୟ ଥିଲେ । ପରିଚୟ ଟିକିଏ ଘନିଷ୍ଠ ହେବା ପରେ ଦିନେ ସେ ମୋତେ କହିଲେ, " – ଆପଣ ସ୍କୁଲରେ ରାତିରେ ନଶୋଇ ଏଠାରେ ମୋ ପାଖରେ ଶୋଇଲେ ଅସୁବିଧା ହେବ କି ? ମୁଁ ଏକୁଟିଆ ଶୋଇ ଶାନ୍ତି ପାଉନାହିଁ । ଏଠାରେ ଦୁଇଟି ଖଟ ମଧ୍ୟ ଅଛି । ଭାବିକରି ମୋତେ କହିବେ ।''

ମୋର ଭାବିବା ଦରକାର ନଥିଲା – "ରୋଗୀ ଖୋଜୁଥିଲା କାକର ପାଣି, ବଇଦ କହିଲେ ଦେ ତୋରାଣି'' ପରି ମୁଁ ସଙ୍ଗେ ସଙ୍ଗେ ତାଙ୍କ ପ୍ରସ୍ତାବକୁ ସ୍ୱାଗତ କଲି ।

ଆମେ ତତ୍ ପରବର୍ତ୍ତୀ ରାତିରୁ ଏକତ୍ର ଗୋଟିଏ ଘରେ ଶୋଇ ବହୁ ଗପସପରେ ସମୟ କଟାଇ ଦେଉଥିଲୁ ।

ଆମ ସ୍କୁଲର ଅବସ୍ଥା, ଛାତ୍ରଛାତ୍ରୀ ସଂଖ୍ୟା ଓ ସ୍ଥାନାଭାବ ବିଷୟ କହିବା ପରେ ଆଉ ଦୁଇ ବଖରା ଘର ବଢ଼ାଇ ପାରିଲେ ଏହି ସ୍କୁଲକୁ ଉ.ପ୍ରା. ରେ ପରିଣତ କରାଯାଇ ପାରନ୍ତା ।  ଦୁଇ ବନ୍ଧୁ ଅନେକ ଚିନ୍ତା କରିଥିଲୁ ।  ଆମ ସ୍କୁଲର ପଶ୍ଚିମ ପଟକୁ ଲାଗିଥିବା ଚନ୍ଦ୍ରଶେଖର ମହାପ୍ରଭୁଙ୍କ ବିଜେସ୍ଥଳୀର ଅନେକ ଖାଲିସ୍ଥାନ ଅଛି । ସ୍କୁଲ ଘର ପଶ୍ଚିମ ଦିଗକୁ ବଢ଼ାଇ ଦେଲେ ଠାକୁରଙ୍କର ଆହୁରି ଅନେକ ଖାଲି ସ୍ଥାନ ରହିବ ।  ପୁନଶ୍ଚ ଏହି ଯୋଜନା କାର୍ଯ୍ୟକାରୀ ହେଲେ ଦେବାଳୟ ଓ ବିଦ୍ୟାଳୟ ଗୋଟିଏ ସ୍ଥାନରେ ରହି ଏକ ନୂତନ ପରଂପରା ସୃଷ୍ଟି ହୁଅନ୍ତା ।  ବର୍ତ୍ତମାନ ପ୍ରଶ୍ନ ହେଲା, ଠାକୁରଙ୍କ ମାର୍ଫତଦାରମାନେ ଏଥିରେ ସ୍ୱୀକୃତ ହେଲେ ଯାହା କିଛି କରାଯିବ ।

ଏ ସଂପର୍କରେ ମୁଁ ଏକାନ୍ତ ଆଗ୍ରହୀ ଓ ଆଶାୟୀ ହୋଇ ପଡ଼ିଥିଲି ।  କିପରି ଉ.ପ୍ରା. ସ୍କୁଲଟିଏ ହୋଇ ପାରିବ, ଏଥିପାଇଁ ଶକ୍ତିମତେ ଉଦ୍ୟମ ଆରମ୍ଭ କଲି । ମୋର ଆଶା ଫଳବତୀ ହେବାର ସମ୍ଭାବନା ଥିବାର କାରଣ ହେଲା ଗ୍ରାମର ପ୍ରତ୍ୟେକ ଅଭିଭାବକ ତଥା ଗ୍ରାମବାସୀମାନଙ୍କ ସହିତ ନିବିଡ଼ ସଂପର୍କ ।  ଆଗରୁ କହିଛି, ଗ୍ରାମରେ ମୁଁ ଥିଲି ଶିକ୍ଷକ କମ୍ ଓ ଶଳା, ମାମୁଁ, ଧର୍ମ ଭାଇ ରୂପେ ଅଧିକ ପରିଚିତ । ଦ୍ୱିତୀୟତଃ ୧୯୩୮ ମସିହାରେ ସ୍କୁଲର ଯେଉଁ ପରିବର୍ତ୍ତନ କଲି । ବଗିଚା, ଝିଅପିଲାଙ୍କ ସ୍କୁଲକୁ ଆଣିବା, ଛାତ୍ରଛାତ୍ରୀ ସଂଖ୍ୟାର ଆଶାତୀତ ଅଭିବୃଦ୍ଧି ଗ୍ରାମବାସୀଙ୍କୁ ଅତ୍ୟନ୍ତ ପ୍ରଭାବିତ କରି ପାରିଥିଲା ।

ଏ ସଂପର୍କରେ  ଗଙ୍ଗାଧର ମହାନ୍ତିଙ୍କ ସହିତ ଆଲୋଚନା କରିବାରେ ସେ ବିଶେଷ ଆଗ୍ରହ ପ୍ରକାଶ ନକରି ମୋ ସହିତ ଗଢ଼ି ଉଠିଥିବା ସୁସଂପର୍କକୁ ଆଖି ଆଗରେ ରଖି କହିଲେ, " – ତୁମ ପ୍ରସ୍ତାବ ସ୍ଥାନୀୟ ଗ୍ରାମବାସୀଙ୍କ ଦାୟିତ୍ୱ ।  ଶୁଣିଲି, ବର୍ତ୍ତମାନ ତୁମେ ସ୍କୁଲଟିର ଚେହେରା ବଦଳାଇ ସାରିଲଣି ।  ବୋର୍ଡ଼ରେ ମଧ୍ୟ ସର୍କଲ ସବ୍-ଇନ୍ସପେକ୍ଟର  ତୁମ ସଂପର୍କରେ ଉତ୍ତମ ମନ୍ତବ୍ୟ ଦେଉଛନ୍ତି ।  ଏତିକିରେ ସନ୍ତୁଷ୍ଟ  ରହି ଅଧିକ କିଛି କରିବା ଆଶାରେ ଚିନ୍ତିତ ନହେବା ହିଁ ମୋର ପରାମର୍ଶ । ପୁନଶ୍ଚ କହୁଛି, ଯଦି ଗ୍ରାମବାସୀ ସ୍କୁଲକୁ  ଲାଗି ଥିବା ପୂର୍ବ, ପଶ୍ଚିମ କିମ୍ବା ଉତ୍ତର ଦିଗକୁ ୨ ଡିସିମଲ୍ ଜମି ବୋର୍ଡ଼ ନାମରେ ରେଜିଷ୍ଟ୍ରି କରାଇ ପାରିବେ, ତେବେ ମୁଁ

ବୋର୍ଡରୁ କିଛି ଆର୍ଥିକ ସାହାଯ୍ୟ ଯୋଗାଇ ଦେବି । ଏହା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ପାଇଁ ମୋତେ ଅନୁରୋଧ କରିବ ନାହିଁ ।''

ବାସ୍ତବିକ ଗ୍ରାମବାସୀମାନଙ୍କ ମଧ୍ୟରେ ଗଙ୍ଗାଧର ବାବୁ ନିଜକୁ ଆଦୌ ସାମିଲ କରି ନଥାନ୍ତି । ବରଂ ନିଜକୁ ଗ୍ରାମବାସୀଙ୍କ ଠାରୁ ସମ୍ପୂର୍ଣ୍ଣ ପୃଥକ ରଖି ତାଙ୍କ ଆଭିଜାତ୍ୟ, ଖାନ୍‌ଦାନୀ ଓ ପ୍ରଭୁତ୍ୱକୁ ଯାବୁଡ଼ି ଧରିଥାନ୍ତି । ପୁନଶ୍ଚ ତାଙ୍କ କଥା ଯେ ଅମୂଳକ ବା ଭିତ୍ତିହୀନ, ଏକଥା ମୁଁ କହିପାରୁ ନଥିଲି । ମୁଁ ଉତ୍ତମ ଭାବରେ ଉପଲବ୍ଧି କରିଥିଲି ଯେ ଏହି ଗ୍ରାମ ଓ ସନ୍ନିକଟ ଗ୍ରାମ ଭିଲି ଦେଉଳିର ଛାତ୍ରଛାତ୍ରୀମାନଙ୍କୁ ସ୍କୁଲ ଅଣାଯାଇ ପାରିଲେ ଏଠାରେ ଗୋଟିଏ ଉ.ପ୍ରା. ସ୍କୁଲ ଚାଲିବାରେ କୌଣସି ଅସୁବିଧା ହେବ ନାହିଁ। କେଜାଣି କାହିଁକି ମୁଁ ଏ ସ୍ୱପ୍ନକୁ ଭୁଲି ପାରୁ ନଥିଲି । ଏ ପର୍ଯ୍ୟନ୍ତ ପ୍ରାପ୍ତ ସଫଳତାରେ ସନ୍ତୁଷ୍ଟ ନହୋଇ ଆହୁରି ଅଧିକ ସଫଳତା ପାଇଁ ଉଦ୍ୟମ କରିବା ହିଁ ଜଣେ ଶିକ୍ଷକ ପାଇଁ ଏକାନ୍ତ ଅପରିହାର୍ଯ୍ୟ । ମୋ ନିଜର ଏହି ମତୋକୁ ମୁଁ ଯଥାର୍ଥ ରୂପାୟିତ କରିବା ପାଇଁ ନିୟତ ଚେଷ୍ଟିତ ଥିଲି ।

## ଆତ୍ମ-ସମୀକ୍ଷା

ଚାହୁଁ ଚାହୁଁ ଭଲିଗ୍ରାମରେ ମୋର ଚାରିବର୍ଷ ପୂରିଗଲା । ପଞ୍ଚମ ବର୍ଷର ପ୍ରଥମ ପାଦରେ ମୁଁ ମୋ କାର୍ଯ୍ୟର, ଶିକ୍ଷକତାର ତଥା ସଫଳତା ଓ ବିଫଳତାର ସମୀକ୍ଷା କରିବା ଅବସରରେ ଦେଖିଲି – କର୍ମ-ନିଯୁକ୍ତିର ପ୍ରଥମ ଦୁଇବର୍ଷ ମୁଁ କର୍ତ୍ତବ୍ୟ ସଚେତନ ନହୋଇ ସ୍ୱାର୍ଥସର୍ବସ୍ୱ ଓ ଏକାନ୍ତ ଭାବରେ ଲକ୍ଷ୍ୟଭ୍ରଷ୍ଟ ହୋଇଥିଲି । ହୁଏତ ଦାଦା ଏହି ସ୍କୁଲର ପ୍ରଧାନ ଶିକ୍ଷକ ନଥିଲେ ମୁଁ ଅଳ୍ପଦିନ ପରେ ମୋ ଅଳୀକ ସ୍ୱପ୍ନକୁ ପାଥେୟ କରି ଏଠାରୁ ବିଦାୟ ନେବାକୁ ବାଧ୍ୟ ହୋଇଥାନ୍ତି ।

ଦଶ ବାର ବର୍ଷ ଚାକିରି କରିବା ପରେ ମଧ୍ୟ ଶିକ୍ଷକମାନେ ଟ୍ରେନିଂ ପାଇବାର ସୁଯୋଗରୁ ବଞ୍ଚିତ ଥିବା ବେଳେ ମାତ୍ର ଦୁଇବର୍ଷ ନପୂରୁଣୁ ମୋତେ ଟ୍ରେନିଂ ଅଧ୍ୟୟନର ଅପ୍ରତ୍ୟାଶିତ ଆଶୀର୍ବାଦ ମିଳି ଯିବାରେ ମୋର ମାନସିକ ପରିବର୍ତ୍ତନ ହେଲା । ଗତ ଦୁଇବର୍ଷର ନିନ୍ଦନୀୟ ଆଚରଣକୁ ମୁଁ ନିଜେ ମଧ୍ୟ କ୍ଷମା କରି ପାରିନଥିଲି । ଟ୍ରେନିଂ ଅଧ୍ୟୟନ ସମୟରେ ମୁଁ ଏତେ ବେଶୀ ବିଷୟ ଅବଗତ ହେଲି ଏବଂ ଶିକ୍ଷାଦାନର ନାନା ଅଭିନବ କୌଶଳ ବିଷୟରେ ଧାରଣା କଲି । କିଛି ବାସ୍ତବ ଅଭିଜ୍ଞତା ଲାଭ କରିବାର ସୁଯୋଗ ମଧ୍ୟ ଲାଭ କଲି, ଯାହାକୁ ତୁରନ୍ତ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ମୁଁ ଉଦ୍‌ଗ୍ରୀବ ହୋଇ ଉଠୁଥିଲି ।

ଟ୍ରେନିଂ ପରେ ସେହି ଭିଲିଗ୍ରାମ ସ୍କୁଲ ପ୍ରଧାନ ଶିକ୍ଷକରୂପେ ମାତ୍ର ମାସ କେତୋଟି ମଧ୍ୟରେ ହତା, ବଗିଚାର ବାଡ଼, ଫସଲ ପାଇଁ କ୍ଷେତ୍ର ପ୍ରସ୍ତୁତି ଏବଂ ସର୍ବୋପରି ଔଷଧ ଉଦ୍ୟାନ ପରି ଏକ ଅଭିନବ ଉଦ୍ୟମ କରିବାରେ ସମର୍ଥ ହୋଇଥିଲି। ସେତିକି ନୁହେଁ ଟ୍ରେନିଂ ଅଧ୍ୟୟନ ସମୟରେ ବ୍ୟବହାର କରିଥିବା ବହୁ ବିଭିନ୍ନ ଛବି ଓ ଗଣନକ ଯନ୍ତ୍ର, ଶିଶୁ-ଶ୍ରେଣୀ ପାଇଁ ଗୋଲି, ମାଳି, ମଂଜି ଓ କାଠିବିଡ଼ାକୁ ବ୍ୟବହାର କରି ଶିକ୍ଷାଦାନର ସୁଫଳକୁ ମୁଁ ସର୍ବୋଚ୍ଚ ଭାବରେ କାର୍ଯ୍ୟରେ ଲଗାଉଥିଲି। ଅଧିକନ୍ତୁ ଅକ୍ଷର ଶିକ୍ଷା ପରେ ପିଲାଙ୍କ ତାଆସ ପରି ଛୋଟ ଛୋଟ ପଟି ଉପରେ ଅକ୍ଷରଟିଏ ମାନ ବଡ଼ ଆକାରରେ ଲେଖି ପିଲାମାନଙ୍କ ପାଇଁ ଏକ ନୂତନ ତାଆସ ଖେଳ ପଦ୍ଧତି ଉଦ୍‌ଭାବନ କରିବା ସହିତ ଉକ୍ତ ଛୋଟ ତାଆସର ଆରପଟେ ୧ରୁ ୫୦ ପର୍ଯ୍ୟନ୍ତ ସଂଖ୍ୟା ଲେଖି ସେହି କାର୍ଡ଼ଗୁଡ଼ିକୁ ବିଭିନ୍ନ ପ୍ରଶ୍ନ ମାଧ୍ୟମରେ ବ୍ୟବହାର କରୁଥିଲି। ମାଟିକାନ୍ଥ ହେଲେ ମଧ୍ୟ ଛବିଗୁଡ଼ିକୁ ଆକର୍ଷଣୀୟ ଭାବରେ କାନ୍ଥରେ ଟାଙ୍ଗି ଦେଇଥିଲି। ବାଉଁଶ ସାହାଯ୍ୟରେ ତିନି ମାଠିଆର ଜଳଶୋଧନ ଯନ୍ତ୍ର (ଫିଲଟର୍) ଟିଏ ସବୁବେଳ ପାଇଁ ସ୍କୁଲରେ ରହି ବ୍ୟବହୃତ ହେଉଥାଏ। ବାଉଁଶର ଏକ ଛୋଟ ଭାଡ଼ି (ର୍‍ୟାକ୍) ରେ ଶିଶୁ ଶ୍ରେଣୀର ଯାବତୀୟ ଉପକରଣ (ମଞ୍ଜି, କାଠି, ଗୋଲି ଆଦି) ବିଭିନ୍ନ ଡାଲାରେ ସଜାଇ ରଖାଯାଇଥାଏ। ବିଶେଷ କରି ଝିଅପିଲାମାନଙ୍କୁ ସ୍କୁଲକୁ ଆଣିବା ଏକ ଉଲ୍ଲେଖନୀୟ ଏବଂ ସଫଳ ପ୍ରଚେଷ୍ଟା ରୂପେ ମୋତେ ବହୁତ ଆନନ୍ଦ ଓ ଆତ୍ମ-ସନ୍ତୋଷ ଦେଉଥାଏ। ଏହିସବୁ ଦିଗରେ ମୁଁ ସଫଳତା ଲାଭ କରି ଯେତିକି ସନ୍ତୋଷ ପାଇଥିଲି ତାହା ମୋ ପାଇଁ ଯଥେଷ୍ଟ ନଥିଲା। ତେଣୁ ଏ ଅଞ୍ଚଳର ସବୁପିଲାଙ୍କୁ ପାଠ ପଢ଼ାଇବା ଲକ୍ଷ୍ୟ ନେଇ ମୁଁ ଉ.ପ୍ରା. ସ୍କୁଲର ସ୍ୱପ୍ନରେ ବିଭୋର ହୋଇ ଉଠିଥିଲି।

## ସ୍ୱପ୍ନ ଦେଖିବାକୁ ରାତି ଅଣ୍ଟିଲା ନାହିଁ

ଶାସ୍ତ୍ରରେ ଅଛି ବ୍ୟକ୍ତିର ଇଚ୍ଛା ନିୟତି ଇଚ୍ଛାର ଅନୁକୂଳ ନହୋଇଥିଲେ ତାଦୃଶ ଇଚ୍ଛା ଇଚ୍ଛାରେ ହିଁ ରହିଯାଏ। ଏଠାରେ ମଧ୍ୟ ସେଇ ଉକ୍ତିଟି ପ୍ରମାଣିତ ହେଲା। କୁଶଭଦ୍ରା ନଦୀରେ ଅନେକ ଜଳ ପ୍ରବାହିତ ହୋଇଗଲା। ଚାହୁଁ ଚାହୁଁ ଅଳ୍ପ ଦିନରେ ବହୁତ ଘଟଣା ଘଟି ଯାଇଥିଲା।

ଗଙ୍ଗାଧର ବାବୁ ବୋର୍ଡ଼କୁ ପୁନର୍ବାର ନିର୍ବାଚିତ ହେବାର ସୁଯୋଗ ଲାଭରୁ ବଞ୍ଚିତ ହୋଇଥିଲେ। ଭିଲିଗ୍ରାମକୁ ମାତ୍ର ୩/୪ କି.ମି. ଦୂରବର୍ତ୍ତୀ ବିଷ୍ଣୁପୁର ଗ୍ରାମର ଘନଶ୍ୟାମ ଦାସ ସଭ୍ୟ ଭାବରେ ନିର୍ବାଚିତ ହୋଇ ଲୋକାଲ୍ ବୋର୍ଡର ଚେୟାରମେନ୍ ମଧ୍ୟ ହୋଇଗଲେ। ଏପରି ଘଟଣାରେ ମୁଁ ଖୁବ୍ ବ୍ୟଥିତ ହୋଇଥିଲେ ମଧ୍ୟ

ଗଙ୍ଗାଧର ବାବୁଙ୍କ ମନରେ ଦୁଃଖର ସାମାନ୍ୟତମ ଆଭାସ ମଧ୍ୟ ନଥିଲା ।

ପୁନଶ୍ଚ ଏହି ୧୯୩୯ ମସିହାରେ ମୋର ବିବାହ ସମ୍ପନ୍ନ ହୋଇଥିଲା । ସେତେବେଳେ ପ୍ରାୟ ସର୍ବତ୍ର ବାଲ୍ୟ ବିବାହ ଯାହାକି ପିଲା ଖେଳର କୁଣ୍ଡେଇ ବିଭାଘର ଠାରୁ ବିଶେଷ କିଛି ଭିନ୍ନ ନଥିଲା । ଏ ବିଚିତ୍ର ବିବାହ ଓ ଏହାର ତଥାକଥିତ ବିଧିବିଧାନ ସଂପର୍କରେ ସୁବିଧା ହେଲେ ଅନ୍ୟତ୍ର ଏକ ସ୍ୱତନ୍ତ୍ର ଅଧ୍ୟାୟରେ ବର୍ଣ୍ଣନା କରିବି; ମାତ୍ର ଏ ସ୍ଥାନରେ ତାହାର ଉପସ୍ଥାପନା ବା ବର୍ଣ୍ଣନା ଅପ୍ରାସଙ୍ଗିକ ମନେ କଲି ।

## ପ୍ରଶଂସନୀୟ କାର୍ଯ୍ୟର ଉପଯୁକ୍ତ ପୁରସ୍କାର

୧୯୩୯ ମସିହା ନଭେମ୍ବର ମାସର ଶେଷ ଆଡ଼କୁ ଘନଶ୍ୟାମ ବାବୁ ଆମ ସ୍କୁଲ ପରିଦର୍ଶନରେ ଆସିଲେ । ମୁଁ ତାଙ୍କ ନାମ ଶୁଣିଥିଲେ ମଧ୍ୟ ଆଗରୁ ଦେଖିନଥିଲି । ଇତି ପୂର୍ବରୁ ସେ ଆଖପାଖ ସ୍କୁଲ ପରିଦର୍ଶନ କରିଥିବାରୁ କେତେକ ଶିକ୍ଷକଙ୍କଠାରୁ ଶୁଣିଥିଲି ।

ଦୈବାତ୍ ଦିନେ ଅପ୍ରତ୍ୟାଶିତ ଭାବରେ ଚେୟାରମେନ୍ ମୋ ସ୍କୁଲ ବାହାରେ ସାଇକେଲଟି ରଖି ଭିତରକୁ ଆସିଲେ । ଆସୁଥିବା ବେଳେ ସ୍କୁଲର ବଗିଚା, ମଝିରେ ରାସ୍ତା ଓ ତାହାର ଉଭୟ ପାର୍ଶ୍ୱରେ ସଜା ଯାଇଥିବା ପରି କ୍ରୋଟନ୍ ଓ ଅନ୍ୟ ଫୁଲ ଗଛଗୁଡ଼ିକ ଉପରେ ନଜର ପକାଇ ଧୀରେ ଧୀରେ ଆସି ସ୍କୁଲ ବାରଣ୍ଡାରେ ପହଞ୍ଚିଲେ । ଆମେ ଦୁଇ ଶିକ୍ଷକ ଛିଡ଼ା ହେବା ମାତ୍ରେ ୨ୟ ଶିକ୍ଷକ କହିଲେ, "– ଆପଣ ଚିହ୍ନି ନାହାନ୍ତି, ଏ ଲୋକାଲ୍ ବୋର୍ଡ଼ ଚେୟାର୍‌ମେନ୍ ଘନଶ୍ୟାମ ବାବୁ ।" ମୁଁ ପ୍ରଣାମ କରି ତାଙ୍କୁ ଘର ଭିତରକୁ ନେଲି ଓ ମୋର ପରିଚୟ ଦେଲି । ମାତ୍ର ସେତେବେଳକୁ ଚେୟାରମେନ୍ ଘରର କାନ୍ଥରେ ସଜା ହୋଇଥିବା ଚିତ୍ର, ଫଟୋ ଓ ମଟୋଗୁଡ଼ିକ ନିବିଷ୍ଟ ମନରେ ଦେଖୁଥାନ୍ତି । ଏହାପରେ ସେ ଆସନରେ ବସି ମୋର ପରିଚୟ, ପ୍ରଥମ ନିଯୁକ୍ତି ଆଦି ସଂପର୍କରେ କେତେକ ପ୍ରଶ୍ନ ପଚାରିବା ପରେ କହିଲେ, " –ଉଲିଗ୍ରାମ ମୋ ଗାଁଠାରୁ ମାତ୍ର ୩/୪ କିଲୋମିଟର ଦୂର । ମୁଁ ଅନେକ ସମୟରେ ଏ ଗାଆଁକୁ ବିଭିନ୍ନ କାର୍ଯ୍ୟରେ ଆସିଛି ଓ ଏ ସ୍କୁଲର ଦୟନୀୟ ଅବସ୍ଥା ରାସ୍ତାରୁ ଦେଖିଛି । ଅଳ୍ପଦିନ ମଧ୍ୟରେ ବିଦ୍ୟାଳୟଟିର ଯେଉଁ ଅସମ୍ଭବ ପରିବର୍ତ୍ତନ ହୋଇଛି, ତାହା ନିଶ୍ଚିତ ଭାବରେ ଉଲ୍ଲେଖନୀୟ । ଏଇ ମାଟି ଏଇ ହତା ଏଇ ଘର ଥିଲା । ମାତ୍ର କେହି ଶିକ୍ଷକ ଏଠାରେ ନଥିଲେ । କର୍ମଚାରୀ ଥିଲେ । କର୍ମଚାରୀମାନେ ଦରମାସର୍ବସ୍ୱ ହୋଇ ଚାକିରି କରିଥାନ୍ତି ।" ଏହିପରି

ଆଉ କେତେ ପଦ କଥା କହିବା ପରେ ମୁଁ କହିଲି, " – ଟ୍ରେନିଂରୁ ଫେରିବା ପରେ ଶପଥ ନେଇଛି – ସ୍କୁଲ ସଂଗଠନ, ଅଭିଭାବକମାନଙ୍କ ସହିତ ସୁସଂପର୍କ ଏବଂ ଛାତ୍ରଛାତ୍ରୀମାନଙ୍କର ସର୍ବାଙ୍ଗୀନ ଉନ୍ନତି ପ୍ରତି ଯଥୋଚିତ ଧ୍ୟାନ ଦେବି । ବର୍ତ୍ତମାନ ପ୍ରାଇମେରୀ ସ୍କୁଲଗୁଡ଼ିକ ନାହିଁ ନାହିଁର ଗନ୍ତାଘର । ସବୁ ଅଭାବ ଭିତରେ କାମ କରିବା ଅତ୍ୟନ୍ତ କ୍ଳେଶଦାୟକ । ତଥାପି ମୁଁ ନିଶ୍ଚୟ କିଛି କରିବାରେ ପ୍ରାଣପଣେ ଲାଗିଛି ।''

ଏତିକି ଶୁଣି ସେ ପିଲାମାନଙ୍କ ଭିତରେ ଟିକିଏ ବୁଲି ଆସି କହିଲେ, – "ପାଠ ପଢ଼ାଇବା ପାଇଁ ଭଲ ଉପକରଣ ସହିତ ଏକ ଦେଶୀ ଫିଲଟର ମଧ୍ୟ ଦେଖିଲି । ସର୍ବୋପରି ଅଧିକ ଭଲ ଲାଗିଲା ଏ ସ୍କୁଲରେ ଝିଅ ପିଲାମାନଙ୍କୁ ଦେଖି ।'' ଏହାପରେ ପିଲାମାନଙ୍କୁ ଦୁଇ ତିନୋଟି ମାତ୍ର ପ୍ରଶ୍ନ ପଚାରି ସେ ପରିଦର୍ଶନ ମନ୍ତବ୍ୟ ପୁସ୍ତକରେ ବେଶ୍ ସୁନ୍ଦର ମନ୍ତବ୍ୟଟିଏ ଦେଇଥିଲେ ।

ପରିଦର୍ଶନ ମନ୍ତବ୍ୟ ବହିରେ ସବ୍-ଇନ୍ସପେକ୍ଟର, ଡି.ଆଇ. ଓ ଅନ୍ୟ ଶିକ୍ଷା ବିଭାଗୀୟ କର୍ମଚାରୀମାନେ ମନ୍ତବ୍ୟ ଦେଇଥାନ୍ତି । ମାତ୍ର ଅନ୍ୟ ଏକ ସ୍ୱତନ୍ତ୍ର ବହି କରି ପାରିନଥିବାରୁ ମୁଁ ସେହି ବହିଟି ଦେଇଥିଲି । ଏ ସମ୍ପର୍କରେ ଚେୟାରମେନ୍‌ଙ୍କର କୌଣସି ଧାରଣା ନଥିଲା । ସିଲାବସ୍ ପାଠ୍ୟପୁସ୍ତକ ସଂପର୍କରେ ସବ୍-ଇନ୍ସପେକ୍ଟର, ଡ଼ି.ଆଇ.ମାନେ ମଧ୍ୟ ବିଶେଷ କିଛି ଜାଣନ୍ତି ନାହିଁ, ତେଣୁ ବୋର୍ଡ଼ କର୍ତ୍ତୃପକ୍ଷଙ୍କ ସେସବୁ ଜାଣିବାର ଆବଶ୍ୟକତା ନଥିଲା ।

ଚେୟାରମେନ ସାଇକେଲଟି ଧରି ନିକଟସ୍ଥ ସାତପୁରୀ ସ୍କୁଲ ଦେଖିବା ପାଇଁ ଚାଲିଗଲେ । ବୋର୍ଡ଼ ଚେୟାରମେନ୍‌ଙ୍କ ସୁନ୍ଦର ମନ୍ତବ୍ୟ ଦେଖି ମୁଁ ଖୁବ୍ ଆନନ୍ଦ ଅନୁଭବ କରିଥିଲି ।

ଠିକ୍ ୧୫ /୧୬ ଦିନ ପରେ ମୋର ବଦଳୀ ଆଦେଶ ଆସିଲା । ଚେୟାର୍‌ମେନ୍‌ଙ୍କ ନିଜ ଗ୍ରାମ ବିଷ୍ଣୁପୁରକୁ । ହଠାତ୍ ମୁଁ ଅତ୍ୟନ୍ତ ବିବ୍ରତ ହୋଇ ପଡ଼ିଲି । ମୋ ସ୍ୱପ୍ନ ସଫଳ ହୋଇ ପାରିଲା ନାହିଁ । ଗ୍ରାମବାସୀ ଘନବାବୁଙ୍କୁ ଦେଖା କଲେ । ମାତ୍ର ଫଳ କିଛି ହେଲା ନାହିଁ । ବଦଳି କାଏମ୍ ରହିଲା । ବିଷ୍ଣୁପୁର ସ୍କୁଲର ପରିବର୍ତ୍ତନ ଓ ଉନ୍ନତି ଲକ୍ଷ୍ୟ ନେଇ ଏହା କରାଯିବା ନିତାନ୍ତ ଆବଶ୍ୟକ ବୋଲି କହିବା ସହିତ ଜଣେ ଉପଯୁକ୍ତ ଶିକ୍ଷକ ଭିଲିଗ୍ରାମକୁ ପଠାଇବାର ପ୍ରତିଶ୍ରୁତି ଦେଇ ଗ୍ରାମବାସୀଙ୍କୁ ଫେରାଇ ଦେଇଥିଲେ ।

ଗାଁରେ ପୁଣି ନୈରାଶ୍ୟ ଖେଳିଗଲା । ମୁଁ ପ୍ରତିଦିନ ସଂଧ୍ୟାକୁ ଏଠାକୁ ଆସିବି, ରାତିରେ ରହି ସକାଳ ୯ଟାରେ ବିଷ୍ଣୁପୁର ଯିବି । ଏପରି ହେଲେ ମୁଁ ତୁମରିମାନଙ୍କ ଗହଣରେ ଥିବା ପରି ଅନୁଭବ କରିବି । ଏଥିରେ ମୋ ଧର୍ମଭଉଣୀମାନେ ବିଶେଷ କରି ସଖୀ ନାନୀ ଅଧିକ ମର୍ମାହତ ହୋଇଥିବା ଲକ୍ଷ୍ୟ କରି ତାକୁ ବୁଝାଇଲି, "ଏ ବରଂ ଭଲ ହେଲା । ବେଶୀ ପ୍ରତିବାଦ କଲେ ଚିଲିକା, ଦଶପଲ୍ଲା କିମ୍ବା ନୟାଗଡ, ରଣପୁର ଯିବାକୁ ବାଧ୍ୟ ହେବି । ତୁ ଆଦୌ ବ୍ୟସ୍ତ ହୁଅନା ।'' କୌଣସି ମତେ ତାକୁ ବୁଝାଶୁଝା କରି ମୁଁ ବିଷ୍ଣୁପୁରକୁ ଗଲି ।

## ବିଷ୍ଣୁପୁର

କର୍ତ୍ତବ୍ୟର ତାଡ଼ନାରେ ବାଧ୍ୟ ହୋଇ ଭିଳିଗ୍ରାମରେ ମୋ ହାତର ଦରଗଢ଼ା ମୂର୍ତ୍ତିଟିକୁ ସେହିପରି ଅବସ୍ଥାରେ ଛାଡ଼ି ଆସିବାକୁ ମୁଁ ଆଦୌ ଇଚ୍ଛା କରି ନଥିଲି । ଠିକ୍ ବିଦାୟ ଲଗ୍ନରେ ମୁଁ ମୋର ପ୍ରିୟ ବିଦ୍ୟାଳୟ, ସୁନ୍ଦର ବଗିଚା, ନିଜ ହାତ ତିଆରି ବହୁ ଶିକ୍ଷୋପକରଣ କରଣ ଏବଂ ପ୍ରିୟ ଛାତ୍ରଛାତ୍ରୀମାନଙ୍କ ଆଡ଼କୁ ଭଲ କରି ଥରେ ଆଖି ପୂରାଇ ଦେଖିନେବା ସମୟରେ ନିଜକୁ ସଂଯତ କରି ପାରିନଥିଲି । ସେତେବେଳେ ସେଇ ଦରଫୁଟା କୋମଳ କଳିକାଗୁଡ଼ିକଙ୍କ ବିଷାଦିତ ବଦନର ସମୁଜ୍ଜ୍ୱଳ ସ୍ମୃତି ମୋ ମାନସ ପଟରେ ଚିରଜାଗ୍ରତ ରହିଛି ।

ବିଷ୍ଣୁପୁର ଏକ ଉନ୍ନତ ଓ ଶିକ୍ଷିତ ଗ୍ରାମ । ଏଠାରେ ବ୍ରାହ୍ମଣ ଓ କରଣମାନେ ହିଁ ମୁଖ୍ୟରୂପେ ବିବେଚିତ ହେଉଥିଲେ । ଉକ୍ତ ଗ୍ରାମର ସ୍କୁଲଟି ନିଶ୍ଚୟ ଉତ୍ତମ ମାନର ହୋଇଥିବ, ଏହି ଧାରଣା ମୋର ସ୍କୁଲ ଭିତରକୁ ପଶୁ ପଶୁ ଅସତ୍ୟ ପ୍ରମାଣିତ ହୋଇଗଲା । ଏହା ଥିଲା ଏକ ନାହିଁ ନାହିଁର ବିଦ୍ୟାଳୟ । "ଭାଗ୍ୟଂ ଫଳୋତି ସର୍ବତ୍ର" କୁ ସ୍ମରଣ କରି ଚାର୍ଜ ଗ୍ରହଣ କରିବା ପରେ ବିଦାୟୀ ବୟସ୍କ ଶିକ୍ଷକଙ୍କୁ ନମସ୍କାର କରି ବିଦାୟ ଦେଇଥିଲି ।

ବିଦ୍ୟାଳୟଟି ଦୁଇ ବ୍ରାହ୍ମଣ ସାହି ମଧ୍ୟରେ ଥିବା ଏକ ଆମ୍ବତୋଟାର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । ବିଦ୍ୟାଳୟ ଗୃହଠାରୁ ମାତ୍ର ୧୦ /୧୨ ହାତ ଛଡ଼ାରେ ସାହିକୁ ରାସ୍ତା । ସ୍କୁଲ ଗୃହଟି ଭିଳିଗ୍ରାମ ଗୃହଠାରୁ ଅପେକ୍ଷାକୃତ ପ୍ରଶସ୍ତ । କିଛି ଡ଼େସ୍କ୍ ଓ ଦୁଇଟି ଚଉକି ଓ ଗୋଟିଏ ଟେବୁଲ୍ ରହିଥାଏ । ଗୃହକୁ ଚାହିଁ ଛାତ୍ର ସଂଖ୍ୟା ଅତ୍ୟନ୍ତ ନୈରାଶ୍ୟଜନକ । ଦ୍ୱିତୀୟ ଶିକ୍ଷକଙ୍କ ନାମ ମନେ ନାହିଁ । ତାଙ୍କ ସହିତ ଆଲୋଚନାରୁ ଜାଣିଲି, ଏଠାରେ ବ୍ରାହ୍ମଣ ଓ କରଣ ପିଲାମାନେ ହିଁ ଅଧ୍ୟୟନ କରନ୍ତି । ମୁଖ୍ୟତଃ ଏହି ପିଲାମାନଙ୍କୁ ନେଇ ସ୍କୁଲଟି କାର୍ଯ୍ୟ କରେ । ପାଖରେ

ଖଣ୍ଡାୟତ ଓ ହରିଜନ ସାହି ଅଛି ଓ ପଢ଼ିବା ବୟସର ପିଲା ସେଠାରେ ଯଥେଷ୍ଟ ଥିଲେ ମଧ୍ୟ ଅଭିଭାବକ ମାନେ ଶିକ୍ଷା ପ୍ରତି ଆଦୌ ଆଗ୍ରହୀ ନୁହନ୍ତି ।

ଚାରିଟା ବାଜିବା ପରେ ମୁଁ ସାଇକେଲ ଧରି ଭିଲିଗ୍ରାମ ଅଭିମୁଖେ ଅଗ୍ରସର ହେଲି । ରାତିରେ ସମସ୍ତଙ୍କ ସହିତ ଦେଖାହେଲା । ତହିଁ ଆରଦିନ ସକାଳ ଓଳି ସଖୀନାନୀ ଘରେ ଖାଇ କର୍ମକ୍ଷେତ୍ର ଅଭିମୁଖେ ଅଗ୍ରସର ହେଲି ।

ମୁଁ କାମ ସାରି ପୂର୍ବ ପରି ଭିଲିଗ୍ରାମ ଚାଲି ଯାଉଥାଏ । ମୋ ବିଷୟରେ କେହି କିଛି ଖବର ରଖିବା ମୋର ମନେ ପଡୁନାହିଁ । ପ୍ରାୟ ୧୦/୧୨ ଦିନପରେ ଘନବାବୁ ଘରକୁ ଆସି ମୋତେ ଡକାଇଲେ ଓ କହିଲେ, " – କାଲିଠାରୁ ତୁମେ ଆମ ଘରେ ଖାଇବ । ନଟବର ମହାନ୍ତି ଆମ ପିଲାଙ୍କୁ ଟିଉସନ କରନ୍ତି । ତୁମେ ସେ ରହୁଥିବା କୋଠରୀରେ ରହିବ ।''

ମୋର ଦୈନିକ ଭିଲିଗ୍ରାମ ଯିବା ବନ୍ଦ ହୋଇଗଲା । ନଟବାବୁ ମୋତେ ଘନବାବୁଙ୍କ ସ୍ତ୍ରୀଙ୍କ ପାଖକୁ ଡାକିନେଲେ । ଦୁହେଁ ଖାଇବସିବା ବେଳେ ଘନବାବୁଙ୍କ ସ୍ତ୍ରୀ ମୋ ବିଷୟରେ ଅନେକ କଥା ପଚାରି ବୁଝିଥିଲେ । ନଟବାବୁ ତାଙ୍କୁ ଭାଉଜ ବୋଲି ସମ୍ବୋଧନ କରୁଥିବାରୁ ପରଦିନ ମୁଁ ମଧ୍ୟ 'ଭାଉଜ' ବୋଲି ଡାକିଲି । ଘନବାବୁଙ୍କର ତିନି ଭାଇ ଓ ତାଙ୍କ ସ୍ତ୍ରୀମାନେ ଆପେ ଆପେ ମୋର ଭାଉଜ ହୋଇଗଲେ । ସେତିକି ନୁହେ - ମୋହନ ବାବୁଙ୍କ ପିଲାମାନେ ମୋ ପାଖେ ପଢୁଥିବାରୁ ତାଙ୍କ ଘରକୁ ମଧ୍ୟ ମୋର ଅବାଧ ପ୍ରବେଶ ଥିଲା । ମୋହନ ବାବୁଙ୍କ ପୁଅ ଝିଅ ଏବଂ ତାଙ୍କ ବଡ଼ ଭାଇ କେଶବ ବାବୁଙ୍କ ପାଞ୍ଚପୁଅ ମଧ୍ୟରୁ ସାନ ତିନିପୁଅ ପଢୁଥାନ୍ତି । ତେଣୁ ତାଙ୍କ ଘରର ଦୁଇ ସ୍ତ୍ରୀ ଲୋକଙ୍କୁ ଭାଉଜ ସମ୍ବୋଧନ କରିବାରେ ମୁଁ ଦ୍ୱିଧା ପ୍ରକାଶ କରି ନଥିଲି । ବର୍ତ୍ତମାନ ପାଇଁ ଘନବାବୁଙ୍କ ଘରେ ତିନି ଜଣ ଓ ମୋହନ ବାବୁଙ୍କ ଘରେ ଦୁଇଜଣ ଭାଉଜ ମିଳିଗଲେ । ଭାଉଜମାନେ ସମସ୍ତେ ମେଳାପୀ, ଅହଂକାର ଶୂନ୍ୟ ଓ ଅତ୍ୟନ୍ତ ସ୍ନେହୀ ଥିଲେ । କେତେ ମାସପରେ ଆତ୍ମୀୟତା ପରିପକ୍ୱ ହୋଇ ଆସିବାରୁ ସମସ୍ତେ ମୋତେ ଥଟ୍ଟା କରିବାରେ ଆଦୌ ତ୍ରୁଟି କରୁ ନଥିଲେ । ବିଦେଶର ନୀରସ ଜୀବନ ସେଇ ଥଟ୍ଟା ହସଖୁସି ଯୋଗୁଁ ମୁଁ ଅପାର ଆନନ୍ଦ ପାଉଥିଲି । ଭାଉଜମାନଙ୍କ ଭିତରେ ସବା ସାନଭାଇ ବିଶି ଭାଇନାଙ୍କ ସ୍ତ୍ରୀ ଥଟ୍ଟା ଶୁଣି ମୁଁ ଭିଲିଗ୍ରାମର ରଙ୍ଗନାନୀର ଦ୍ୱିତୀୟ ଅବତାର ମନେ କରିଥିଲି ।

ରାତିରେ ନଟବାବୁ ଓ ମୁଁ ଦୁହେଁ ଗୋଟିଏ ଘରେ ଶୋଇଲୁ । ବହୁ ଦୁଃଖ ସୁଖ ଆଲୋଚନାରେ ହସଖୁସିରେ ରାତିଟି କଟିଗଲା । ୨/୩ ଦିନ ପରେ ନଟବାବୁଙ୍କ

ମୋ ମନକଥା ପ୍ରକାଶ କରି କହିଲି " – ମୁଁ ନରେନ୍ଦ୍ର ପୋଖରୀରୁ ଆସି ଏକ ଦଳଗାଡ଼ିଆରେ ପଶିଯାଇଛି । ମୋତେ ସାହାଯ୍ୟ କଲେ ଏ ଗାଡ଼ିଆର ଦଳସଫା କରି ଏଥିରେ ମଧ୍ୟ ଚନ୍ଦନ ଚାପ ଖେଳାଇବା ସମ୍ଭବ ହୋଇଯିବ ।'' ନଟବାବୁ ମୋତେ ଯଥେଷ୍ଟ ସାହାଯ୍ୟ କରିବାକୁ ସାଗ୍ରହ ସ୍ୱୀକୃତି ପ୍ରଦାନ କରିଥିଲେ । ନଟବାବୁଙ୍କର ଏ ଅକୁଣ୍ଠିତ ସାହାଯ୍ୟ ମୁଁ ଭୁଲି ପାରିନଥିଲି ।

ଇତି ମଧ୍ୟରେ ସ୍କୁଲର ୨ୟ ଶିକ୍ଷକଙ୍କର ବଦଳି ହୋଇ ତାଙ୍କ ସ୍ଥାନରେ ମୋର ଦୂର ସଂପର୍କୀୟ ବନ୍ଧୁ ନରେନ୍ଦ୍ର ନାଥ ନାୟକ ଯୋଗ ଦେଲେ । ବର୍ତ୍ତମାନ ସ୍କୁଲରେ ଆମେ ତିନିଜଣ ଶିକ୍ଷକ ହୋଇଯିବାରୁ ମୁଁ ଆଗକୁ ଆଗକୁ ଚିନ୍ତା କରିବାରେ ଲାଗିଲି । ନଟବାବୁ ନିୟମିତ ସ୍କୁଲକୁ ଆସି ପଢ଼ାଇଲେ ।

ଘନବାବୁ ପୁରୀରୁ ଫେରି ମୋତେ ଡକାଇଲେ ଓ କଅଣ ଦରକାର ବୋଲି ପଚାରିବାରୁ ମୁଁ ଘର ଭିତର ସଫେଇ ସାମ୍ନାରେ ବତାଇ ଏକ ଜାଫ୍ରିବାଡ଼, ଏବଂ ରାସ୍ତାଠାରୁ ସ୍କୁଲ ପର୍ଯ୍ୟନ୍ତ ପ୍ରାୟ ୧୨ ଫୁଟ ଲମ୍ବ ୪ ଫୁଟ ଓସାର ଓ ୮/୯୦ ଇଞ୍ଚ ଉଚ୍ଚର ଏକ ଛୋଟିଆ ରାସ୍ତା ଆପାତତଃ ନିହାତି ଦରକାର ବୋଲି କହିବାରେ ସେ ତାଙ୍କର ପ୍ରିୟସାଙ୍ଗ କଣ୍ଟ୍ରାକ୍ଟର କାଳିନ୍ଦୀ ବାବୁଙ୍କୁ ଡାକି ସବୁକଥା କହିଦେଲେ । ମାତ୍ର ୮ ଦିନ ଭିତରେ ରାସ୍ତାଟିକୁ ଛାଡ଼ି ଅନ୍ୟ ସମସ୍ତ କାର୍ଯ୍ୟ ହୋଇଗଲା ।

କହିବାକୁ ଭୁଲି ଯାଇଛି ଯେ ମୁଁ ପ୍ରତିଦିନ କିଛି ସମୟ ନିୟମିତ ସୂତାକାଟିବାକୁ ପ୍ରତିଶ୍ରୁତିବଦ୍ଧ ଥିଲି । ଗଙ୍ଗାଧର ମହାନ୍ତି ମୋ ଜୀବନର ଗତିପଥ ବଦଳାଇ ଦେଇଥିଲେ । ପ୍ରାୟ କେତେଗୁଡ଼ିଏ ଦିନ ମୁଁ ଆଦୌ ସୂତାକଟା କଥା ଚିନ୍ତା କରିବାକୁ ସମୟ ପାଇନଥିଲି । ଏବେ ମନରେ ସାହସ ଓ ଶାନ୍ତି ଆସିବାରୁ ମୁଁ ପୁଣି ସୂତାକଟା ଆରମ୍ଭ କରିଥିଲି । ପ୍ରତ୍ୟହ ପ୍ରାୟ ୧୫-୨୦ ମିନିଟ୍ ପାଇଁ ।

ଏବେ ସ୍କୁଲର ଛାତ୍ରସଂଖ୍ୟା ବୃଦ୍ଧି ମୋ ପ୍ରଧାନ ଧ୍ୟେୟ ହେଲା । ବ୍ରାହ୍ମଣ ଓ କରଣ ସାହିରେ ପ୍ରାୟ ପ୍ରାରମ୍ଭିକ ଶିକ୍ଷାଲାଭ ପାଇଁ ପିଲା ନଥାନ୍ତି । କେବଳ କରଣ ସାହିରେ ଉଦ୍ୟମ କଲେ କିଛି ମାତ୍ରାରେ ସଫଳତା ମିଳିପାରେ । ଏଇ ଆଶାରେ ମୁଁ ନଟବାବୁଙ୍କ ସହିତ ପରାମର୍ଶ କଲି । ଆମେ ଦୁହେଁ ଦିନେ ସନ୍ଧ୍ୟା ପୂର୍ବରୁ ସେ ସାହିରେ ପହଞ୍ଚି କେତେକ ଲୋକଙ୍କ ସହିତ ଆଲୋଚନା କଲୁ । ସେମାନେ ସମସ୍ତେ କୃଷିକର୍ମ କରନ୍ତି । ନିଜେ ପଢ଼ି ନାହାନ୍ତି କି ପିଲାମାନଙ୍କୁ ପଢ଼ାଇବାରେ ମୁଣ୍ଡ ଖେଳାନ୍ତି ନାହିଁ । ବାରମ୍ବାର ପିଲାଙ୍କୁ ସ୍କୁଲକୁ ପଠାଇବା କଥା କହିବାରେ ଉତ୍ତର ମିଳିଲା, – "ମାଷ୍ଟରବାବୁ । ଚେଷ୍ଟା କରିବୁ । ବର୍ଷକରେ

ତିନିତିନି ଜଣ ଅବଧାନ ଆସି ଚାହାଲି କରିଛନ୍ତି, କିନ୍ତୁ କଅଣ ହେବ ! ଏ ବାଲୁଙ୍ଗା ଛୁଆ ଆସି ଧଣ୍ଡଙ୍କ ପରି ବୁଲିବେ, ପଙ୍କ କାଦୁଅରୁ ମାଛ ଧରିବେ । ପାଣିରେ ବୁଡ଼ିବେ, ଗାଁ ଦାଣ୍ଡରେ ଖେଳରେ ମାତି ସମୟ କଟାଇବେ । ବ୍ରାହ୍ମଣ କରଣ ଘର ପିଲା ପାଠ ପଢ଼ିବାକୁ ଜନ୍ମ ହୋଇଛନ୍ତି । ଆମେ ଖାଲି ବୃଥା ଚେଷ୍ଟା ମୂତରେ ପୋଲୁହ ବୋହୁଛୁ । ମାଛ ମିଳିବେ କୁଆଡୁ ! ଆମେ ସକାଳୁ ଉଠିଲେ ଲଙ୍ଗଳେ ଯାଆନ୍ତି ତୋରାଣି ହେମ କାକରର ମଣିଷ । ୧୨-୧୩ ବର୍ଷ ହୋଇଗଲେ ପିଲାଙ୍କୁ ସାଥିରେ ନେଇ ଚାଷକାମ ଶିଖାଉ । ଆମ ଘର ପିଲା ପାଠ ପଢ଼ିବା ପାଇଁ ଜନ୍ମ ହୋଇ ନାହାନ୍ତି । କଥାରେ ଅଛି, ଚାଟଘର ପୁଅ ଚାଟ ଭାଟ ଘର ପୁଅ ଭାଟ । ଆପଣ ଯାଆନ୍ତୁ ।"

ମନ ମୋର ମଉଳି ଗଲା । ବିଶେଷ କିଛି ଯୁକ୍ତି ତର୍କ ନକରି ଆମେ ଫେରିଆସିଲୁ । ମାତ୍ର ମୁଁ ଆଶାତ୍ୟାଗ କରି ନଥାଏ ।

୫/୬ ଦିନ ପରେ ଦୁହେଁ ପୁଣି ସେହି ସାହିକୁ ଗଲୁ । ସନ୍ଧ୍ୟା ବେଳକୁ ସମସ୍ତେ ଘରେ ଥା'ନ୍ତି । ପୁଣି ଆମକୁ ଦେଖି ମସିଣା ପକାଇ ପାନ ଆଣି ଦେଲେ । ଏହାପରେ ମୁଁ କହିଲି, – "ଭାଇମାନେ ମୋ କଥା ମନ ଦେଇ ଶୁଣନ୍ତୁ । ପଢ଼ାଇବା ନପଢ଼ାଇବା ଆପଣଙ୍କ ଇଚ୍ଛା ଉପରେ ନିର୍ଭର କରେ । ଦେଖନ୍ତୁ, ଲୋକ ଯେତେ ଦରିଦ୍ର, ଦିନ ମଜୁରିଆ ହେଲେ ମଧ୍ୟ ତା ପୁଅଟିକୁ ଠିକ୍ ତାରି ପରି ଦେଖିବାକୁ ଆଦୌ ଇଚ୍ଛା କରେ ନାହିଁ । ପୁଅଟିକୁ ପାଠ ପଢ଼ାଇ ଭଲ ମଣିଷଟିଏ କରି ଦେଖିବାର ଇଚ୍ଛା ସମସ୍ତଙ୍କର ଥାଏ । ଆପଣଙ୍କର ଏକ ଭ୍ରାନ୍ତ ଧାରଣା ଯେ କେବଳ ବ୍ରାହ୍ମଣ, କରଣ ଘରର ପିଲା ପାଠ ପଢ଼ିବା ପାଇଁ ଜନ୍ମ ହୋଇଥାନ୍ତି । କୂଅ ଭିତରର ବେଙ୍ଗ ଭାବୁଥାଏ ଏହା ହିଁ ସଂସାର । ଏହାଠାରୁ ବଳି ବଡ଼ ସ୍ଥାନ ଆଉ ନାହିଁ । ଯଦି ସେଇ ବେଙ୍ଗକୁ ପଦାକୁ କାଢ଼ି ନିଆଯିବ, ତେବେ ସେ ବାସ୍ତବତାକୁ ଉପଲବ୍ଧି କରି ଜାଣିବ ଏ ପୃଥିବୀ କେଡ଼େ ବିରାଟ ଓ ସାମାନ୍ୟ କୂଅଟା ତା ତୁଳନାରେ କିଛି ବି ନୁହେଁ । ପୁନଶ୍ଚ ଆମ ଓଡ଼ିଶାରେ ଛବିଶି ଗୋଟି ଗଡ଼ଜାତ ଅଛି । ଗଡ଼ଜାତର ରାଜାମାନେ ସମସ୍ତେ ଆପଣଙ୍କ ଖଣ୍ଡାୟତ, ଆମ ଶିକ୍ଷା ବିଭାଗର ବଡ଼ ହାକିମ ଭୀମ ରାଉତ ମଧ୍ୟ ଚାଷୀ ପରିବାରର, ମହାତ୍ମା ଗାନ୍ଧୀଙ୍କ ପରି ବିରାଟ ଲୋକ ଜାତିରେ ବଣିଆ, ମଧୁରାଓ, ରାଧାନାଥ ରାୟ ଏମାନେ ବ୍ରାହ୍ମଣ ବା କରଣ ଜାତିର ନୁହନ୍ତି । ଚାଲନ୍ତୁ ନିମାପଡ଼ା ହାଇସ୍କୁଲକୁ ଯିବା । ସେଠାରେ ବୀରିକ, କୁମ୍ଭାର, ମାଳି ଓ ଆପଣଙ୍କ ଜାତିର ଅସଂଖ୍ୟ ପିଲା କେଡ଼େ ଆରାମରେ ପାଠ ପଢୁଛନ୍ତି । ଖାଲି ସେତିକି ନୁହେ, ବାଉରି, କଣ୍ଡରା ଘର ପିଲାମାନେ ମଧ୍ୟ ପାଠ ପଢ଼ି ହାକିମ

ହେଲେଣି । ଖବର କାଗଜ ପଢ଼ିଲେ ସବୁ ଜାଣିବେ । ଆଖି ଫିଟିଯିବ ଆପଣମାନଙ୍କର । ମୋର ଅନୁରୋଧ ପିଲାଙ୍କୁ ପଢ଼ାନ୍ତୁ । କାହା ଭାଗ୍ୟରେ କଅଣ ଅଛି, ଆପଣ କହିପାରିବେ ନାହିଁ । ଆମ ସ୍କୁଲକୁ ଥରେ ବୁଲି ଆସନ୍ତୁ । ସେଠାରେ ଆପଣଙ୍କ ପିଲାମାନେ ସୁରକ୍ଷିତ ରହିବେ, କେହି କାହା ଦେହରେ ଟିପ ଛୁଆଁଇବେ ନାହିଁ । ପଢ଼ାପଢ଼ି ସାଙ୍ଗରେ ଖେଳ ମଧ୍ୟ ନିୟମିତ ଖେଳି ପାରିବେ । ଆଉ ଅଧିକ କିଛି କହିବି ନାହିଁ । ମୋ କଥାକୁ ବିଚାର କରି ପିଲାଙ୍କୁ ଆଉ ଅଧିକ ସମୟ ନଷ୍ଟ ହେବାକୁ ଦିଅନ୍ତୁ ନାହିଁ । ପିଲାଟିଏ ପାଠପଢ଼ି ହିସାବ କରିପାରିବ, ଚିଠି ଲେଖି ପାରିବ, ବହି ପଢ଼ି ପାରିବ, ଆପଣମାନେ ଏସବୁ ଦେଖି ସତରେ କାନ୍ଦି ଉଠିବେ କି ?''

ଆମେ ଫେରି ଆସିଲୁ । ଆଶାଥିଲା - ଆମ ଉଦ୍ୟମ ସଂପୂର୍ଣ୍ଣ ନିଷ୍ଫଳ ହେବ ନାହିଁ । ପୁଣିଥରେ ମଧ୍ୟ ସେହି ସାହିକୁ ଯିବାକଥା ସ୍ଥିର କରି ନେଇଥିଲି ।

ତିନିଜଣ ଶିକ୍ଷକ ହେବାରୁ ମୁଁ ସ୍କୁଲରେ କିଛି ସରଳ ପ୍ରଣାଳୀର ହସ୍ତକର୍ମ ଶିଖାଇବା ଉଦ୍ଦେଶ୍ୟରେ ବେଶ୍ କିଛି ତାଳପତ୍ର ସଂଗ୍ରହ କରିଥିଲି । ସେଥିରେ ପିଲାଙ୍କ ବସିବା ପାଇଁ ପଟି ବୁଣିବା ଶିଖାଇବା ଆରମ୍ଭ କଲି । ଧୀରେ ଧୀରେ ପିଲାମାନେ ଏ କାମଟି ସହଜରେ ଅଭ୍ୟାସ କରି ପାରିଥିଲେ । ଶେଷକୁ ଏପରି ହେଲା ଯେ ପିଲାମାନେ ତାଳପତ୍ର ସଂଗ୍ରହ କରି ଗଦା କରି ଦେଲେ । ନିଜପାଇଁ, ଛୋଟ ପିଲାଙ୍କ ପାଇଁ ଖଣ୍ଡିଏ ଲେଖାଏଁ ପଟି ବୁଣିବା ପରେ ୧୦-୧୫ ଖଣ୍ଡ ବଳକା ହୋଇ ସ୍କୁଲରେ ରଖାଗଲା । ଏହାପରେ ମାଟିରେ ବାଇଗଣ, ଆମ୍ବ, କଦଳୀ, ଆତ ଆଦି ଫଳ ମଧ୍ୟ ତିଆରି କରିବାକୁ ଉତ୍ସାହିତ କରିଥିଲି ।

ଦିନେ କରଞ୍ଜି ସାହିର ୨/୩ ଜଣ ଲୋକ କୌଣସି କାମରେ ଯାଇ ସ୍କୁଲ ଆଗ ଦେଇ ଘରକୁ ଫେରୁଥିବା ବେଳେ ହଠାତ୍ ଫାଟକ ପାଖରେ ଅଟକି ଗଲେ । ମୁଁ ବାହାର ପିଣ୍ଡାରେ ଚଉକିଟିଏ ପକାଇ ବସିଥାଏ । ଚିହ୍ନା ଚିହ୍ନା ଜଣା ପଡ଼ିବାରୁ ଭିତରକୁ ଡାକିଲି । ସେମାନେ ଆସି କହିଲେ, " – ଏତେକଥା କେତେଦିନ ଭିତରେ ହୋଇଗଲା ? ଆଗରୁ ଏଠାରେ ସ୍କୁଲ ଥିଲା । ମାତ୍ର ଏ ବତାବାଡ଼ ଦାଣ୍ଡରୁ ଘରଯାଏ ରାସ୍ତା ହେବା କଥା ଆମେ ଜମା ଜାଣିନଥିଲୁ ।'' ମୁଁ ସେମାନଙ୍କୁ ଘର ଭିତରକୁ ନେଇ କାନ୍ଥର ଫଟୋ, ମଟୋ, ଗଣନକ ଯନ୍ତ୍ର, ମାଟି ଗୋଳି, କାଠି ବିଡ଼ା, ଫିଲ୍‌ଟର ଓ ବାଉଁଶ ର୍ୟାକ୍‌କୁ ଦେଖାଇ ଅନେକ କଥା କହିଲି । ପିଲାଏ ତିଆରି କରିଥିବା ତାଳପତ୍ର ପଟି, ମାଟିର ଫଳମାନ ଦେଖିବା ପରେ ସେମାନେ

ବହୁତ ଖୁସି ହେଲେ । ଡୋଟା ମଝିରେ ପିଲାମାନେ ଖେଳୁଥିବା କଥା ମଧ୍ୟ କହି ମୁଁ ତାଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲି ।

## ମୋ ଉଦ୍ୟମର ପ୍ରଭାବ

କଥାରେ ଅଛି – ସତ୍ ଉଦ୍ୟମ କଦାପି ବୃଥାଯାଏ ନାହିଁ । ଲୋକମାନେ ଫେରିଯିବା ପରେ ମୁଁ ତାଙ୍କ କଥା ଭୁଲି ସ୍କୁଲ କାର୍ଯ୍ୟରେ ମନ ଦେଲି । ଦୁଇ ତିନିଦିନ ପରେ ଦୁଇଟି ପିଲା ଆସିଲେ । ସାଥୀରେ ଥିଲେ ବାପାମାନେ । ସେମାନେ ପଢ଼ିବା କଥା ଶୁଣି ବହୁତ ଖୁସି ହେଲେ । ତାଙ୍କୁ ଦୁଇଟି ଆସନ ଦେଇ ପାଖରେ ବସାଇବା ପରେ ପୂର୍ବଜ୍ଞାନ ପରୀକ୍ଷା କଲି । ପିଲା ଦୁଇଟି ବୟସରେ ୮-୯ ବର୍ଷ ହେଲେ ମଧ୍ୟ ୨ୟ ଶ୍ରେଣୀ ଉପଯୋଗୀ ନୁହନ୍ତି ।

ଅଭିଭାବକଙ୍କୁ ବିଦାକରି ମୁଁ ପିଲା ଦୁହିଁଙ୍କ ସହିତ ଖୁବ୍ ମିଶିବା ପାଇଁ ଚେଷ୍ଟା କଲି । ଅନ୍ୟ ପିଲାମାନେ ମଧ୍ୟ ସେ ଦୁହିଁଙ୍କ ସହିତ ମିଶିଲେ । ଖେଳଛୁଟିରେ ଖେଳିଲେ । ଶ୍ରେଣୀରେ ଗପ ଶୁଣିଲେ । ଛୁଟିପରେ ଘରକୁ ଗଲେ । ସେଇ ପିଲା ଦୁଇଟି ହେଲେ ମୋର ପ୍ରଚାରକ । ମୋତେ ଆଉ କୌଣସି ଉଦ୍ୟମ କରିବାକୁ ପଡ଼ିନାହିଁ । ଧୀରେ ଧୀରେ ୮-୧୦ ଟି ପିଲା ସେଇ ସାହିରୁ ସ୍କୁଲକୁ ଆସିଲେ । ଏମାନେ ପ୍ରତ୍ୟେକେ କିଛି କିଛି ଜାଣିଥିଲେ ମଧ୍ୟ ବୟସ ଦୃଷ୍ଟିରୁ ପାଠରେ ବହୁତ ପଛରେ ଥିଲେ । ତେଣୁ ଏମାନଙ୍କୁ କୌଣସି ନିୟମିତ ଶ୍ରେଣୀରେ ବସାଇବା ସମ୍ଭବପର ହେଲାନାହିଁ । ମୁଁ ବାରଣ୍ଡାରେ ଏକ ନୂଆ ପିଲାଗୁଡ଼ିକୁ ଚାହାଳୀ ପ୍ରଣାଳୀରେ ଶିକ୍ଷାଦେବା ନୀତିକୁ ଗ୍ରହଣ କରିବାକୁ ବାଧ୍ୟ ହେଲି । ପରୀକ୍ଷାରୁ ଅବଗତ ହେଲି କୌଣସି ପିଲାର ଯୋଗ୍ୟତା ଅନ୍ୟ ପିଲା ସହିତ ଆଦୌ ସମାନ ନୁହେଁ। ତେଣୁ ବିଭିନ୍ନ ମନଗଢ଼ା ନିଜସ୍ୱ ପ୍ରଣାଳୀରେ ଶିକ୍ଷା ଦେଇ କିଛିଦିନ ପରେ ସେମାନଙ୍କୁ ବିଭିନ୍ନ ଶ୍ରେଣୀ ଉପଯୋଗୀ କଲି । ପିଲାମାନଙ୍କ ବୟସ ଅଧିକ ହୋଇଯାଇଥିବାରୁ ସେମାନେ ଶୀଘ୍ର ଶୀଘ୍ର ଅଗ୍ରଗତି କରିବେ ଏହି ସମ୍ଭାବନାକୁ ଭିତ୍ତି କରି ମୁଁ ଅଗ୍ରସର ହେଲି । ମୋର ଅଧିକାଂଶ ସମୟ ଏହି ଅନାମିକା (not-admitted ) ପିଲାଙ୍କ ପାଇଁ ବ୍ୟୟିତ ହେଲା । ଆଉ ଅଧିକ ପିଲା ସେ ସାହିରେ ଥିଲେ । ଦିନେ କଥା ପ୍ରସଙ୍ଗରେ ବୁଝିଲି, ଅତି ଗରିବ ଭାରତୀ ପିଲାଟିଏ ଭଲ ପଢୁଥିଲା । ଏବେ ବାହାରେ ବୁଲୁଛି । ତା'ର ବାପ ନାହିଁ । ବିଧବା ମାଆଟିଏ । ଅତି କଷ୍ଟରେ ଚଳୁଛି ।''

ପିଲାଟିର ମାଆ ନାଆଁ ମୁକୁତା ଓ ସେ ବ୍ରାହ୍ମଣ ସାହିରେ ବାସନ ମାଜି

ଧାନକୁଟି ଚଳେ ବୋଲି ପିଲାଙ୍କ ଠାରୁ ବୁଝିଲି । ପିଲାଟି ଭଲ ପଢୁଥିଲା ବୋଲି ଶୁଣି ତା ପାଇଁ କିଛି କରିବାକୁ ମୋ ମନରେ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ସୃଷ୍ଟି ହୋଇଥିଲା

## ମୋ ଜାଣିବାରେ ଭଲକାମଟିଏ କରିଥିଲି

ମୁକୁତା - ମୁକୁତା କିଏ, ସେ କଥା ଏବେ ମୁଁ ଜାଣିଗଲି । ସେ ଦିନେ ଘନବାବୁଙ୍କ ଘରୁ କାମ ସାରି କୁଆଡ଼େ ଯାଉଥିଲା । ଦାଣ୍ଡରେ ଦେଖି ପଚାରିଲି, "- ତୋ ନାଆଁ ମୁକୁତା ?" ସେ କିଞ୍ଚିତ୍ ଅପ୍ରତିଭ ହୋଇ କହିଲା, " - ହଁ ବାବୁ, କାହିଁକି ପଚାରିଲେ ?" ମୁଁ କହିଲି, " -ନାଇଁ କିଛି ନାହିଁ ସେମିତି । ତୋ ସାଙ୍ଗେ ଦି ପଦ କଥାବାର୍ତ୍ତା ହେବାର ଥିଲା । ତରବର ଥିଲେ ପରେ କେତେବେଳେ ଦେଖାହେବ ।" ସେ କହିଲା, " - ବାବୁ କି ଦୁଃଖ କହିବି, ଏ ଅନୋଡ଼ା ଜୀବନଟା ଖାଲି ସବୁବେଳେ ତରବର ହୋଇ କଟୁଛି । ପଚାରନ୍ତୁ କଅଣ ବୁଝିବେ ।"

ମୁଁ - ତୋର ପୁଅଟିଏ ଅଛି ପରା, ସେ କଅଣ କରୁଛି ?

ଉତ୍ତର : ସେ କଥା ପଚାରନ୍ତୁ ନାହିଁ ବାବୁ । ସେ ସତିଆନାଶିଆ ଅଧା ବୟସରେ ମୋତେ ଛାଡ଼ି ସେପୁରକୁ ଚାଲିଗଲା । ଆଉ ମୁଣ୍ଡରେ ନଦି ଦେଇଗଲା ଗୋଟାଏ ଶକତ ବୋଝ । ମୁଁ ମୁଣ୍ଡେଇ ଚାଲି ପାରୁ ନାହିଁ କି ତଳେ ଫୋପାଡ଼ି ପାରୁନାହିଁ । ନିଇତି ମରୁଛି । ସତ କହୁଛି ବାବୁ, ମୋ ଗିରସ୍ତ ମଲାପରେ ମୁଁ ଦିନଟିଏ ହେଲେ ମନପୂରାଇ କାନ୍ଦିପାରି ନାହିଁ । ଘରେ ବସି ବାହୁନିଲେ ଦି ଦିଟା ପେଟରେ ନାତ ମାଡ଼ ହେବ । କି ଦୁଃଖ କହିବି ? ଟୁଆଟା ୮-୯ ବର୍ଷର ହେଲାଣି । ଦାଣ୍ଡରେ ବୁଲି ବାହାର କଳି ଆଣି ଘରେ ପୂରାଉଛି । ଘରକୁ ଗଲେ କାହାକୁ ହାତ ଯୋଡୁଛି । କାହାକୁ ନେହୁରା ହେଉଛି । ମୋ ପିଲାର ଦୋଷ ନଥିଲେ ମଧ୍ୟ କ୍ଷମା ମାଗିବାକୁ ଗୋଡ଼ହାତ ଧରିବାକୁ ବାଧ୍ୟ ହେଉଛି । କାଇଁକି ଜାଣନ୍ତି ବାବୁ - ଗରିବ ମାଇପ ସବୁରି ଶାଳୀ । କୁଅ ବେଙ୍ଗ ପରି ସବୁରି ଟେକାମାଡ଼ ସହିବା ତା କପାଳରେ ନେଖା ହୋଇଛି ।

ପ୍ରଶ୍ନ : ତୁ ଯାହା କହିଲୁ ସବୁ ସତ । ଆଲୋ ତୋ ପୁଅ ପାଠ ପଢୁଥିଲା ପରା ?

ଉତ୍ତର: ସେ କଥା ପଚାରନ୍ତୁ ନାଇଁ ବାବୁ । ଦାଣ୍ଡରେ ହାଟରେ ବୁଲିବାରୁ ତାକୁ ଗାଁ ଚାହାଳୀରେ ବସାଇଲି । ଅବଧାନେ କହିଲେ ତୋ ପୁଅ ଭାରି ମନଟାଣ

ଲୋ ମୁକୁତା, ସେ ଭଲ ପଢ଼ିବ । ଏପରି କଥା ଶୁଣି ସେ ମନ କୁଣ୍ଢେ ମୋଟ ହୋଇଗଲା । କିଭଳି ତାକୁ ଚାହାଳୀ କି ବାଟେଇଲି । ହେଲେ କଅଣ କହିବି ମାଷ୍ଟର ବାବୁ ମୋରି ଦୋଷରୁ ଅବଧାନେ ତାକୁ ଚାହାଳୀରୁ ବାହାର କରିଦେଲେ । ଥରେ ନୁହେ - ବାର ନେହୁରା ହୋଇ ହାତଗୋଡ଼ ଧରି ଦିଥର ପୁଣି ଚାହାଳୀକୁ ପଠାଇଲି । ତିନିଥରକୁ ଧରମ ଛାଡ଼ିଲା । ଅବଧାନେ ମୋ ପୁଅକୁ "ଆଉ ଆସିବୁ ନାହିଁ" କହି ବିଦା କରିଦେଲେ । ସେଇଦିନୁ ସେ ଆଉ ଚାହାଳୀ ଦୁଆର ମୁହଁ ଦେଖିନାହିଁ ବାବୁ । ଅବଧାନଙ୍କର ଜମା ଦୋଷ ନାହିଁ । ସବୁ ଦୋଷ ଏଇ ହିନୀ କପାଳୀର । ମାସକୁ ପାଳିଟିଏ ଆଠଣା ପଇସା ଦେଇ ନପାରି ପୁଅକୁ ମୂରୁଖ କରି ବାଲୁଙ୍ଗା କରିଦେଲି, ବାବୁ ।

ପ୍ରଶ୍ନ : ଏବେ ତୋ ପୁଅ କଅଣ କରୁଛି ?

ଉତ୍ତର : କଅଣ ଆଉ କରିବ ? ବାର ଛତରା ଟୋକାଙ୍କ ସାଥିରେ ମିଶି ଖାଲି ବୁଲୁଛି । ଦିନେ ଦିନେ ତା ଦୁଷ୍ଟାମୀ ଶୁଣି ରାଗ ହୁଏ । ବେଳେ ବେଳେ ତାକୁ ବାଡେଇ ଦିଏ ବାବୁ । ସତ କହୁଛି - ତା ଆଖିରୁ ଲୁହ ବୋହିବା ଆଗରୁ ମୋ ଆଖିପତା ଓଦା ହୋଇଆସେ । ସବୁ ଭୁଲି ତାକୁ କୁଣ୍ଢାଇ ପକାଇ ଗେଲ କରେ । ତା ମନ ବଦଳାଏ । ଢୋକେ ପିଇ ଦଣ୍ଡେ ଜୀଇଁବା କ'ଣ ଜୀବନକୁ ଲେଖା ! ମୁଁ ବାମୁଣ କରଣ ପିଲାଙ୍କୁ ଦେଖି କେତେ ସନ୍ତାପି ନ ହୋଇଛି - କେତେ ସପନ ନଦେଖିଛି ବାବୁ ? ସତ କହୁଛି ବାବୁ । ଗରିବ ଲୋକଙ୍କୁ ସପନ ଦେଖିବାକୁ ମନା । ମୋ ପୁଅର କାନ ସିନା ଅଛି । ନୋଳି ପାଇବି କୋଉଠୁ ? ଏଇ ହେଲା ମୋ ଜୀବନ ।

ପ୍ରଶ୍ନ : ତୋର ଜମିବାଡ଼ି କିଛି ଅଛି କି ? ତୁ କିପରି ଚଳୁଛୁ ଏବେ । ଗିରସ୍ତ ମଲାପରେ ତୋ ଚଳିବା ପାଇଁ କି କି କାମ କରୁଛୁ ?

ଉତ୍ତର : ଜମି ଖଣ୍ଡିଏ ଥିଲା ବାବୁ । ସେ ସତିଆନାଶିଆ ବେମାରୀରୁ ଭଲ ହେବ ବୋଲି ବିକି ଦେଲା । ଏବେ ତ ବାଡ଼ି ଗୋବରେ ଗୋବେ ବି ନାହିଁ । ମେଳା ଡିହଟାରେ କୁଡ଼ିଆ ଖଣ୍ଡେ । ସେତିକି ମାତ୍ର ଅଛି । ବାମୁଣ ସାଇରେ ବାସନ ମାଜି ଧାନକୁଟି ଚଳୁଛି । ଅଧା ପେଟ ଖାଇ ବଞ୍ଚୁଛି । ଖାଲି ଦିଅଁକୁ ଡାକୁଛି । ଆଉ ୩/୪ ବର୍ଷ କଟି ଗଲେ ସେ ବିଲବାଡ଼ିରେ ମୂଲ ଲାଗିବ । ଏଇ ଆଶାରେ ତ ବଞ୍ଚୁଛି ବାବୁ ।

ପ୍ରଶ୍ନ : ତୋ ପୁଅକୁ ପୁଣି ପାଠ ପଢ଼େଇବୁ ?

ଉତ୍ତର : ନାଇଁ ବାବୁ, ଆଉ ସେ କଥା ପଚାରନ୍ତୁ ନାହିଁ । ପାଠ ପଢ଼ିବା ପାଇଁ ସେ ଜନ୍ମ ହୋଇ ନାହିଁ । ଯେଉଁ ମାଆ ମାସକୁ ଅବଧାନଙ୍କୁ ଛାର ପାଳିଟାଏ ଦେଇ ପାରିଲା ନାହିଁ, ସେଇ ମାଆ ପୁଣି ପୁଅକୁ ପାଠ-ପଢ଼ାଇବାର ସପନ ଦେଖିବ। ସେତିକି ଥାଉ ମୁଁ ଯିବି ବାବୁ?

ପ୍ରଶ୍ନ : ହଁ ଯିବୁ, ଆଉ ଦି ମିନିଟ୍ ମାତ୍ର । ଶୁଣ, ଆମ ସ୍କୁଲ ସରକାରଙ୍କର । ଏଠାରେ ମାଷ୍ଟରମାନେ ଦରମା ସରକାରରୁ ପାଇ ପିଲାଙ୍କୁ ମାଗଣା ପଢ଼ାନ୍ତି । ତୁ ଯଦି ତୋ ପୁଅକୁ ଏଠାକୁ ପଠାଇବୁ ଓ ସେ ଭଲ ପଢ଼ିବ, ତେବେ ମୁଁ ତା'ର ସିଲଟ୍, ଖଡ଼ି, ବହି, କଲମ, ଖାତା ଓ ଅନ୍ୟସବୁ ପଢ଼ାଜିନିସ ମାଗଣାରେ ଯୋଗାଇ ଦେବି। ତୁ ତାକୁ ଖଣ୍ଡିଏ ଭଲକରି ଖାଇବାକୁ ଦେବୁ । ଆଉ ସବୁ କଥା ମୁଁ ବୁଝିବି ।

ଉତ୍ତର : ବାବୁ, ଆଜିଯାଏ ମୁଁ କୋଉ ମାଷ୍ଟରବାବୁଙ୍କ ଠାରୁ ଏପରି ପେଟପୂରା କଥା ପଦେ ଶୁଣି ନଥିଲି । ମୁଁ ନିଶ୍ଚେ ତାକୁ ଆଣି ତମରି ପାଖେ ବସେଇବି । ଭଲକରି ଖୁଆଇବା କଥା ଯାହା କହିଲେ:- ମୁଁ ତ ଯାହା ଆଣେ ଯାହା ପାଏ ତା'ର ପେଟକୁ ଚାହିଁଥାଏ । ଶୁଣନ୍ତୁ ବାବୁ, ବାମ୍ଭଣ ସାଇରେ ବାରମାସରେ ତେର ପରବ, କେତେ କେତେ ଫିଷ୍ଟ ହୁଏ । ସବୁଥିରେ ମୁଁ ନୋଡ଼ାପଡ଼େ କାମ ପାଇଁ। ବାବୁଘର ମୋତେ ପିଠା, ପଣା ଭାତ, ତରକାରୀ ଖାଇବାକୁ ବାଢ଼ି ଦିଅନ୍ତି। ସତ କହୁଛି ବାବୁ କେଜାଣି କାହିଁକି ମୋ ପାଟିକୁ ହାତ ଯାଏ ନାହିଁ। ଥରିଲା ହାତରୁ ଗୁଣ୍ଡା ଖସିପଡ଼େ । ବାବୁଆଣୀଙ୍କଠାରୁ ବାସନ ଦିଖଣ୍ଡ ମାଗି ସବୁତକ କାନିରେ ଧରି ଘରକୁ ଆସେ । ହାତ ଅଧୁଆ ପାଟି ଅଧୁଆ ସେଇ ପରି ଭାବରେ ସେ ଖାଇବାରେ ଲାଗି ଯାଏ । ମୁଁ ଠିଆହୋଇ ତା ମୁହଁକୁ ଚାହି ରହିଥାଏ । ବାବୁ, ତା ପେଟ ଯେତିକି ଯେତିକି ପୂରି ଉଠୁଥାଏ, ମୋ ଖାଲି ପେଟ ମୋତେ ପୂରିଗଲା ପରି ଜଣା ପଡୁଥାଏ ।

ମୁକୁତା ଚାଲିଗଲା ସତ; ମାତ୍ର ମୋତେ ଭାବନାର ଅଥଳ ସମୁଦ୍ରରେ ଉବୁଟୁବୁ କରିଦେଇ ଗଲା । ଭାବିଲି ମୁକୁତାର ଜୀବନ କାହାଣୀ ଏକ ଉପନ୍ୟାସର କଥାବସ୍ତୁ ହେବା ଯୋଗ୍ୟ । କୌଣସି ଔପନ୍ୟାସିକ ଏହି ନିଚ୍ଛକ ସତ୍ୟ ଉପରେ ଆଧାରିତ କାହାଣୀ ଶୁଣିଲେ ଏହାକୁ ତାଙ୍କ ଉପନ୍ୟାସର ଭିତ୍ତିଭୂମି ରୂପେ ଗ୍ରହଣ କରି ଖୁବ୍ ପ୍ରଶଂସା ପାଇବେ ସତ । ମାତ୍ର ଅଭାଗିନୀ ମୁକୁତା ପାଇବ କଅଣ ? ଧନ୍ୟ ଏଇ ସୃଷ୍ଟି। ଧନ୍ୟ ସର୍ବ ନିୟନ୍ତାଙ୍କ ବିଚିତ୍ର ବିଚାର । ଏ ଦୁନିଆରେ

ଅଗଣିତ ମୁକୁତା ପ୍ରତିଦିନ ଅସହ୍ୟ ନିଷ୍ପେଷଣର ଶିକାର ହୋଇ ଅକାଳରେ ଝରି ପଡୁଛନ୍ତି । କାହାକୁ ସମୟ ଅଛି ଏଇ ମୁକୁତା ପରି ଅସହାୟାମାନଙ୍କ ପାଇଁ ଆହା ପଦେ କହିବାକୁ ।

ମୁକୁତା ଚାଲିଗଲା ସତ; ମାତ୍ର ତା'ର ଚଳଣି, ତା'ର ବଞ୍ଚିବାର ଶୈଳୀକୁ ମୁଁ କାହା ସହିତ ତୁଳନା କରିବି ଏଇ ଚିନ୍ତାରେ ମୋର ଅନେକ ସମୟ କଟିଗଲା । କିନ୍ତୁ ମୋ ମନ ମୁକୁରରେ ଯେଉଁ ଛବିଟି ସୃଷ୍ଟି କରି ଦେଇଗଲା, ମୁଁ ତାକୁଇ ପାଥେୟ କରି ଏ ପର୍ଯ୍ୟନ୍ତ ତା'ର କାରୁଣ୍ୟଭରା ଜୀବନ ଉପନ୍ୟାସକୁ ମନେ ପକାଇବାରେ ଲାଗିଲି ।

କହିବା ନିଷ୍ପ୍ରୟୋଜନ ଯେ ମୁକୁତା ତହିଁ ଆର ଦିନ ତା ପୁଅକୁ ଆଣି ମୋ ନିକଟରେ ଛାଡ଼ି ଦେଇଗଲା । ମୁଁ ତାକୁ ପଠନ ଓ ଲିଖନ ଉପକରଣ ଅନ୍ୟ ପିଲାଙ୍କ ଠାରୁ ଯୋଗାଇ ଦେଲି । ପିଲାଟିର ବୁଦ୍ଧି ଖୁବ୍ ପ୍ରଖର ଥିବା କଥା ଜାଣିପାରି ମୁଁ ତା ପାଇଁ କିଛି କରିବାକୁ ସଂକଳବଦ୍ଧ ହୋଇଥିଲି । ଅଧିକ ସମୟ ଦେଇ ତାକୁ ଦ୍ୱିତୀୟ ଶ୍ରେଣୀ ଉପଯୋଗୀ କଲି । ସେ ଦ୍ୱିତୀୟ ଶ୍ରେଣୀରେ ଭଲ ନମ୍ବର ରଖିଲା ଓ ମୁଁ ତାକୁ ୩ୟରେ ପ୍ରଥମ ପ୍ରବେଶ କରାଇଲି ।

ପିଲାଟିର ଉତ୍ତୋରତ୍ତର ଅଗ୍ରଗତି ମୋତେ ଯଥେଷ୍ଟ ଆଶାୟୀ କରିପକାଇଥିଲା । ମୁଁ ନିଜେ ତାକୁ ସକାଳେ ଓ ରାତିରେ ସ୍କୁଲକୁ ଆଣି ଟିଉସନ କଲି । ତା'ର ପଢ଼ା ପାଇଁ ଯାହା ଯାହା ଉପକରଣ ଆବଶ୍ୟକ ସବୁ ମୁଁ ଯୋଗାଇଥିଲି ।

ଏ ଅଧ୍ୟାୟର ପରିସମାପ୍ତି ଘଟାଇବା ଉଦ୍ଦେଶ୍ୟରେ ଏତିକି କହିଲେ ଯଥେଷ୍ଟ ହେବ ଯେ ମୁକୁତାର ପୁଅ - ଭାରତୀ ୧୯୪୨ ମସିହାରେ ଆମ ସ୍କୁଲର ତୃତୀୟ ଶ୍ରେଣୀରେ ପ୍ରଥମ ପ୍ରବେଶ (first admission) କରି ଅତ୍ୟନ୍ତ ସୁନାମର ସହିତ ନି.ପ୍ରା. ବୃତ୍ତି ଲାଭ କରିଥିଲା । ପ୍ରଭୁଙ୍କ ଅପାର କରୁଣାରୁ କୁଲି ଗେଣ୍ଡାଟିଏ ଶଙ୍ଖ ପାଲଟି ଗଲା । ଏ ପିଲା ହେଲା ମୋର ଦ୍ୱିତୀୟ ବୃତ୍ତିଛାତ୍ର । ୪୦ ମସିହାରେ ଜଣେ କରଣ କି ବ୍ରାହ୍ମଣ ପିଲା ବୃତ୍ତି ପ୍ରାପ୍ତ ହୋଇଥିଲା - ତା ନାଁ ମନେ ପଡୁନାହିଁ ।

ବହୁଦିନ ପରେ ପ୍ରାଥମିକ ଶିକ୍ଷକ ସଂଘର ସମ୍ପାଦକ ଦାୟିତ୍ୱରେ ଥାଇ ନିମାପଡ଼ାର ଏକ ମିଟିଂରେ ମୁଁ ଉକ୍ତ - ଭାରତୀ ଓ ବିଜୁରାମ ପ୍ରଧାନ ( କରଞ୍ଜସାହି ବିଷ୍ଣୁପୁର)ଙ୍କ ସହିତ ଦେଖାହେଲା । ଖୁବ୍ ଆନନ୍ଦିତ ହୋଇଥିଲି । ଦୁହେଁ ସି.ଟି.

ଟ୍ରେନିଂ ପରେ ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ଶିକ୍ଷକତା କରୁଛନ୍ତି । ମନେ ମନେ ଚିନ୍ତା କଲି - ବିଷ୍ଣୁପୁରରେ ମୋର ଛାତ୍ର ଥିବା ପିଲାମାନେ ଡାକ୍ତର, ଇଂଜିନିୟର, ପ୍ରଶାସକ, ରାଜନେତା ହୋଇଥିଲେ ମଧ୍ୟ ବେଶୀ ସଂଖ୍ୟାର ଛାତ୍ର ସେମାନଙ୍କ ବାଲ୍ୟଗୁରୁଙ୍କ ପଦାଙ୍କ ଅନୁସରଣ କରିଥିଲେ । ମୋ ପିଲାମାନଙ୍କର ଏ ପ୍ରକାର ଉନ୍ନତିରେ ମୁଁ ଖୁବ୍ ଆତ୍ମସନ୍ତୋଷ ଲାଭ କରିଥିଲି ।

## ମୋର ପୁଆଣି ଘର

ମୋର ବିବାହ ୧୯୩୯ ମସିହାରେ ହୋଇଥିବା କଥା ଆଗରୁ ଉଲ୍ଲେଖ କରିଛି ଓ ସେ ବିବାହ ଏକ କୁଣ୍ଡେଇ ବିବାହ ପରି ଥିଲା ବୋଲି ମଧ୍ୟ କହିଛି । ବର୍ତ୍ତମାନର ଏ ପୁଆଣି ଘର ଅନ୍ୟ ଏକ ଅନୁଭୂତି । 'ବିବାହ' ଶବ୍ଦଟି ଶାଶ୍ୱତ ମହିମାରେ ତିଷ୍ଠି ରହିଛି ଓ ରହିବ ନିଶ୍ଚୟ । ମାତ୍ର ଏ ଅଜବ 'ପୁଆଣି' ଶବ୍ଦଟି ବର୍ତ୍ତମାନ ସଂପୂର୍ଣ୍ଣ ରୂପେ ଜନମାନସରୁ ଲୋପ ପାଇ କେବଳ ଅଭିଧାନର ଏକ ଅବ୍ୟବହୃତ ଶବ୍ଦ ଭାବରେ ରହିଯାଇଛି । ସେ ସବୁର ବିଶଦ ଆଲୋଚନା ଏଠାରେ ପ୍ରାସଙ୍ଗିକ ନଥିବାରୁ ଏକ ସ୍ୱତନ୍ତ୍ର ଅଧ୍ୟାୟରେ 'ବିବାହ ଓ ପୁଆଣି' ସମ୍ପର୍କରେ ଆଲୋଚନା କରିବାକୁ ମନସ୍ଥ କରିଛି ।

ବାପାଙ୍କ ଠାରୁ ଚିଠି ମିଳିଲା; – ଅମୁକ ତାରିଖରେ ବୋହୂ ଆସିବା ସ୍ଥିର ହୋଇଛି । ତୁ ୧୫ ଦିନ ଛୁଟି ନେଇ ଆସିବୁ । ଏ ଖବର ଜଣାଇ ଅଯଥା ଭାଉଜମାନଙ୍କ ହାସ୍ୟରସର ଶିକାର ହେବାକୁ ମୁଁ ଆଦୌ ଇଚ୍ଛା କରୁ ନଥିବା ବେଳେ ବାର୍ତ୍ତାଟି ଅଳ୍ପ ସମୟ ମଧ୍ୟରେ ସବୁ ଭାଉଜ ଜାଣିଗଲେ । ମାଧ୍ୟମ ଥିଲେ ନଟବାବୁ । ଫଳ ଯାହା ହେଲା ତାହା ଅତ୍ୟନ୍ତ ଉପଭୋଗ୍ୟ ହେଲେ ମଧ୍ୟ ବର୍ଣ୍ଣନା କରି ହେବ ନାହିଁ । ବହୁ ଶାଣିତ ଶରରେ ବିଦ୍ଧ ହେଉଥିଲେ ମଧ୍ୟ, ମୃଦୁ ହାସ୍ୟ ବ୍ୟତୀତ ମୋ ପାଟିରୁ କଥାବାହାରୁ ନଥିଲା ।

ମୁଁ ସାତଦିନ ଛୁଟି ନେଇ ଗଲି । ୮ମ ଦିନ ଆସି ସ୍କୁଲରେ ପହଞ୍ଚି ଦେଖିଲି ଟ୍ରଙ୍କ ଚାବିଟି ମୋ ପକେଟରେ ରହି ଯାଇଛି । ଘରେ ନୂଆ କରି ପାଦ ଦେଇଥିବା ମଣିଷଟି ନିଶ୍ଚୟ ହଇରାଣ ହେବ ଭାବି ୪ଟା ପରେ ପୁଣି ଘରକୁ ଗଲି ଚାବିଟି ଦେଇ ଆସିବାକୁ । ଏ ଖବର ମଧ୍ୟ ଅଛପା ରହି ନଥିଲା । ତହିଁ ପରଦିନ ପୁଣି ନାନା କୌତୂକପୂର୍ଣ୍ଣ ଦ୍ୱି-ଅର୍ଥ ବୋଧକ ବାକ୍ୟ ଶୁଣି ଶୁଣି ମୁଁ ଖାଇ ପାରିନଥିଲି । ଏବେ ଭାବୁଛି - ହସଖୁସି, ଥଟ୍ଟା ମଜା, ରଙ୍ଗ ରହସ୍ୟ ଝଂଜାଳମୟ ମଣିଷ ଜୀବନକୁ ରସାଣିତ କରିଥାଏ । ଗତାନୁଗତିକ ରୁଟିନ୍ ନିର୍ଦ୍ଦିଷ୍ଟ ଜୀବନକୁ

ସରସ, ସୁନ୍ଦର କରି ଗଢ଼ିବାରେ ହାସ-ପରିହାସର ଏକ ପ୍ରମୁଖ ଭୂମିକା ଅନସ୍ୱୀକାର୍ଯ୍ୟ। ଏହା ମୁଁ ଉତ୍ତମ ଭାବରେ ଉପଲବ୍ଧି କରିଛି ।

୧୯୪୧ ମସିହା ବେଳକୁ ଘନବାବୁ, ମୋହନ ବାବୁ, ଭଦିବାବୁ, ବିଶି ଭାଇନା, କେଶବ ଭାଇନା ଏବଂ କରଣ ସାହିର କ୍ଷେତଭାଇ, ନେତ ଭାଇ ଓ ଆନନ୍ଦ ଭାଇଙ୍କ ପିଲାମାନଙ୍କର ତୃତୀୟ ଶ୍ରେଣୀ ପାଠ ଶେଷ ହୋଇ ଆସିଥାଏ । ଯେଉଁମାନଙ୍କ ସରି ଯାଇଥାଏ, ସେମାନେ ନିମାପଡ଼ା ଯାଇ ୪ର୍ଥରେ କିଏ ବା ୫ମରେ ଅଧ୍ୟୟନ କରୁଥାନ୍ତି । ମୁଁ କାର୍ଯ୍ୟାନୁରୋଧରେ ବାରମ୍ବାର ନିମାପଡ଼ାର ମଠ, ଡାକ୍ତରଖାନା ଓ ଉ.ପ୍ରା. ସ୍କୁଲକୁ ଯାଇଥାଏ । ନିମାପଡ଼ା ମଡ଼େଲ ଉ.ପ୍ରା.ସ୍କୁଲଟି ବଜାରର ଶେଷ ପ୍ରାନ୍ତରେ ଏକ ନିରୋଳା ପରିବେଶରେ ଥାଏ । ପ୍ରଶସ୍ତ ଶ୍ରେଣୀଗୃହ, ବିରାଟ ହତା ସହିତ ଏକ ଉତ୍କୃଷ୍ଟ ପୁଷ୍କରଣୀ ସ୍କୁଲଟିକୁ ସରସ ସୁନ୍ଦର କରିଥାଏ । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଅବସ୍ଥିତି ଓ ପରିବେଶ ବେଶ୍ ଅନୁକୂଳଥିଲେ ମଧ୍ୟ ସମସ୍ତ ଶିକ୍ଷକ ସ୍ଥାନୀୟ ହୋଇଥିବାରୁ ସେମାନେ ସମସ୍ତେ ଘନବାବୁଙ୍କ ଭାଷାରେ ଶିକ୍ଷାଦାତା ନହୋଇ କର୍ମଚାରୀର କର୍ତ୍ତବ୍ୟ ତୁଲାଉଥାନ୍ତି ମାତ୍ର । ଏହିପରି ଏକ ଉନ୍ନତ ମାନର ସ୍କୁଲରେ କାର୍ଯ୍ୟ କରିବାର ଏକ ଅହେତୁକ ବାସନା ମୋ ମନରେ ଜାଗ୍ରତ ହୋଇ ଉଠିଥିଲା ।

## ଭାଗ୍ୟ ହୋଇଥିଲେ ରୁଚି ଅନୁକୂଳ

୧୯୪୨ ମସିହା ପ୍ରାରମ୍ଭରେ ନିମାପଡ଼ା ପ୍ରାକ୍ଟିସିଂ ଉ.ପ୍ରା.ର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଅଜୀବ ମିଶ୍ରଙ୍କ ପରଲୋକ ହୋଇଗଲା । ସ୍କୁଲର ୨ୟ ଶିକ୍ଷକ ଶ୍ରୀଯୁକ୍ତ ଉଦୟନାଥ ଆଚାର୍ଯ୍ୟ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କଲେ ଓ ତାଙ୍କ ସ୍ଥାନ ଅର୍ଥାତ୍ ୨ୟ ଶିକ୍ଷକ ପଦବୀଟି ଖାଲି ରହିଲା । ଏହି ପଦବୀ ପାଇଁ ଡିଷ୍ଟ୍ରିକ୍ଟ୍ ବୋର୍ଡ଼ ଚେୟାରମେନ୍ ଇଣ୍ଟରଭିଉ ମାଧ୍ୟମରେ ଜଣେ ଉପଯୁକ୍ତ ଶିକ୍ଷକଙ୍କୁ ଉକ୍ତ ସ୍ଥାନରେ ନିଯୁକ୍ତି ଦେବେ - ଏଥିପାଇଁ ଆଶାୟୀ ଶିକ୍ଷକମାନେ ଆବେଦନ କରିବାରେ ଲାଗିଲେ। ମୁଁ ଏଥିପାଇଁ ଆବେଦନ କରିଥିଲେ ମଧ୍ୟ ମୋର ସ୍ୱଳ୍ପ ଚାକିରି କାଳ (ଅଭିଜ୍ଞତା) କୁ ବିଚାରକୁ ନେଇ ମୁଁ ନିଜେ ସନ୍ଦୀହାନ ହୋଇ ପଡ଼ିଥିଲି । ଆଚାର୍ଯ୍ୟଙ୍କ ସହିତ ପରାମର୍ଶ କରିବାରେ ସେ ମୋ ପାଇଁ ଚେୟାରମେନ୍‌ଙ୍କୁ କହି ନିଶ୍ଚୟ କିଛି କରିବେ ବୋଲି କହିଥିଲେ ମଧ୍ୟ ମୁଁ ପୂରା-ଆସ୍ଥାବାନ ହୋଇ ପାରୁନଥାଏ ।

ମୁଁ ନିମାପଡ଼ା ଯିବାକଥା ଶୁଣି ନଟବାବୁ ଗୋଟିଏ ଭିତିରି କଥା କହିଲେ। ଘନବାବୁ ଓ ଡିଷ୍ଟିଟ୍ ବୋର୍ଡ଼ ଚେୟାରମେନ ଜଗନ୍ନାଥ ରଥ ପରସ୍ପର ସମ୍ମୁଦି ନହେଲେ

ମଧ୍ୟ ସେଇ ନାମରେ ଉଭୟେ ଉଭୟଙ୍କୁ ସମ୍ବୋଧନ କରନ୍ତି ଏବଂ ସେମାନଙ୍କର ମଧ୍ୟରେ ଘନିଷ୍ଠତା ନିବିଡ଼ ଥାଏ । ଏତିକି ସୂତ୍ର ପାଇବା ପରେ ମୁଁ ଉମା ଭାଉଜ (ଘନବାବୁଙ୍କ ସ୍ତ୍ରୀ)ଙ୍କୁ ମୋ ମନକଥା ଜଣାଇଲି । ଭାଉଜ ବିଷର୍ଣ୍ଣ ହେବା ପରିବର୍ତ୍ତେ ହୃଷ୍ଟ ଚିତ୍ତରେ କହିଲେ, "ଭଲ ହୁଅନ୍ତା । ମୁଁ ଭାଇନାଙ୍କୁ କହିବି । ତାପରେ ତୁ କଥାଭାଷା କରିବୁ ।'' ମୁଁ କିୟତ୍ ପରିମାଣରେ ଆଶ୍ୱସ୍ତ ହେଲି । ଆଶା-ଲତାଟି ମୋର ଆଉଟିକିଏ ଆଗକୁ ଲଟେଇ ଗଲା ।

୩/୪ ଦିନ ପରେ ଭାଇନା ପୁରୀରୁ ଫେରିଲେ । ରାତିକୁ ଭାଉଜ ଘନବାବୁଙ୍କୁ ମୋ କଥା କହିବା ସହିତ ଆହୁରି ଜଣାଇ ଦେଲେ ଯେ, " ଆମ ପିଲାମାନେ ପ୍ରାୟ ସମସ୍ତେ ନିମାପଡ଼ାକୁ ପଢ଼ିବାକୁ ଗଲେଣି । କାଶୀ ନିମାପଡ଼ା ଗଲେ ନିଶ୍ଚୟ ପିଲାମାନଙ୍କ ପଢ଼ାପଢ଼ି ପ୍ରତି ଦୃଷ୍ଟି ଦେବ ।'' ଭାଉଜ ମୋର ନିମାପଡ଼ା ଯିବା କଥା ଶୁଣି କୌଣସି ପ୍ରତିକୂଳ ପ୍ରତିକ୍ରିୟା ପ୍ରକାଶ ନକରି ବରଂ ହୃଷ୍ଟ ହୋଇବା ମୂଳରେ ତାଙ୍କର ପ୍ରଚ୍ଛନ୍ନ ସ୍ୱାର୍ଥ ନିହିତ ଥିଲା । ଘନବାବୁ ମୋ ସହିତ କଥାଭାଷା ହେବେ କହି ଉମା ଭାଉଜଙ୍କୁ ବିଦା କରିଦେଲେ ।

ପୁନଶ୍ଚ ପୁରୀଯିବା ପୂର୍ବରୁ ଘନବାବୁ ମୋ ସହିତ କଥାଭାଷା ହେଲେ । ମୁଁ ଅତ୍ୟନ୍ତ ଆଗ୍ରହୀ ଥିବା ଲକ୍ଷ୍ୟ କରି କହିଲେ, " - ମୁଁ ରଥବାବୁଙ୍କ ସହିତ (ଚେୟାରମେନ୍) ଆଲୋଚନା କରି ତାଙ୍କର ମତାମତ ଅବଗତ ହେବା ପରେ ଜଣାଇବି ।''

ମୁଁ ଏକାନ୍ତ ଆଶାୟୀ ହୋଇ ପ୍ରତୀକ୍ଷା କରିଥାଏ । ଆଉ ବିଷ୍ଣୁପୁରର ମୋହ ମୋତେ ବାନ୍ଧିରଖି ପାରୁନଥାଏ । କେବେ କଅଣ ହେବ ଏହି ଚିନ୍ତାରେ ମୁଁ ନିଜକୁ ହଜାଇ ଦେଇଥାଏ । ମଝିରେ ଉମା ଭାଉଜ ପୁରୀ ଯିବା ଦରକାର ପଡ଼ିବାରୁ ଯାଇଥିଲେ । ସମୁଦୀଙ୍କ ସହିତ ସାକ୍ଷାତ କରି ମୋ କଥା ମଧ୍ୟ କହିଥିଲେ । ଫେରିବା ପରେ ମୋତେ ଏ ସଂପର୍କରେ କୌଣସି ସୂଚନା ମଧ୍ୟ ଦେଇନଥିଲେ । ନିମାପଡ଼ା ପ୍ରାକ୍ଟିସିଂ ଉ.ପ୍ରା.ରୁ ଖବର ମିଳିଲା ଚେୟାରମେନ୍ ଇଣ୍ଟରଭିଉ ତାରିଖ ସର୍କଲ ସବ୍-ଇନ୍ସପେକ୍ଟରଙ୍କୁ ଜଣାଇଦେଲେଣି । ଆଚାର୍ଯ୍ୟେ ମଧ୍ୟ ମୋ ପାଖକୁ ଖବର ଦେଇଦେଲେ । ନିର୍ଦ୍ଦିଷ୍ଟ ଦିନ ଯେତିକି ପାଖେଇ ଆସୁଥାଏ, ମୋ ହୃତ୍‌ସ୍ପନ୍ଦନ ବଢ଼ିବଢ଼ି ଯାଉଥାଏ । ମୋର ସବୁପ୍ରକାର ପ୍ରଶ୍ନର ସଠିକ୍ ଉତ୍ତର ଦେବାର ମନୋବଳ ଦୃଢ଼ଥିଲେ ମଧ୍ୟ ମୋର ବୟସ ଚାକିରୀର ବରିଷ୍ଠତା ଭିତ୍ତିରେ ମୁଁ ସର୍ବନିମ୍ନ ସ୍ଥାନରେ ରହିଯିବି । ବୟସ ୨୨ ବର୍ଷ ଓ କାର୍ଯ୍ୟକାଳ ମାତ୍ର ପାଞ୍ଚବର୍ଷ (ଟ୍ରେନିଂ ପରେ) ଏଇ ଦୁଶ୍ଚିନ୍ତା ମୋର ମୁଣ୍ଡବ୍ୟଥାର କାରଣ ହୋଇଥାଏ ।

ଶେଷରେ ବହୁ ପ୍ରତୀକ୍ଷିତ ଦିନଟି ଉପସ୍ଥିତ ହେଲା । ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ଲିଷ୍ଟ ଅନୁସାରେ କ୍ରମାନୁସାରେ ପ୍ରୟାସୀ ପ୍ରାର୍ଥୀମାନଙ୍କୁ ଡକାଗଲା । ସର୍କଲ ଇନ୍‌ସପେକ୍ଟର ସମସ୍ତଙ୍କ ବିଷୟରେ ନୋଟ୍ କରୁଥନ୍ତି । କେତେଜଣଙ୍କ ପରେ ମୋର ପାଳି ପଡ଼ିଲା । ମନେ ଅଛି, ପ୍ରଶ୍ନରେ ମୋର ବାସସ୍ଥାନ, କେଉଁ କେଉଁ ସ୍ଥାନରେ ଚାକିରୀ କରିଛ, ଟ୍ରେନିଂ ପାଶ୍ କରିଥିବା ମସିହା, ବର୍ତ୍ତମାନ କାର୍ଯ୍ୟ କରୁଥିବା ବିଦ୍ୟାଳୟ ଓ ସର୍ବଶେଷରେ ବର୍ତ୍ତମାନ ବୟସ ଏହିସବୁ ବିବରଣୀର ମୁଁ ଉତ୍ତର ଦେଇଥିଲି । ଉଦୟନାଥ ଆଚାର୍ଯ୍ୟ ସର୍କଲ ଇନ୍‌ସପେକ୍ଟରଙ୍କ ନିକଟରେ ବସିଥାନ୍ତି । ସେ ସମୟରେ ଓ୍ୟାହେଦ୍ ଅଲିସା ସକର୍ଲ ଇନ୍‌ସପେକ୍ଟର ଥିଲେ ବୋଲି ମନେ ପଡୁଛି । ପ୍ରାର୍ଥୀମାନଙ୍କୁ ବିଦାୟ କରି ଦିଆଗଲା । ଆଚାର୍ଯ୍ୟ, ସକର୍ଲ ଇନ୍‌ସପେକ୍ଟର ଓ ଚେୟାରମେନ୍ ମିଳିତ ଭାବରେ କିଛି ଆଲୋଚନା କରିଥିଲେ । ସେ ସଂପର୍କରେ ଆମେ କେହି କିଛି ଜାଣିବାର ଅବକାଶ ନଥିଲା । ସନ୍ଧ୍ୟା ପୂର୍ବରୁ ମୁଁ ବିଷ୍ଣୁପୁରରେ ପହଞ୍ଚ ଯାଇଥିଲି । ମନରେ ସରସତା ନଥାଏ । ମୋହନ ବାବୁଙ୍କ ସହିତ ଇଣ୍ଟରଭିଉ କଥା କହିବା ବେଳେ ମୋର କାର୍ଯ୍ୟକାଳର ବରିଷ୍ଠତା ନାହିଁ ବୋଲି କହିଲି । ମାତ୍ର ସେ କହିଲେ, " ଅନେକ ପ୍ରଶ୍ନ ଭିତରୁ ବରିଷ୍ଠତା ମାତ୍ର ଗୋଟିଏ ପ୍ରଶ୍ନ । ଆବଶ୍ୟକ ହେଲେ ବରିଷ୍ଠତାକୁ ଉପେକ୍ଷା କରାଯାଇଥାଏ । ସେଥିପାଇଁ ଖୁବ୍ ବେଶୀ ଚିନ୍ତିତ ହେବା ଆବଶ୍ୟକ ନାହିଁ । ଧୈର୍ଯ୍ୟର ସହିତ ଅପେକ୍ଷା କର ।''

ରାତିରେ ଖାଇସାରି ନଟବାବୁ ଓ ମୁଁ ଶୋଇବାକୁ ଗଲୁ । ଶୋଇବା ପରେ ନଟବାବୁ କହିଲେ, " - ଆପଣ ତ ନିମାପଡ଼ା ଗଲେ । ମୁଁ ଏଠାରେ ଏକୁଟିଆ କିପରି ରହିବି । ମୋତେ ଆଦୌ ଭଲ ଲାଗିବ ନାହିଁ ।'' ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି , "- ନଟବାବୁ, ଆଜି ଇଣ୍ଟରଭିଉ ସରିଛି ମାତ୍ର । ଆପଣ ଏତେ ଆଗରୁ ଅତ୍ୟନ୍ତ ଆଶାବାଦୀ ହୋଇ ପଡ଼ିଥିବା ଦେଖି ମୋର ଗାଁ ମାଇପେ କହୁଥିବା ଏକ ଢ଼ଗ ମନେ ପଡ଼ିଗଲା । କହନ୍ତି - ମୂଳରୁ ମାଇପ ନାହିଁ । ବାପ ପୁଅର ନାଁ ଗୋପାଳିଆ ଦେଇ ସାରିଲାଣି । ପୁଣି ଶୁଣନ୍ତୁ, " ପୁଅ ନାହିଁ, ପୁଅ ପେଟରେ ପୁଅର ବାପ ଖଜୁ ଗଢ଼ାଉଛି ବନମାଳୀପୁର ହାଟରେ । ଏ ଦୁଇଟି ଯାକ ଢ଼ଗ ଆପଣଙ୍କ ଅଦ୍ଭୁତ ସମ୍ଭାବନାର ଯଥାର୍ଥ ଉତ୍ତର ନୁହେଁ କି ?''

ଆଶ୍ଚର୍ଯ୍ୟ କଥା, ସେ ତତ୍‌କ୍ଷଣାତ୍ କହିଲେ, " - ପୁଅ ଆଜି ଜନ୍ମନେଇ ସାରିଲାଣି । ଖଜୁ ଗଢ଼ାଇବା ଆଗରୁ ଆମ ପରି ଗାଁ ବାଲାଙ୍କୁ ଆଗ ମିଠାଇ ଖାଇବାକୁ ଦିଆଯାଉ ।'' ଘଟଣାଟି ସଂପର୍କରେ ଏକାନ୍ତ ଉତ୍ସୁକତା ପ୍ରକାଶ କରିବାରୁ

ସେ କହିଲେ, " - ଆପଣ ଇଣ୍ଟରଭିଉକୁ ଗଲେ । ଉମା ଭାଉଜ ଆପଣଙ୍କ ନିଯୁକ୍ତି ସଂପର୍କରେ ହୋଇଥିବା ପୂର୍ବ ବ୍ୟବସ୍ଥା କଥା ମୋତେ ଗୋପନରେ କହି ଏହାକୁ ଏକାନ୍ତ ଗୋପନୀୟ ରଖିବାକୁ କହିଥିଲେ । ଆପଣଙ୍କ ଆଗ୍ରହାତିଶଯ୍ୟ ଆଗରେ ସେ ଗୋପନୀୟତା ରକ୍ଷାକରିବା ସମ୍ଭବପର ହେଲା ନାହିଁ। ଏଥର ଗଭୀର ପ୍ରଶାନ୍ତିର ନିଦ ଶୋଇଯାନ୍ତୁ । ଉମା ଭାଉଜଙ୍କ କଥା ବେଦର ଗାର ମନେ କରନ୍ତୁ।" ସତରେ ମୋ ମନରେ ଉଠୁଥିବା ଝଡ଼ ହଠାତ୍ ଶାନ୍ତ ହୋଇ ଆସିଲା । ମୁଁ ଶୋଇ ପଡ଼ିଲି। ଉମା ଭାଉଜ ନଟବାବୁଙ୍କୁ କହିଥିବା କଥା ମୋତେ ଆଦୌ କହି ନଥିଲେ। ମୁଁ ମଧ୍ୟ କଥାର ସତ୍ୟତା ଉପରେ ସଂପୂର୍ଣ୍ଣ ଆସ୍ଥା ସ୍ଥାପନ କରି ପାରୁନଥାଏ । ସବୁ ପୂର୍ବପରି ଚାଲିଲା ।

\+ + + +

୧୯୪୨ ମସିହା ଏପ୍ରିଲ୍ ମାସରେ ସର୍କଲ ଇନ୍ସପେକ୍ଟରଙ୍କ ଅଫିସରୁ ଆଦେଶ ଆସିଲା ମୁଁ ନିମାପଡ଼ା ମଡ଼େଲ୍ ଉ.ପ୍ରା.ରେ ଯୋଗ ଦେବି । ତା ପୂର୍ବରୁ ନିତ୍ୟାନନ୍ଦ ମହାନ୍ତି ନାମ ଜଣେ ଶିକ୍ଷକଙ୍କୁ ଚାର୍ଜ ଦେବାକୁ ହେବ । କବିଙ୍କ ଭାଷାରେ - 'କିଏ ସୁଖୀ ନୁହେ ଆଶା ହୋଇଲେ ସଫଳ' ଚିର-ପୋଷିତ ବାସନା ଚରିତାର୍ଥ ହେବାରେ ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲି ।

## ଦୂରରୁ ପର୍ବତ ସୁନ୍ଦର ଦିଶେ

ଏହି ଉକ୍ତିଟିର ସତ୍ୟତା ମୁଁ ନିମାପଡ଼ା ମଡ଼େଲ ଉ.ପ୍ରା.ରେ ଯୋଗଦାନ କରିବା ପରେ ପରେ ହିଁ ଉପଲବ୍ଧି କରିଥିଲି । ବାସ୍ତବରେ ଦୂରରୁ ପର୍ବତର ସୌନ୍ଦର୍ଯ୍ୟ ଅନିର୍ବଚନୀୟ ଓ ଏକାନ୍ତ ମନୋମୁଗ୍ଧକର ହୋଇଥାଏ । ନବୋଦିତ ବାଳସୂର୍ଯ୍ୟର କନକକିରଣ ମେଘାବୃତ୍ତ ଶିଖର ଦେଶରେ ପ୍ରତିବିମ୍ବିତ ହୋଇ ଅପୂର୍ବ ବର୍ଣ୍ଣ ବିଭା ସୃଷ୍ଟି କରେ । ବେଳେ ବେଳେ ପର୍ବତଗାତ୍ରସ୍ଥ ସବୁଜ ବନାନୀ ଏକ ସୁବିଶାଳ ଛତ୍ରର ଭ୍ରମ ସୃଷ୍ଟି କରିଥାଏ । ଦିବାବସାନ ସମୟରେ ଶିଖର ଦେଶରେ ବିଶ୍ରାମ କରିଥିବା ମେଘମାଳ ଅସ୍ତାଚଳଚୁମ୍ବୀ ଶ୍ରାନ୍ତକ୍ଳାନ୍ତ ତପନଙ୍କ ଅସ୍ତରାଗରେ ଅନୁରଂଜିତ ହୋଇଉଠେ, ସେତେବେଳେ କବି ବା ଭାବୁକଙ୍କ ସହିତ ସାଧାରଣ ଦର୍ଶକର ମନ ଏକ ସ୍ୱର୍ଗୀୟ ପ୍ରଶାନ୍ତିରେ ପୂରି ଉଠିଥାଏ ।

ମାତ୍ର ଦୂରରୁ ସୁନ୍ଦର ଦେଖା ଯାଉଥିବା ଏହି ପର୍ବତର ପାଦ ଦେଶରେ ପହଞ୍ଚିଲେ ଦେଖିବାକୁ ମିଳେ ଇତସ୍ତତଃ ବିକ୍ଷିପ୍ତ ଅବିନ୍ୟସ୍ତ ଅପର୍ଯ୍ୟାପ୍ତ ଛୋଟ ବଡ଼

ଶିଳାଖଣ୍ଡ । ଚାରିଆଡ଼ କଣ୍ଟା ଝଣ୍ଟାରେ ପରିପୂର୍ଣ୍ଣ । ରହି ରହି ଡାଇନାମାଇଟ୍‌ର ବିସ୍ଫୋରଣ, ଖଣି ଖାଦାନର ଚଳଚଞ୍ଚଳତା, ମୋରମ ଉତ୍ତୋଳନ, ପର୍ବତର ପାଦ ଦେଶରେ ଚିପସ ତିଆରିର ବିକଟ ଚିତ୍କାର ପରିବେଶକୁ ବ୍ୟସ୍ତ ବ୍ୟାକୁଳ କରିବା ସହିତ ସବୁଜ ସୁନ୍ଦର ପର୍ବତ ଗାତ୍ରକୁ ସ୍ଥାନକୁ ସ୍ଥାନ ଖଣ୍ଡିତ କରାଯାଉଛି ନିତିପ୍ରତି ।

ବହୁତ ଅବତାରଣା ବା ଗୌରଚନ୍ଦ୍ରିକ ଅପ୍ରାସଙ୍ଗିକ ଜାଣି ମଧ୍ୟ ମୁଁ ଉପର ଲିଖିତ ଧାଡ଼ି କେତୋଟି ଲେଖିବାକୁ ବାଧ୍ୟ ହୋଇଛି ।

ନିମାପଡ଼ା ମଡ଼େଲ ଉ.ପ୍ରା.ରେ ଯୋଗଦାନ କଲି । ପ୍ରଧାନ-ଶିକ୍ଷକ ଓ ଅନ୍ୟ ଶିକ୍ଷକମାନେ ଆନନ୍ଦିତ ହେଲେ । ପ୍ରଶସ୍ତ ଶ୍ରେଣୀଗୃହ, ଆବଶ୍ୟକ ପରିମାଣର ଉପକରଣ, ଶିକ୍ଷକ ସଂଖ୍ୟା, ହତା ମଧ୍ୟରେ କୂପ, ସ୍କୁଲ ଗୃହ ପଛପଟେ ଏକ ସୁନ୍ଦର ପୁଷ୍କରିଣୀ ଓ ସ୍କୁଲ ଗୃହ ମଧ୍ୟରେ ପର୍ଯ୍ୟାପ୍ତ ବ୍ୟବଧାନ, ଅଫିସ ଗୃହ । ପଶ୍ଚିମ ଦିଗରେ ଏକ ହଲ ପରି ଅବ୍ୟବହୃତ କୋଠରୀଟିଏ । ଏଥିରେ କିଛି ଭଙ୍ଗା ଉପକରଣ ଆଦି ସଂରକ୍ଷିତ ମାତ୍ର ଅବ୍ୟବହୃତ ଅବସ୍ଥାରେ ପଡ଼ିରହିଛି । ଯଥେଷ୍ଟ ଜମି ଓ ଜଳସେଚନର ସୁବିଧା ଥାଇ ମଧ୍ୟ ସୁନ୍ଦର ବଗିଚାଟିଏ କରିବା ପାଇଁ କେହି ଉଦ୍ୟମ କରି ନାହାନ୍ତି । ପଞ୍ଚମ ଶ୍ରେଣୀକୁ ଛାଡ଼ିଦେଲେ ଅନ୍ୟ କୌଣସି କୋଠରୀରେ ଫଟୋ ବା ମଟୋ ଦୃଷ୍ଟିଗୋଚର ହୁଏ ନାହିଁ । ପ୍ରଥମ ଶ୍ରେଣୀରେ ଛାତ୍ରଛାତ୍ରୀ ସଂଖ୍ୟା ନିମ୍ନତମ ଆବଶ୍ୟକତାଠାରୁ ଊଣା । ଏଠାରେ ମୁଁ ଜଣେ ନବନିଯୁକ୍ତ ଶିକ୍ଷକ । ପ୍ରାକ୍ଟିସିଂ ସ୍କୁଲର ସୁନାମକୁ ବ୍ୟବହାର କରି ବିଦ୍ୟାଳୟଟି ତିଷ୍ଠି ରହିଥିଲେ ମଧ୍ୟ ଏହି ମଡ଼େଲ ଉ.ପ୍ରା. ମାନ୍ୟତା ହରାଇ ବସିଛି । ଏହା ଦୂର ପର୍ବତ ପରି ସୁନ୍ଦର ମାତ୍ର ଏହାର ଅଭ୍ୟନ୍ତରର ଦୃଶ୍ୟ ଅତୀବ ନାରଖାର । ୧ମ ଶ୍ରେଣୀରେ କିଛିହେଲେ ଶିକ୍ଷୋପକରଣ ନାହିଁ , ମାତ୍ର ଅଧ୍ୟାପନା ଚାଲିଛି । ବିଭିନ୍ନ ସୂତ୍ରରୁ ଅବଗତ ହେଲି ଅବ୍ୟବହୃତ ଶ୍ରେଣୀ କକ୍ଷଟି ସେକ୍ସନ ରୂପେ ବହୁଦିନ ବ୍ୟବହୃତ ହେଉଥିଲା । ମାତ୍ର ପ୍ରାୟ ପାଞ୍ଚବର୍ଷ ଅବଧି ଛାତ୍ର ସଂଖ୍ୟା ଦୃଷ୍ଟିରୁ ସେକ୍ସନର ଆବଶ୍ୟକତା ନାହିଁ । ତେଣୁ କୋଠରୀଟି ପ୍ରଶସ୍ତ ଥିଲେ ମଧ୍ୟ ଶୂନ୍ୟ ରହି ନୀରବ ଅଶ୍ରୁମୁଞ୍ଚନକୁ ପାଥେୟ କରି ପଡ଼ିରହିଛି । ଶିକ୍ଷକମାନେ ସମସ୍ତେ ସ୍ଥାନୀୟ ଓ ଗୃହ କାର୍ଯ୍ୟରେ ବ୍ୟସ୍ତ । ସମସ୍ତେ ଦରମାଭୋଗୀ କର୍ମଚାରୀର ଦାୟିତ୍ୱ ତୁଲାଇବାକୁ ଚେଷ୍ଟା କରନ୍ତି । ମାତ୍ର କେହି ଜଣେ ନିଷ୍ଠାପରକର୍ତ୍ତବ୍ୟ ନିଷ୍ଠ ଶିକ୍ଷକ ଭାବରେ ନିଜକୁ ପରିଚିତ କରାଇବାକୁ ଆଦୌ ପ୍ରୟାସ କରନ୍ତି ନାହିଁ । ଅତୀତର ପ୍ରାକ୍ଟିସିଂର ସୁନାମର ବିନିମୟରେ ଅନୁଷ୍ଠାନଟି ଆପେ ଆପେ ବଞ୍ଚିଥିଲେ ମଧ୍ୟ ଧୀରେ ଧୀରେ ରୁଗ୍‌ଣ ହୋଇ ଆସିଲାଣି । ସୁବିସ୍ତୃତ ହତା ଆଦୌ ସୁରକ୍ଷିତ ନୁହେ । ବିଦ୍ୟାଳୟ ସମ୍ମୁଖରେ ସୁଦୃଶ୍ୟ ଫାଟକଟିଏ ନାହିଁ ।

ସ୍କୁଲ ସମୟ ମଧ୍ୟରେ ବାହାରର ପୁରୁଷ, ସ୍ତ୍ରୀ ଓ ପିଲାମାନେ ଅବାରିତ ଭାବରେ ହତା ମଧ୍ୟ ଦେଇ ପଛପଟ ପୋଖରୀରୁ ଯଥେଚ୍ଛା ବ୍ୟବହାର କରିଥାନ୍ତି ।

ଯେଉଁ ଅନୁଷ୍ଠାନରେ କାର୍ଯ୍ୟକରି ମୁଁ କେବଳ ଅଧ୍ୟାପନାରେ ନିଜକୁ ନିୟୋଜିତ କରିବି, ସ୍କୁଲଟି ସଂଗଠିତ, ସରସ, ସୁନ୍ଦର ପ୍ରାଣବନ୍ତ ହୋଇଥିବାରୁ ଅନ୍ୟ କୌଣସି କାର୍ଯ୍ୟ ପାଇଁ ପରିଶ୍ରମ କରିବାକୁ ପଡ଼ିବ ନାହିଁ ଭାବି ଆନନ୍ଦିତ ଥିଲି ମାତ୍ର ଏ ଦୂର ପର୍ବତ ମୋତେ ଅତି ସୁନ୍ଦର ମହାକାଳ ଫଳ ପରି ପ୍ରତୀତ ହେଲା । ମୋ ହାତଗଢ଼ା ଭିଲିଗ୍ରାମ, ମୋ ପରିଶ୍ରମର ଫଳ ବିଷ୍ଣୁପୁର କଥା ଚିନ୍ତା କରି ମୁଁ ମ୍ରିୟମାଣ, ବିଷର୍ଣ୍ଣ ହୋଇ ଉଠିଲି । ଏ ସ୍ଥାନରେ ସବୁଥାଇ କିଛି ନଥିବାର ଅନୁଭୂତି ମୋତେ ବ୍ୟସ୍ତ ବିବ୍ରତ କରିବାରେ ଲାଗିଲା ।

ମୁଁ ନିରୁପାୟ । ଏ ସ୍ଥାନରେ ସଂପୂର୍ଣ୍ଣ ନୂଆ । ମୁଁ ମଧ୍ୟ ବିଷ୍ଣୁପୁରରୁ ପ୍ରତ୍ୟହ ଏଠାକୁ ଯିବା ଆସିବା କରୁଛି । ଶିକ୍ଷକମାନଙ୍କ ସହ ଘନିଷ୍ଠତା ସୃଷ୍ଟି ହୋଇପାରି ନାହିଁ । କିଛି ନଥିବା ଅନୁଷ୍ଠାନକୁ କିଛି ଥିବା ଅନୁଷ୍ଠାନରେ ପରିଣତ କରିବାରେ ମୋର ଅଭିଜ୍ଞତା ଅଛି । ମାତ୍ର ସବୁଥିବା ଅନୁଷ୍ଠାନରେ କିଛି ନଥିବାର ଶୂନ୍ୟତା ମୋତେ ଆଶ୍ଚର୍ଯ୍ୟ ଲାଗିଲା ।

ମନ ସମ୍ଭାଳି ହେଲା ନାହିଁ । ଦିନେ ଆଚାର୍ଯ୍ୟଙ୍କ ସହିତ ଆଲୋଚନା ପାଇଁ ଅଫିସକୁ ଗଲି । ଗୋଟି ଗୋଟି କରି ସମସ୍ତ ଅନୁଭବକୁ ନିଖୁଣ ଭାବରେ ପ୍ରକାଶ କଲି । ସବୁ ଶୁଣିବା ପରେ ସେ କହିଲେ, " – ତୁମ ଅନୁମାନ, ତୁମ ଧାରଣା ଶତ ପ୍ରତିଶତ ସତ୍ୟ । ମୁଁ ସ୍କୁଲ ଦାୟିତ୍ୱ ନେବା ବେଶୀ ଦିନର ନୁହେ । ମୋ ପୂର୍ବରୁ ପ୍ରଧାନ ଶିକ୍ଷକ ସୁଯୋଗ୍ୟ ସତ; ମାତ୍ର ସେ ବିଦ୍ୟାଳୟର ଉନ୍ନତି ବା ପ୍ରଗତି ପାଇଁ ଆଦୌ ସମୟ ଦେଇ ପାରନ୍ତି ନାହିଁ । ସେ ଜଣେ ଦକ୍ଷ କବିରାଜ ଓ ସେହି ନାମରେ ହିଁ ପରିଚିତ ଥିଲେ । ସକାଳଠାରୁ ରାତି ପର୍ଯ୍ୟନ୍ତ ସେ ରୋଗୀଙ୍କ ସହିତ ସଂପର୍କଶୀଳ । ତେଣୁ ଧୀରେ ଧୀରେ ବିଦ୍ୟାଳୟଟି ଅବକ୍ଷୟ ଅଭିମୁଖୀ ହୋଇ ଆସୁଛି । କଅଣ କରି ପାରିବି ! ସମସ୍ତେ ତ ସ୍ଥାନୀୟ, କାହାକୁ କି ଦାୟିତ୍ୱ ଦେଇ ବିଦ୍ୟାଳୟର ପୂର୍ବପ୍ରତିଷ୍ଠା ଫେରାଇବି କହ ?'' ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଜଣେ ପ୍ରଧାନ ଶିକ୍ଷକଙ୍କର ଏ ଅକ୍ଷମଣୀୟ ଅସମର୍ଥତା । କିଛି ନକହି ନୀରବ ରହିଲି । କେବଳ ଗୋଟିଏ ମଜବୁତ୍ ଫାଟକ କରିଦେବା ପାଇଁ ଅନୁରୋଧ କରିଥିଲି । ସୁଖର କଥା ସ୍ଥାୟୀ ଇଟା ଖୁଣ୍ଟରେ କାଠର ଫାଟକଟିଏ ଅଳ୍ପ ଦିନରେ ସେ ଲଗାଇ ଦେଇଥିଲେ ।

ଆଚାର୍ଯ୍ୟ ମହାଶୟ ଜଣେ ଆଦର୍ଶ ସଂଗଠକ । ଲୋକଙ୍କୁ ଶିକ୍ଷକମାନଙ୍କୁ ଅନୁପ୍ରାଣିତ କରିବାରେ ସେ ଏକ ଯାଦୁକର । ତାଙ୍କ ଭାଷଣ ଅତ୍ୟନ୍ତ ପ୍ରାଣସ୍ପର୍ଶୀ । ସେ ଏକ ନିର୍ଭୀକ ସମାଲୋଚକ ମଧ୍ୟ ଥିଲେ । ମାତ୍ର ଜଣେ ଶିକ୍ଷକ ଭାବରେ ନିଜକୁ ପ୍ରତିପାଦିତ କରିପାରି ନଥିଲେ । ତାଙ୍କର ଲକ୍ଷ୍ୟ ଥିଲା ଶିକ୍ଷକମାନଙ୍କୁ ସଂଗଠିତ କରିବେ। ପ୍ରାଥମିକ ଶିକ୍ଷକ ଜାତିର ସ୍ୱାଭିମାନ ଫେରାଇବା ସହିତ କେହି ତାଙ୍କୁ ଶୋଷଣ କରିବା କିମ୍ବା ବେଠି ଖଟାଇବା ପରି ନିନ୍ଦନୀୟ କାର୍ଯ୍ୟ କରାଇବାକୁ ସାହସ କରିବେ ନାହିଁ । ତେଣୁ ସୁଯୋଗ ପାଇଲେ ସେ ଚାକିରି ଛାଡ଼ି ନିଜର ସମଗ୍ର ସମୟ ବିନିଯୋଗ କରି ସଂଗଠନରୂପୀ ମନ୍ଦିରର ଆମଳକୀ ଶିଳା ସ୍ଥାପନ କରିବେ। ଏ କଥା ସେ ମୋତେ ୧୯୩୭ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ ପ୍ରଥମ ଶିକ୍ଷକ ସମାବେଶର ଅବସାନ ପରେ ରାତ୍ରିରେ ପ୍ରକାଶ କରିଥିଲେ।

ଏକଥା ସତ ଯେ ନିମାପଡ଼ାର ସ୍ଥାନୀୟ ଲୋକ ହିସାବରେ ତାଙ୍କର ବେଶ୍ ପ୍ରତିଷ୍ଠା ଓ ସମ୍ମାନ ଥିଲା ।

ମୁଁ ନିଜେ ଏ ଦିଗରେ କିଛି କରିବା ପାଇଁ ଚିନ୍ତା କଲି । ନିମାପଡ଼ାରେ ସ୍ଥାୟୀ ଭାବରେ ନ ରହିଲେ ଯାବତୀୟ କଳ୍ପନା କଳ୍ପନାରେ ହିଁ ରହିଯିବ । ତେଣୁ ବଜାରରେ ଭଡ଼ାଘର, କେଉଁ ଅଫିସ ଦାୟିତ୍ୱରେ ଥିବା ବଙ୍ଗଳା ଘର, କିମ୍ବା ବଜାରରେ ଥିବା ଦୁଇଟି ମନ୍ଦିର ପରିସରରେ ଅନୁସନ୍ଧାନ କରିବାକୁ ସ୍ଥିର କଲି ।

ନଟବାବୁ ମୋର ବହୁତ ଆଗରୁ ନିମାପଡ଼ା ସହିତ ସୁପରିଚିତ । ତାଙ୍କ ସହିତ ଆଲୋଚନା କଲି । ସେ ମୋତେ କହିଲେ, "ସେ ସବୁ ଚିନ୍ତା ଛାଡ଼ । ବଜାରରେ ଅମଲାପଡ଼ାରେ ଏକ ଆଶ୍ରମ ଅଛି । ସେଠାରେ ସନ୍ନ୍ୟାସୀ ହୋଇ ରହିବା ପାଇଁ ଉଦ୍ୟମ କର । ଉକ୍ତ ଆଶ୍ରମ ଏକ କଂଗ୍ରେସ ଆଶ୍ରମ । ତାହା ଘନବାବୁଙ୍କ ପୂର୍ଣ୍ଣ କର୍ତ୍ତୃତ୍ୱାଧୀନ। ପହିଲେ ଉମା ଭାଉଜଙ୍କ ସହ କଥାହୁଅ । ତା ପରେ ଅନ୍ୟ କଥା ଚିନ୍ତା କରିବା।''

ରାତିରେ ଭାଉଜଙ୍କ ସହିତ ଆଲୋଚନା କରିବାରେ ସେ କହିଲେ, "ବାହାରେ କାହାଘରେ ରହିବା ତ ସୁବିଧା ହେବ ନାହିଁ। ମୁଁ ଭାବୁଛି ତୁ ନିମାପଡ଼ାରେ ରହିଲେ ଆମ ପିଲାତକ ଆଉ ଯିବା ଆସିବା କରନ୍ତେ ନାହିଁ। ତୋ ପାଖରେ ରହି ପଢ଼ନ୍ତେ। ବ୍ୟସ୍ତ ହୁଅନା, ଭାଇନା ଆସନ୍ତୁ । କ'ଣ କରାଯାଇପାରିବ ବୁଝି କରି ମୁଁ କହିବି ।'' କିନ୍ତୁ ଆଶ୍ରମର ନାଁ ଧରି ନଥିଲେ । ଯା ଭିତରେ ଆଠଦିନ ବିତିଗଲା । ଉ.ପ୍ରା. ସ୍କୁଲର ଖାଲି ପଡ଼ିଥିବା ହଲ୍‌ପରି ଘରଟି କଥା ଚିନ୍ତା କଲି ।

ମାତ୍ର ତାହା ନିମାପଡ଼ା ବଜାରର ଉପାନ୍ତ ଅଞ୍ଚଳରେ ସେଠାରେ ଏକାକୀ ରହିବା ସୁବିଧାଜନକ ନୁହେଁ । ମୁଁ ବହୁତ ବ୍ୟସ୍ତ ହେବାରେ ଲାଗିଲି । ମାତ୍ର ମୋ ଆୟତ୍ତରେ କିଛି ନଥିଲା ।

\+ \+ \+ \+

ଘନବାବୁ ଆସିଲେ । ଭାଉଜ ତାଙ୍କ ସହିତ ଆଲୋଚନା କରି ମୁଁ ଓ ତାଙ୍କ ପରିବାରର ପିଲାମାନେ ସମସ୍ତେ ( ୬/୭ ଜଣ) ମୋ ସହିତ ଆଶ୍ରମରେ ରହିଲେ । ସେଠାରେ କୂଅଟିଏ ଥିଲା । ରୋଷେଇ ପାଇଁ ବାସନ କିଣା ହେଲା । ପିଲାମାନେ ନିମାପଡ଼ା ଆସିବାରୁ ନଟବାବୁଙ୍କର ବିଷ୍ଣୁପୁରରେ ରହିବାର ଆବଶ୍ୟକତା ନଥିଲା । ସେ ମଧ୍ୟ ଆଶ୍ରମରେ ରହିଲେ । ଭଲ ରାନ୍ଧି ଜାଣିଥିବାରୁ ରୋଷେଇ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ରହିଲା । ମୁଁ ପିଲାମାନଙ୍କ ପଢ଼ା ଦେଖିଲି, ନଟବାବୁ ପୂଜାରୀ ପାଲଟି ଗଲେ । ଏଥିରେ ସେ ଅତ୍ୟନ୍ତ ଖୁସି ଥିଲେ ମଧ୍ୟ ।

ଆଶ୍ରମର ଅବସ୍ଥିତି ଓ ପରିବେଶ ବେଶ୍ ଶାନ୍ତିପ୍ରଦ ଥିଲା । ବାହାରର କୋଳାହଳ ଆଦୌ ନଥିଲା । ଆଶ୍ରମର ଠିକ୍ ପୂର୍ବଦିଗରେ ହାଇସ୍କୁଲ ଶିକ୍ଷକ ବ୍ରଜବାବୁ ସପରିବାର ରହୁଥିଲେ । ଏତଦ୍‌ବ୍ୟତୀତ ବହୁ ଜଣାଶୁଣା ଲୋକ ଏ ଅମଲାପଡ଼ାରେ ବସବାସ କରୁଥିଲେ । ମୁଁ ନିୟମିତ ସୂତା କାଟିବାକୁ ପୂର୍ବରୁ ପ୍ରାୟ ଭୁଲି ଯାଇଥିଲେ ମଧ୍ୟ ଗଙ୍ଗାଧର ବାବୁଙ୍କୁ ସେ ମହତ୍ ଉପଦେଶ ମୋତେ ବାରମ୍ବାର ଦଂଶନ କରୁଥାଏ । ସୂତାକଟା, ସମାଜପଢ଼ା ଓ ଖଦଡ଼ ବ୍ୟବହାର ପାଇଁ ମୋତେ ଏକପ୍ରକାର ଶପଥ କରାଇ ନେଇଥିଲେ ସେ । ବିବେକ ସେଇ କଥାଗୁଡ଼ିକୁ ମୋତେ ବାରମ୍ବାର ଚେତାଇ ଦେଉଥାଏ ।

୧୯୪୨ ଜୁନ୍ ମାସ ଅଧାରେ ଗ୍ରୀଷ୍ମଛୁଟି ହୋଇ ଜୁଲାଇ ୨ ବା ୩ ତାରିଖରେ ଖୋଲିଲା । ପିଲାମାନେ ଆସିଲେ । ନଟବାବୁ ଆସି ପହଞ୍ଚି ଥିଲେ ଆଗରୁ । ପିଲାଙ୍କ ସହିତ ପୂଜାରୀଟିଏ ଆଣି ନଟବାବୁ ବିଷ୍ଣୁପୁରରୁ ଆସିଥିଲେ । ଏଥର ସମସ୍ତଙ୍କ ଖାଇବା କଥା ବୁଝିବା ଦାୟିତ୍ୱ ପୂଜାରୀ ଉପରେ ନ୍ୟସ୍ତ ରହିଲା । ମୁଁ ସ୍କୁଲରୁ ୫ମ ଶ୍ରେଣୀ ପିଲାଙ୍କର ବିଭିନ୍ନ ଖାତା ଆଣି ରାତିରେ ସଂଶୋଧନ କଲି ।

ମି.ଇ. ଅଧ୍ୟୟନ ସମୟ ରୁ ହିଁ ମହାତ୍ମା ଗାନ୍ଧି, ଭାରତ ମାତା, ସ୍ୱାଧୀନତା, ସତ୍ୟ ଅହିଂସା ଓ ଗ୍ରାମ ସ୍ୱରାଜ୍ୟ ବିଷୟରେ ବହୁ କଥା ଶୁଣି ମୁଁ ସଂପୂର୍ଣ୍ଣ ଗାନ୍ଧିଙ୍କ ପ୍ରଦର୍ଶିତ ପଥକୁ ସର୍ବଶ୍ରେଷ୍ଠ ବୋଲି ମୋ ଅବଚେତନ ମନରେ ସ୍ଥାନ ଦେଇ ସାରିଥିଲି ।

ଭିଳିଗ୍ରାମର ଗଙ୍ଗାଧର ମହାନ୍ତିଙ୍କ ପ୍ରୋତ୍ସାହନ ଓ ସାହାଯ୍ୟ ମୋର ଅବଚେତନ ମନରେ ଛପି ରହିଥିବା ଧାରଣାକୁ ଦୃଢ଼ୀଭୂତ କରିଥିଲା । ବିଷ୍ଣୁପୁରରେ ଘନବାବୁ ଓ ମୋହନ ବାବୁଙ୍କ ସାନ୍ନିଧ୍ୟ ପୂରା ଗାନ୍ଧିବାଦୀ ଭାବରେ ତିଆରି କରିଦେଇ ଥିଲା । ଗଙ୍ଗାଧର ବାବୁ, ଘନ ବାବୁ ଏବଂ ମୋହନବାବୁ ପ୍ରତ୍ୟେକେ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟର ଛାତ୍ର ଓ ବିଶିଷ୍ଟ କଂଗ୍ରେସ କର୍ମୀ ଗୋପବଂଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ ଓ ସେମାନଙ୍କ ପ୍ରଭାବ ମୋ ଉପରେ ପ୍ରତିବିମ୍ବିତ ହେଉଥିଲା । ତେଣୁ ପ୍ରକାଶ୍ୟରେ ନହେଲେ ମଧ୍ୟ ସ୍ୱାଧୀନତାପ୍ରେମୀ ଜାତୀୟବାଦୀ ବ୍ୟକ୍ତିମାନଙ୍କର ମୁଁ ଥିଲି ଜଣେ ଦୃଢ଼ ସମର୍ଥକ । ମୁଁ ରହୁଥିବା ଆଶ୍ରମର ନାମ ଥିଲା କଂଗ୍ରେସ ଆଶ୍ରମ । ମଧ୍ୟେ ମଧ୍ୟେ ଏଠାକୁ ଦିନ ବେଳେ ଜାତୀୟବାଦୀ ବ୍ୟକ୍ତି ବିଶେଷଙ୍କ ସମାଗମ ହୋଇଥାଏ । ସେମାନଙ୍କ ଉପସ୍ଥିତି ଓ ଆଲୋଚନା ପାଇଁ ଆଶ୍ରମର ଦ୍ୱାର ସର୍ବଦା ଉନ୍ମୁକ୍ତ ଥାଏ ।

## ଆଶ୍ରମର ଉତ୍ପତ୍ତି ଓ ବର୍ଗୀକରଣ

ବୈଦିକ ଯୁଗରୁ ଆମ ଜନ୍ମଭୂମି ଭାରତବର୍ଷରେ ଆଶ୍ରମର ପ୍ରଥମ ପ୍ରକାଶ ହୋଇଥିଲା । ପରେ ପରେ ସଭ୍ୟତା ଓ ପ୍ରଗତିର ରଥଚକ୍ରର ଗତି ସହିତ ସମତାଳରେ ବିଭିନ୍ନ ପ୍ରକାରର ଯଥା - ସିଦ୍ଧାଶ୍ରମ, ଯୋଗାଶ୍ରମ, କନ୍ୟାଶ୍ରମ, ସେବାଶ୍ରମ, କୁଷ୍ଠାଶ୍ରମ, ଅନାଥାଶ୍ରମ ସହିତ ବିଭିନ୍ନ ବାବାଙ୍କ ନାମରେ ନାନା ସ୍ଥାନରେ ଆଶ୍ରମ ମାନ ଗଢ଼ି ଉଠିଲା ।

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତ ମାତାକୁ ଶୃଙ୍ଖଳମୁକ୍ତ କରିବା ଉଦ୍ଦେଶ୍ୟରେ ବଜ୍ର-ଶପଥ ନେଇଥିବା ମହାନ୍ ଜାତୀୟ ନେତାମାନଙ୍କ ଦ୍ୱାରା ସ୍ଥାନେ ଗଢ଼ିଉଠିଲା ଏକ ସ୍ୱତନ୍ତ୍ର ଧରଣର ଆଶ୍ରମମାନ । ଏଗୁଡ଼ିକ ଥିଲା କଂଗ୍ରେସ ସଂଗଠନର ଭିତ୍ତିଭୂମି । ଏଇ କଂଗ୍ରେସ ଆଶ୍ରମଗୁଡ଼ିକ ଭାରତ ମାଟିରେ ସ୍ୱାଧୀନତାର ସଂଜୀବନୀ ମନ୍ତ୍ର ପ୍ରଚାରର ପ୍ରାଣକେନ୍ଦ୍ରରୂପେ ଦିନକୁ ଦିନ ବିଦେଶୀ ସରକାରଙ୍କର ଦାରୁଣ ମୁଣ୍ଡବ୍ୟଥାର କେନ୍ଦ୍ରବିନ୍ଦୁରୂପେ ବିବେଚିତ ହେଉଥିଲା ।

ହଠାତ୍ ମହାତ୍ମା ଗାନ୍ଧୀଙ୍କର ଶେଷ ଅହିଂସା ଅସ୍ତ୍ର କୁଇଟ୍ ଇଣ୍ଡିଆ ବା ଭାରତ ଛାଡ଼ର ମନ୍ତ୍ର ଆହ୍ୱାନ । ଏହି ବାଣୀ ଯାଦୁମନ୍ତ୍ର ପରି ଆକୁମାରୀ ହିମାଚଳ ସମଗ୍ର ଭାରତ ଭୂଖଣ୍ଡର କୋଟି କୋଟି ନରନାରୀଙ୍କୁ ଉନ୍ମାଦ କରିବାରେ ଲାଗିଲା । ମୁଁ ଥିଲି ନିମାପଡ଼ା ଅଞ୍ଚଳର କଂଗ୍ରେସ ଆଶ୍ରମର ଅଧିବାସୀ । ପୁନଶ୍ଚ ଏହା ଥିଲା ଥାନାଠାରୁ ମାତ୍ର କେତେ ଗଜ ଦୂରରେ । ଏଠାକୁ ଆଗରୁ କଂଗ୍ରେସ କର୍ମୀମାନେ

ମଧ୍ୟେ ମଧ୍ୟେ ଆସୁଥିଲେ ମଧ୍ୟ ଅଗଷ୍ଟ ମାସରେ ସମଗ୍ର ନିମାପଡ଼ା ଅଞ୍ଚଳ ଚଳଚଞ୍ଚଳ ହୋଇ ଉଠିଥିଲା । ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକୁ ସାକାର କରିବା ପାଇଁ ଅନେକ ବ୍ୟକ୍ତି 'କର ବା ମର' ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ଉଠିଥିଲେ । ଭିଲିଗ୍ରାମର ବୈକୁଣ୍ଠ ଓ ଲୋକନାଥ ସେନାପତି, ଢ଼େଣୁଅର ଆଦିକନ୍ଦ ସାବୁତ, ଅଣିଆର ଭବାନୀ ପଟ୍ଟନାୟକ, ପଦ୍ମଚରଣ ସାମନ୍ତ ସିଂହାର ଓ ଅଲେଖ ବାରିକ ଆଦି ବହୁ ଚିହ୍ନା ଅଚିହ୍ନା ନବଯୁବକ ଏଥିରେ ସକ୍ରିୟ ଭାଗ ନେଇଥିଲେ । ସେମାନେ ରାତ୍ରିର ବିଳମ୍ବିତ ପ୍ରହରରେ ଆଶ୍ରମ ପରିସରରେ ମିଳିତ ହୋଇ ବହୁଯୋଜନା କରି ଆନ୍ଦୋଳନକୁ ସଫଳ କରିବାକୁ ଶପଥ ଗ୍ରହଣ କରିଥିଲେ । ସ୍ୱତଃ ପ୍ରବୃତ୍ତ ହୋଇ ମୁଁ ସେମାନଙ୍କ ସହିତ ଆଲୋଚନାରେ ଯୋଗ ଦେଉଥିଲି । ସେମାନେ ବିଭିନ୍ନ ଅଞ୍ଚଳର ଘରେ ଘରେ ବୁଲି ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲେ । କହିବା ନିଷ୍ପ୍ରୟୋଜନ ଯେ ନିମାପଡ଼ା କଂଗ୍ରେସ ଆଶ୍ରମ ଉପରେ ଅନତି ଦୂରରେ ଥିବା ଥାନାର ତୀକ୍ଷ୍ଣଦୃଷ୍ଟି ରହିଥିଲା । ଏହି ସ୍ଥାନରେ ଇତିପୂର୍ବର ଏକ ସ୍ମରଣୀୟ ଘଟଣାର ଅବତାରଣା ପରେ ମୁଁ ପୁନଶ୍ଚ ମୂଳ ଆନ୍ଦୋଳନର ଅନୁଭୂତି ପ୍ରକାଶ କରିବାକୁ ଫେରି ଆସିବି ।

## ମୁଁ ଓ ପୋଲିସ ଇନ୍ସପେକ୍ଟର

ପୋଲିସ ଇନ୍‌ସପେକ୍ଟର ସତୀଶ ଚନ୍ଦ୍ର ବାନର୍ଜୀଙ୍କ କ୍ୱାର୍ଟର ଆମ ଆଶ୍ରମଠାରୁ ୪/୫ ଟି ଘର ଆଗରେ । ତାଙ୍କ ଝିଅ ଲାଳିମା ଆମ ଉ.ପ୍ରା. ସ୍କୁଲର ଛାତ୍ରୀ । ମୁଁ ଆଶ୍ରମରେ ସ୍ଥାୟୀ ଭାବରେ ରହିବାରୁ ଲାଳିମା ବେଳେ ବେଳେ ମୋ ପାଖକୁ ଆସେ । ଦିନେ ସତୀଶ ବାବୁ ମୋତେ ଡକାଇ ପଠାଇଲେ ସନ୍ଧ୍ୟାବେଳେ । ଖବର ପାଇ ମୁଁ ଗଲି । ସାଧାରଣ ସୌଜନ୍ୟ ଓ ଶାଳୀନତାରେ ଆଦୌ ତ୍ରୁଟି ପରିଲକ୍ଷିତ ହୋଇ ନଥିଲା । ସାମାନ୍ୟ ଆଲୋଚନା ପରେ ସତୀଶ ବାବୁ କହିଲେ, " - ଆପଣ ସନ୍ଧ୍ୟାବେଳେ ଅନ୍ତତଃ ଘଣ୍ଟାଏ ଲେଖାଏଁ ଆପଣଙ୍କ ଛାତ୍ରୀକୁ ପଢ଼ାଇବାକୁ ଆସିବେ । ଏହାହିଁ ଲାଳିମାର ଏକାନ୍ତ ଇଚ୍ଛା । ମୁଁ ଅନ୍ୟ ଶିକ୍ଷକ ବ୍ୟବସ୍ଥା କରିବାରେ କୌଣସି ଅସୁବିଧା ନଥିଲେ ମଧ୍ୟ ଅଧ୍ୟାୟୀର ଆଗ୍ରହକୁ ଉପେକ୍ଷା କରିବା ଉଚିତ ନୁହେଁ । ଛାତ୍ରଛାତ୍ରୀମାନଙ୍କ ପରୀକ୍ଷାରେ ଆପଣ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିବା ଶୁଣି ଖୁସି ହେଲି ।" ସଚରାଚର ଶିକ୍ଷକମାନେ ଛାତ୍ରଛାତ୍ରୀମାନଙ୍କର ପରୀକ୍ଷକ ରୂପେ ସ୍ୱୀକୃତ । ମାତ୍ର ଛାତ୍ରଛାତ୍ରୀମାନେ ଯେ ଶିକ୍ଷକମାନଙ୍କୁ ଏକ ଅଘୋଷିତ ପଦ୍ଧତିରେ ପରୀକ୍ଷା କରିଥାନ୍ତି, ଏ କଥା ଖୁବ୍ କମ୍ ଲୋକ ବିଶ୍ୱାସ କରିବେ, ତଥାପି ଏହା ସତ୍ୟ । ଲାଳିମା ଓ ତା'ର ବହୁ ସାଥୀ ଆମ ଘରକୁ ଆସନ୍ତି ଏବଂ ସେମାନଙ୍କ

ଆଲୋଚନାରୁ ମୋ ମିସେସ୍ ଆପଣଙ୍କୁ ବିଭିନ୍ନ ଦିଗରୁ ନମ୍ବର ଦେବାକୁ ଭିତ୍ତି କରି ଆପଣ ହିଁ ସର୍ବାଗ୍ରେ ସ୍ଥାନ ପାଇଛନ୍ତି ବୋଲି ସେ ନିଃସନ୍ଦେହ । ଏଣୁ ଆପଣ କେଉଁ ଦିନଠାରୁ ଏ କାର୍ଯ୍ୟରେ ଯୋଗ ଦେବେ ପ୍ରକାଶ କରନ୍ତୁ । ମନେ ରଖନ୍ତୁ ଏହା ଜଣେ ପୋଲିସ ଅଫିସରର ଆଦେଶ ନୁହେଁ, - ବରଂ ଜଣେ ମମତାସିକ୍ତ ଅଭିଭାବକର ଅନୁରୋଧ ବୋଲି ବିଚାର କରିବେ ।''

ଏତେବେଳ ଯାଏ ମୁଁ କେବଳ ଶୁଣୁଥିଲି । ସତୀଶବାବୁ ନୀରବ ରହିବା ପରେ କହିଲି, " – କାଲିଠାରୁ ଆସିବି । ମାତ୍ର ଏଥିପାଇଁ ମୁଁ କୌଣସି ପାରିଶ୍ରମିକ ନେବି ନାହିଁ ।'' ଏତିକି ଶୁଣୁଶୁଣୁ ସେ କହିଲେ, " – ଆପଣତ ମୋ ମନର କଥା ଆଗରୁ କହିଦେଲେ । ମୁଁ ହେଲି ଜଣେ ପୋଲିସ ଅଫିସର । ଆମ ବିଭାଗକୁ କିଏ ନଡରେ ? ଆମେ କେବଳ ନେବାକୁ ଏକ ଅଘୋଷିତ ଲାଇସେନ୍ସ ପାଇଛୁ । ଦେବାକଥା ଆମ ବିଭାଗରେନାହିଁ । ଯାହାକୁ ସଂସ୍କୃତରେ କହନ୍ତି, "ଦାଧାତୁ ମଦ୍‌ବୈରୀ'' । ଆମ କ୍ଷମତା ଅସୀମ । ସମ୍ପୂର୍ଣ୍ଣ ମେଘମୁକ୍ତ ଆକାଶରେ ଆମେ ବଜ୍ରର ତାଣ୍ଡବଲୀଳା ସୃଷ୍ଟି କରିପାରୁ । ଦୋଷୀକୁ ନିର୍ଦ୍ଦୋଷ ଓ ନିର୍ଦ୍ଦୋଷକୁ ଦୋଷୀ ସାବ୍ୟସ୍ତ କରିବା ଆମ ବାଁ ହାତର ଖେଳ । ଏପରି ଅବସ୍ଥାରେ ଆପଣ ପାରିଶ୍ରମିକ ପ୍ରଶ୍ନ ନିଜଆଡୁ ଉଠାଇ ବୁଦ୍ଧିମାନର କାମ କରିଛନ୍ତି ।''

ସତୀଶ ବାବୁ ହୃଦୟବାନ୍ ବ୍ୟକ୍ତି । ସଚ୍ଚୋଟ ଅଫିସର ହିସାବରେ ତାଙ୍କର ସୁନାମ ଅଛି । ସେ ଯାହାସବୁ କହିଲେ ତାହା ସେତେବେଳେ ନୁହେଁ, ଏବେ ମଧ୍ୟ ଶାଶ୍ୱତ ମହିମାରେ ଦୀପ୍ତିମନ୍ତ ।

ମୁଁ କହିଲି, " – ମୋର ଉଦ୍ଦେଶ୍ୟ ସଂପର୍କରେ କିଛି ନଜାଣି ଆପଣ ଅନେକ କଥା କହିଗଲେଣି ଓ ଏହାର ନିର୍ଯ୍ୟାସ ମୁଁ ଯଥାର୍ଥ ଭାବରେ ଗ୍ରହଣ ମଧ୍ୟ କରିଛି । ଏତିକି ମୋଠାରୁ ଶୁଣିଲେ ଆପଣ ମୋ କଥାର ତାତ୍ପର୍ଯ୍ୟ ନିଶ୍ଚୟ ଅବଗତ ହୋଇପାରିବେ । ମୁଁ ପିଲାଦିନରୁ ଜଣେ ଭଲ ଛାତ୍ର ଥିଲି । ମି.ଇ. ସ୍କୁଲରେ ମଧ୍ୟ ଉଚ୍ଚ ପ୍ରଶଂସିତ ହୋଇ ବହୁ ପୁରସ୍କାର ପାଇଛି । ମି.ଇ. ପରେ ଉଚ୍ଚତର ଶିକ୍ଷାଲାଭ କରି ଭବିଷ୍ୟତରେ ମୁଁ ଜଣେ ବଡ଼ ଅଫିସର ହେବାର ଆକାଶ କୁସୁମର ଧାରଣା ଶିକ୍ଷକମାନେ ମୋ ମନରେ ସୃଷ୍ଟି କରିଥିଲେ । ମୁଁ ମଧ୍ୟ ଭବିଷ୍ୟତର ସୁନେଲି ସ୍ୱପ୍ନ ତଥା ଉଜ୍ଜ୍ୱଳ ସମ୍ଭାବନାରେ ଆତ୍ମବିସ୍ମୃତ ହେଉଥିବା ବେଳେ ରାମ ରାଜା ନହୋଇ ନିଷ୍ଠୁର ବିଧି ନିର୍ଦ୍ଦେଶରେ ବନବାସୀ ହେଲେ । ମୁଁ ଅଧ୍ୟୟନର ଉପଯୁକ୍ତ ବୟସରେ ଅଧ୍ୟାପକ ହେବାକୁ ବାଧ୍ୟ ହୋଇଥିଲି ।

ବାଧ୍ୟ ହୋଇ ଶିକ୍ଷକତାକୁ ବରି ନେଇଥିଲେ ମଧ୍ୟ ମୁଁ ସେଇ ଅଳୀକ ସ୍ୱପ୍ନକୁ ସାକାର କରିବା ପଛରେ ଧାଇଁବାରେ ଲାଗିଲି । ଘରୋଇ ଭାବରେ ୮ମ ୯ମ ଶ୍ରେଣୀରେ ପାଠ ଶେଷ କଲି । ଅଥଚ ମୋର ମୂଳଦାୟିତ୍ୱ ପ୍ରତି ଆଖି ବୁଜି ଦେବାପରି ଏକ ଅକ୍ଷମଣୀୟ ଅପରାଧ କରି ସାରିଥିଲି । ଦଶମ ଶ୍ରେଣୀ ପାଇଁ ସମସ୍ତ ପ୍ରସ୍ତୁତିରେ ଲାଗି ପଡ଼ିଥିବା ବେଳେ ହଠାତ୍ ମୋତେ ଟ୍ରେନିଂ ଅଧ୍ୟୟନର ଆଦେଶ ଆସି ପହଞ୍ଚିଲା । ଆଶ୍ଚର୍ଯ୍ୟ ଲାଗିଲା - ଦଶବର୍ଷ ଚାକିରି କରିଥିବା ଶିକ୍ଷକମାନେ ଟ୍ରେନିଂ ପାଇଁ ସତୃଷ୍ଣ ନୟନରେ ଚାହିଁ ରହିଥିବା ବେଳେ ଏ ଅଯାଚିତ ଅନୁଗ୍ରହର କାରଣ କିଛି ଜାଣି ପାରିଲି ନାହିଁ । ପରେ ସ୍ଥିର କଲି ଦୁଇବର୍ଷରୁ ଆଉ ଅଧିକ କାଳ ପିଲାମାନଙ୍କର କ୍ଷତି କରିବାକୁ ଭଗବାନ ଇଚ୍ଛା କରୁନଥିଲେ । ମୁଁ ଟ୍ରେନିଂ ଅଧ୍ୟୟନ ପାଇଁ ଗଲି ଓ ଅତ୍ୟନ୍ତ ସୁନାମର ସହିତ ଟ୍ରେନିଂ ପାଶ୍ କରି ପୁନରାୟ ମୋର ପୂର୍ବସ୍ଥାନକୁ ଫେରିଆସିବା ପୂର୍ବରୁ ମୁଁ ମୋ ଟ୍ରେନିଂ ଶିକ୍ଷକଙ୍କ ଆଗରେ ଶପଥ କରିଥିଲି ଯେ ମୁଁ ଜଣେ ନିଷ୍ଠାପର ଶିକ୍ଷକ ଭାବରେ କାର୍ଯ୍ୟ କରିବି । ଟ୍ରେନିଂଲବ୍ଧ ଶିକ୍ଷାଦାନ ସଂପର୍କୀୟ ବିଭିନ୍ନ କୌଶଳକୁ ପାରୁପର୍ଯ୍ୟନ୍ତ ପ୍ରୟୋଗ କରିବି । ଅଧିକନ୍ତୁ ମୁଁ ଚାକିରି ପ୍ରାରମ୍ଭରୁ ଦୁଇବର୍ଷ ଅଧ୍ୟାପନାରେ ଆଦୌ ମନ ଦେଇନଥିବାର ଅପରାଧର କ୍ଷାଳନ ପାଇଁ ନିୟମିତ ପ୍ରାର୍ଥନା କରିବା ସହିତ ଯେ କୌଣସି ଛାତ୍ରଛାତ୍ରୀ ମୋର ସାହାଯ୍ୟ ଆବଶ୍ୟକ କଲେ ମୁଁ ଅକୁଣ୍ଠିତ ଚିତ୍ତରେ ବିନା ପାରିଶ୍ରମିକରେ ତାକୁ ପୂର୍ଣ୍ଣ ସାହାଯ୍ୟ କରିବି । ଏହାହିଁ ମୋର ଗତ ଜୀବନର ଇତିବୃତ୍ତି । ତେଣୁ ମୁଁ ପାରିଶ୍ରମିକ ଗ୍ରହଣ କରିବି ନାହିଁ କହିଥିଲି । ମାତ୍ର ପୋଲିସ ଅଫିସରଙ୍କ ଅସୀମ କ୍ଷମତାକୁ ଭୟକରି ଆଦୌ ନୁହେଁ ।''

ମୋ କଥାରେ ସତୀଶବାବୁ ପ୍ରଭାବିତ ହେଲେ କି ନାହିଁ ଜାଣିବାକୁ ଚେଷ୍ଟା କରିନାହିଁ । ମାତ୍ର ଏତିକି କହିଲେ, "- ଆପଣଙ୍କ ଏ କାମ ମୋତେ ଯଥାର୍ଥ ପୋଲିସ ଅଫିସର ରୂପେ ପ୍ରମାଣିତ କରି ଦେବ । ସେ କଥା ପଛକୁ ଥାଉ । ଆଗ କାର୍ଯ୍ୟ ଆରମ୍ଭ କରନ୍ତୁ ।''

ଏହାପରେ ମୁଁ ସନ୍ଧ୍ୟା ଜଳଯୋଗ ଗ୍ରହଣ କରି ଆଶ୍ରମକୁ ଫେରି ଆସିଥିଲି । ପରଦିନ ଠାରୁ ପ୍ରତି ସନ୍ଧ୍ୟାରେ ମୁଁ ଲାଲିମାକୁ ନିୟମିତ ପଢ଼ାଇବାକୁ ଯାଉଥିଲି ।

ଆନ୍ଦୋଳନର ପୂର୍ବଦିନ ରାତିରେ କର୍ମୀମାନେ ବିଭିନ୍ନ ଦଳରେ ବିଭିନ୍ନ ଅଞ୍ଚଳକୁ ଯିବାର ନିଷ୍ପତ୍ତି କରାଯାଇଥିଲା । ତଦନୁସାରେ କର୍ମୀମାନେ ଦିନରାତି ଏକ କରି ଦେଇ ପ୍ରଚାରରେ ଲାଗିପଡ଼ିଥାନ୍ତି । ଏହି ସମୟରେ ଆଶ୍ରମ ପରିସର ଖୁବ୍ ଚଳଚଞ୍ଚଳ ହୋଇ ଉଠିଥାଏ ।

## ନିର୍ଦ୍ଦିଷ୍ଟ ଦିନର ଦୁଃଖଦ ବିବରଣୀ

୧୯୪୨ ମସିହା ଅଗଷ୍ଟ ୧୪ ତାରିଖ । ସେ ଦିନ ନିମାପଡ଼ା ହାଟପାଳି । ହାଟଯୋଗୁ ଜନସମାଗମ ସ୍ୱାଭାବିକ ଅଧିକ ହେବା କଥା । ସଂଧ୍ୟା ଆସନ୍ନ ପ୍ରାୟ । ଧୀରେ ଧୀରେ ଥାନା ସମ୍ମୁଖସ୍ଥ ମୁଖ୍ୟରାସ୍ତା ଉପରେ ଜନସଂଖ୍ୟା ଅଧିକ ହେବାକୁ ଲାଗିଲା । ଥାନା ଓ ଡାକଘର ଏ ଦୁଇଟି ଅନୁଷ୍ଠାନକୁ ଅକ୍ତିଆର କରିବା ପାଇଁ ବହୁ ପୂର୍ବରୁ ସ୍ଥିରୀକୃତ ହୋଇସାରି ଥିଲା । ଆଦିକନ୍ଦ ସାବୁତ ଓ ଅନ୍ୟ ସହଯୋଗୀ ଜଣେ ଡାକଘରରେ ଅଗ୍ନି ସଂଯୋଗ କରିବାର ଦାୟିତ୍ୱରେ ଥିଲେ । କ୍ରମେ ଅନ୍ଧାର ଘୋଟି ଆସିଲା । ଆଦିକନ୍ଦ ସାବୁତ ଓ ତାଙ୍କ ସାଥୀ ଆଶ୍ରମ ପଛପଟୁ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ଅଗ୍ରସର ହେଉଥିବା ବେଳେ ମୋତେ ଦେଖି ହାତ ଧରି ଭିଡ଼ିନେଲେ । ମୁଁ ସମସ୍ତ ଯୋଜନା ସଂପକରେ ପୂର୍ବରୁ ଅବହିତ ଥିଲେ ମଧ୍ୟ କୌଣସି ଥିରେ ନିଜକୁ ସଂଶ୍ଳିଷ୍ଟ କରିନଥିଲି । ହଠାତ୍ ଆଦିକନ୍ଦ ବାବୁଙ୍କୁ କିଛି କହି ନପାରି ତାଙ୍କ ସହିତ ଏକ ଅମଡ଼ା ବାଟରେ ଯାଇ ଡାକଘର ପଛପଟେ ପହଞ୍ଚିଲୁ । କିରାସିନି ଭିଜାକନା ଗୁଡ଼ିଆ ହୋଇଥିବା ଲମ୍ବା ବାଡ଼ି ଓ ଡିଆସିଲି ହାତରେ ଥାଏ । ଠିକ୍ ଡାକଘର ପଛପଟର ଜଗୁଆଳୀ ଯୋର୍‌ରେ କିଏ - କିଏ ସେ ବୋଲି ଚିତ୍କାର କରି ଉଠିବାରୁ ଯୋଜନା ପଣ୍ଡ ହୋଇଗଲା ଓ ଆମେ ପଡ଼ିଉଠି ଆଶ୍ରମ ଆଡ଼କୁ ଧାଇଁବାରେ ଲାଗିଲୁ । ଡାକଘର ଆଗପଟେ ଜଗୁଆଳୀ ଥିବାର ଜଣାଥିଲେ ମଧ୍ୟ ପଛପଟେ ଅନୁରୂପ ବ୍ୟବସ୍ଥା ଥିବା କଥା ଆମ ଧାରଣାର ବାହାରେ ଥିଲା । ମୁଁ ବିକଳରେ ଆଶ୍ରମ ଭିତରକୁ ପଳାଇ ଆସିଲି । ଆଦିକନ୍ଦବାବୁଙ୍କ ସହିତ ସାଥୀ ଜଣକ ସିଧାଯାଇ ଥାନା ସମ୍ମୁଖସ୍ଥ ବିରାଟ ଜନଗହଳିରେ ନିଜକୁ ହଜାଇ ଦେଇଥିଲେ । ଆଶ୍ରମରେ ମୁଁ ଥୟ ହୋଇ ରହିପାରିଲି ନାହିଁ । ତୁରନ୍ତ ରାସ୍ତା ନିକଟକୁ ଚାଲି ଆସିଲି । ରାସ୍ତାକୁ ଲାଗିଥିବା ଗିରିଧାରୀ ଜେନା ଲୁଗା ଦୋକାନ ପିଣ୍ଡାରେ ମୁଁ ଓ ଅନେକ ଦର୍ଶକ ଠିଆ ହୋଇ ରହିଲୁ ।

ଥାନା ସମ୍ମୁଖରେ ଛାମୁଆ ସଂଗ୍ରାମୀ ଭାବରେ ବୈକୁଣ୍ଠ, ଭବାନୀ, ଅଲେଖ ବାରିକ, ଲୋକନାଥ ଆଦି କେତେଜଣ ବିଭିନ୍ନ ସ୍ଲୋଗାନ ଦେଉଥିବା ଶୁଣା ଯାଉଥିଲା । ଅନ୍ଧାର ଘନୀଭୂତ ହୋଇ ଆସିଲା । ଥାନାଠାରୁ ଗେଟ୍ ପର୍ଯ୍ୟନ୍ତ ବାରଜଣ ବନ୍ଧୁକ ଧାରୀ କନ୍‌ଷ୍ଟେବଲ ଦୁଇଧାଡ଼ିରେ ପ୍ରସ୍ତୁତ ହୋଇ ଆଦେଶକୁ ଅପେକ୍ଷା କରିଥାନ୍ତି ମାତ୍ର ।

ଏହି ସମୟରେ ଜନତା ଟେକା, ପଥର, ବାଲସ, ଭଙ୍ଗାଇଟା, ଆଦି ଆଖିବୁଜା ଭାବରେ ଥାନା ଉପରକୁ ବର୍ଷା କରିବାରେ ଲାଗିଲେ । ତଥାପି ଇନ୍‌ସପେକ୍ଟର ଧୈର୍ଯ୍ୟର ସହିତ ଏପରି ନକରିବାକୁ ଦୃଢ଼କଣ୍ଠରେ ବାରମ୍ବାର କହିବା

ପରେ ଫଳ କିଛି ନହେବାରୁ ପ୍ରଥମେ ବ୍ଲାଙ୍କ ଫାୟାରର ଅର୍ଡ଼ର ଦେଲେ । ତଥାପି ମଧ୍ୟ କଂସାରୀ ଘର ପାରା ପରି ଜନତା ତାକୁ ଗୁରୁତ୍ୱ ଦେଇ ନଥିଲେ । ସେତେବେଳକୁ କେତେକ ସିପାହୀ କ୍ଷତ ବିକ୍ଷତ ହୋଇ ସାରିଲେଣି । ସତୀଶ ବାବୁଙ୍କ ଧୈର୍ଯ୍ୟଚ୍ୟୁତ ହେଲା । ସେ ତଳୁଆ ଫାୟାର କରିବାକୁ ଆଦେଶ ଦେଲେ । ଫଳରେ ବହୁ ବ୍ୟକ୍ତିଙ୍କ ଗୋଡ଼, ହାତ, ଜଙ୍ଘ ଆଦି ସ୍ଥାନରେ ଗୁଳି ବାଜି କ୍ଷତାକ୍ତ ହୋଇଗଲା । ଜନତା ପ୍ରାଣ ବିକଳରେ ଇତସ୍ତତଃ ଭାବରେ ପଳାଇବାରେ ଲାଗିଲେ । ଅଳ୍ପ ସମୟ ପରେ ଥାନା ସମ୍ମୁଖ ଜନଶୂନ୍ୟ ହୋଇଗଲା । ମାତ୍ର କ୍ରୋଧିତ ସିପାହୀ ଆଗ ଧାଡ଼ିରେ ଥିବା ସଂଗ୍ରାମୀ କେତେଜଣକୁ ମାଡ଼ି ବସିଲେ ଓ ଘୋଷାଡ଼ି ଘୋଷାଡ଼ି ଥାନାଯାଏ ନେଇ ହାଜତ ଘର ତଳେ ଫିଙ୍ଗି ଦେଇଥିଲେ ।

## ଶୋଚନୀୟ ମୃତ୍ୟୁ

କିଛି ସମୟ ପରେ ଥାନା ଅଞ୍ଚଳରେ ଶ୍ମଶାନର ନୀରବତା ଛାଇ ହୋଇ ଯାଇଥିଲା । ଚାରିଆଡ଼ ନିଶୂନ ହୋଇଯବା ପରେ ଜଣେ ଲୋକ ତଳେ ପଡ଼ିଥିବା ଦେଖି ଜଣେ ସିପାହୀ ପୋଲିସ ସ.ଇ.ଙ୍କୁ ଜଣାଇଲି । ଉକ୍ତ ବ୍ୟକ୍ତିର ଛାତିରେ ଗୁଳିବାଜି ପ୍ରଚୁର ରକ୍ତଶ୍ରାବ ହେବା ଫଳରେ ତାକୁ ତୁରନ୍ତ ଡାକ୍ତରଖାନାକୁ ପଠାଯାଇଥିଲା ଓ ସେ ମୃତ ବୋଲି ଡାକ୍ତର ଘୋଷଣା କରିଦେଲେ । ସେହି ମୃତ ବ୍ୟକ୍ତିର ନାମ ଉଚ୍ଛବ ମଳିକ ବୋଲି ଚିହ୍ନଟ ହୋଇଥିଲା । ଏହି ଶୋଚନୀୟ ମୃତ୍ୟୁ ଘଟଣା ପରଦିନ ସମଗ୍ର ଅଞ୍ଚଳରେ ରାଷ୍ଟ୍ର ହୋଇ ଯାଇଥିଲା । ଏହିସବୁ କଥା ଦଫାଦାର ସେନାପତିଙ୍କଠାରୁ ମୁଁ ଶୁଣିବାକୁ ପାଇଥିଲି ।

## ଆଶ୍ରମରେ ମୁଁ ଓ ଦଫାଦାର

ଗୁଳିଚାଳନା ପରେ ଜନତା ଛତ୍ରଭଙ୍ଗ ଦେବାକୁ ଲାଗିଲେ । ମୁଁ ଗିରିଧାରୀ ଜେନାଙ୍କ ଦୋକାନ ପିଣ୍ଡାରେ ବିଷ୍ଣୁପୁରର ଉଦି ଦାସ ଓ ଅନ୍ୟ କେତେ ଜଣଙ୍କ ସହିତ ଥିଲି । ହଠାତ୍ ଏକ ଗୁଳି ଉଦିଦାସଙ୍କ ଡାହାଣ ହାତର ଜାମା ଦେହରେ ଘସିହୋଇ ଚାଲିଗଲା ଓ ସେ ଚମକି ପଡ଼ି ସେ କଥା ଆମକୁ କହିଥିଲେ ମଧ୍ୟ ଅନ୍ୟମାନେ ଏକଥା ପ୍ରଘଟ ନକରିବାକୁ ପରାମର୍ଶ ଦେଇଥିଲେ । ମୁଁ ଓ ଅନ୍ୟମାନେ ସେଠାରୁ ଚାଲି ଆସିଲୁ ।

ସବୁ ଦିଗରୁ ବ୍ୟର୍ଥ-ମନୋରଥ ହୋଇ ମୁଁ ସଂପୂର୍ଣ୍ଣ ଭାଙ୍ଗିପଡ଼ିଥିଲି । ନିଦ ହେଉ ନଥାଏ । ବିଛଣାରେ ପଡ଼ି ଛଟପଟ ହୋଇ ଅସଫଳତାର ଗ୍ଲାନିରେ ମ୍ରିୟମାଣ ହୋଇ ପଡ଼ିଥାଏ । ପ୍ରିୟଜନମାନଙ୍କର ଶୋଚନୀୟ ଅବସ୍ଥା ଓ ଥାନାରେ ପାଶବିକ

ନିର୍ଯ୍ୟାତନା କଥା ଭାବି ମୋ ଆଖିରୁ ନିଦ ହଜି ଯାଇଥାଏ । ଏହିପରି ଅବସ୍ଥାରେ କେହି ମୋ ନାଁ ଧରି ଡାକିବାରୁ ଆତଙ୍କିତ ହୋଇ ପଚାରିଲି, 'କିଏ ?' ଉତ୍ତରରେ ଶୁଣିଲି, " ମୁଁ ଦଫାଦାର ସେନାପତି ।'' ଥାନାରୁ ଡାକରାରେ ଆଶଙ୍କା ଘନୀଭୂତ ହେଲା । କବାଟ ଖୋଲିବା ପରେ ସେନାପତି କହିଲେ, " - ପିଲାଙ୍କ ଅବସ୍ଥା ଶୋଚନୀୟ । ସେମାନେ ମଲାପରି ହାଜତ ଓ ବାହାରେ ପଡ଼ିଛନ୍ତି । ଗୁଳି ତଲୁଆ ମାରିବାକୁ ଆଦେଶ ଥିଲା । ମାତ୍ର ଦୁର୍ଭାଗ୍ୟ ଯେ ମଳିକ ଥାନା ସମ୍ମୁଖସ୍ଥ ଲୋକ ଗହଳିକୁ ଅତିକ୍ରମ କରି ନପାରି ଏକ ମାଇଲ ଖୁଣ୍ଟ ଉପରେ ବସି ପଡ଼ିଲେ । ତେଣୁ ତାଙ୍କ ଛାତିରେ ଗୁଳିମାଡ଼ ହୋଇଗଲା । ମୁଁ ବର୍ତ୍ତମାନ ଆପଣଙ୍କୁ ଏକ ଅନୁରୋଧ କରିବାକୁ ଆସିଛି । ମୋତେ ନିଶ୍ଚୟ ସାହାଯ୍ୟ କରିବେ ଏ ବିଶ୍ୱାସ ମୋର ଅଛି ।

"ଶୁଣନ୍ତୁ, - ପିଲାଗୁଡ଼ାକ ସକାଳୁ ପାଣିମନ୍ଦାଏ ମଧ୍ୟ ନ ପିଇ ଗାଆଁ ଗାଆଁ ବୁଲି ଲୋକଙ୍କୁ ଏକଜୁଟ କରିବାରେ ଲାଗିଥିଲେ । ସନ୍ଧ୍ୟାର ଘଟଣା ତ ଆପଣ ଦେଖିଥିବେ । ୭/୮ ଜଣ ପିଲାଙ୍କୁ ପୁଲିସ ନେଇ ମନଇଚ୍ଛା ପିଟିଛି । ସମସ୍ତେ ମଲାପରି ପଡ଼ି ରହିଛନ୍ତି - ଚେତାଶୂନ୍ୟ ହୋଇ ସ.ଇ. ରଘୁବାବୁ ବସାରେ ଶୋଇଲେଣି । ପିଲାଗୁଡ଼ିକୁ କାଲି ସକାଳୁ ପୁରୀ ପଠାଯିବେ । ଦୁଇଦିନ ଉପାସ ସେମାନେ ସହ୍ୟ କରି ପାରିବେ ନାହିଁ । ଏଣୁ ପାଖରେ ଯାହାଅଛି, ଭାତ ଡାଲମା ଟିକିଏ ହୋଇଗଲେ ମୁଁ ତାଙ୍କୁ ମୁଠାଏ ଭାତ ଓ ମନ୍ଦାଏ ପାଣି ଦେଇପାରନ୍ତି । ରଘୁବାବୁ ପିଲାଗୁଡ଼ିକଙ୍କର ଖାଇବା କଥା ଟିକିଏ ଚିନ୍ତା ନକରି ବସାରେ ଶୋଇଗଲାଣି ।'' ମୋ ମନରେ ମଧ୍ୟ ଆଲୋଡ଼ନ ସୃଷ୍ଟି ହେଲା । ତୁରନ୍ତ ପୂଜାରୀକୁ ଉଠାଇ ଭାତ ଡାଲମା କରିଦେଲି । ସେନାପତି ଆଶ୍ରମର ଦୁଇଟି ବାଲ୍ଟିରେ ତାକୁ ଢ଼ାଳି କହିଲେ, " — ମୋ ସହିତ ବାଲ୍ଟିଟିଏ ଧରି ଆସନ୍ତୁ । ଥାନାରେ ଥୋଇ ଦେଇ ପଳାଇ ଆସିବେ ।'' ପିଲାମାନଙ୍କୁ ଦେଖିବା ପାଇଁ ମୋର ପ୍ରବଳ ଇଚ୍ଛା ଥାଏ । ଆଗପଛ ଚିନ୍ତା ନକରି ମୁଁ ତାଙ୍କ ସହିତ ଅଗ୍ରସର ହେଲି । ଥାନାର ମୁଖ୍ୟ ଫାଟକ ଦେଇ ନୁହେଁ, ରଘୁସାହୁଙ୍କ କ୍ୱାର୍ଟର ପଛପଟ ଏକ ଜଙ୍ଗଲିଆ ବାଟରେ ଗଲୁ । ଚାରିଆଡ଼ ଅନ୍ଧକାର । ଜୁଳୁଜୁଳିଆ ପୋକପରି ସ୍ତିମିତ ଆଲୋକର ଲଣ୍ଠନଟିଏ ଜଳୁଥାଏ । ମୁଁ ପହଞ୍ଚିବା ମାତ୍ରେ ଦଫାଦାର ମୋଠାରୁ ବାଲଟି ନେଇ ତାଙ୍କ ପୋଲିସ କାଇଦାରେ ମୋତେ ଟାଣି ଟାଣି ଥାନାଗାଡ଼ିଆ ବନ୍ଧରେ କୋଠଦେଶ ଇଷ୍ଟେଟ୍ ପାଚେରି ପାଖରେ ରହିଗଲେ । ଅତି ଧୀର ସ୍ୱରରେ କହିଲେ, " — ତୁରନ୍ତ ଏଇ ଗଳିରାସ୍ତାରେ ବାହାରକୁ ଚାଲିଯାଅ ।'' ପିଲାମାନଙ୍କୁ ଦେଖିବାର ଇଚ୍ଛା ସମୂଳେ ନଷ୍ଟ ହୋଇଗଲା । ଯେଉଁବାଟେ ଯିବା ପାଇଁ କହିଲେ ତାହା ଥାନା ହତା ଓ

ଇଷ୍ଟକ୍ ପାଚେରୀ ମଧ୍ୟରେ ଏକ ସଂକୀର୍ଣ୍ଣ ଅବ୍ୟବହୃତ ସ୍ଥାନ ଓ ବହୁ ଲଟି ଓ କଣ୍ଟା ଝଣ୍ଟାରେ ପୂର୍ଣ୍ଣ । ପଛକୁ ଚାହିଁ ଦେଖିଲି ଦଫାଦାର ଅନ୍ତର୍ଦ୍ଧାନ । ଠାକୁରାଣୀଙ୍କୁ ସୁମରଣା କରି ଅଗ୍ରସର ହେଲି । ଦେହସାରା କଣ୍ଟାରେ ଚିରି ହୋଇ ଯାଉଥାଏ । ଜାମା ବି ଚିରି ହୋଇ ଗଲାଣି । କେବଳ ପାଦରେ ଚଟି ଥିବାରୁ ମୁଁ ଯାବତୀୟ କଷ୍ଟ ସହ୍ୟ କରି ଅନେକ ସମୟ ପରେ ମୁଖ୍ୟ ରାସ୍ତାରେ ପାଦ ଦେବାର ପିଣ୍ଡରେ ପ୍ରାଣ ପଶିଲା । ମାଆଙ୍କ ଅଶେଷ ଆଶୀର୍ବାଦରୁ କୌଣସି ଲମ୍ବ ଜନ୍ତୁ (ସାପ)ଙ୍କ ହାବୁଡ଼ରେ ପଡ଼ିନଥିଲି ।

ଶୀଘ୍ର ଶୀଘ୍ର ଆଗକୁ ପାଦ ପକାଇ ଯାଉଥିବା ବେଳେ ଥାନା ଫାଟକରେ ଥିବା ପୋଲିସ ମୋତେ ଅଟକାଇଲା । ଅନେକ କଥା ପଚାରିଥିଲା ମଧ୍ୟ । ମାତ୍ର ସେ କିଛି ବିଶ୍ୱାସ ନକରି କହିଲା, "ଯାଅ । କାଲି ନିଶ୍ଚୟ ଥାନାକୁ ଆସି ଜବାବ ଦେବାକୁ ପଡ଼ିବ ।''

ଆଶ୍ରମରେ ପହଞ୍ଚିଲି । ପୁନଶ୍ଚ ଆଉ ଏକ ମୁସିବତ୍ ସ୍ୱତଃ ମୋତେ ବିବ୍ରତ କରିବାରେ ଲାଗିଲା । ବ୍ୟଥିତ ହୋଇ ଚିନ୍ତା କଲି – " ଆଜିର ଦୁର୍ଯୋଗ କଳ୍ପନାତୀତ । ପୁଣି ଅପରେକି ଭବିଷ୍ୟତ ।'' କିଏ କହିବ । ସବୁ ଦିଗରୁ ବିଫଳ ହୋଇ ମୁଁ ନିଜକୁ ଏକାନ୍ତ ଅସହାୟ ମନେ କରିବାକୁ ଲାଗିଲି । ମାତ୍ର ଯାହାକୁ ଅନୁଭବରେ ଆଣି ମୁଁ ବିଫଳତାର ପରିଣତି ବୋଲି ଭାବିଥିଲି, ତାହା ସେ ଭବିଷ୍ୟତରେ ଏକ ଆଶ୍ଚର୍ଯ୍ୟଜନକ ଫଳ ପ୍ରସବ କରି ସମଗ୍ର ଜଗତରେ ଭାରତୀୟମାନଙ୍କୁ ସମ୍ମାନିତ କରିବ, ଏ କଥା ମୋ ପରି ଅଳ୍ପବୁଦ୍ଧି ବ୍ୟକ୍ତି କଳ୍ପନା କରିବା ଅସମ୍ଭବ ଥିଲା । ଆଜିର ଏ ପ୍ରାଣମୂର୍ଚ୍ଛା ସଂଗ୍ରାମରେ ଭାରତ ଜନନୀଙ୍କ ଗର୍ଭରେ ଅଙ୍କୁରୋପରଣ ପରି ଏକ ମହାନ୍ କାର୍ଯ୍ୟ ସମସ୍ତଙ୍କ ଅଲକ୍ଷ୍ୟରେ ସଂପାଦନ କରି ଠିକ୍ ପାଞ୍ଚ ବର୍ଷ ପରେ ଅର୍ଥାତ୍ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଏକ ଦୀପ୍ତିମନ୍ତ ମହାନ୍ ସନ୍ତାନଙ୍କୁ ଜନ୍ମ ଦେଇଥିଲା ତାକୁ ଦର୍ଶନ କରି ଭାରତର କୋଟି କୋଟି ନରନାରୀ ନାନା ଉତ୍ସବରେ ନିଜକୁ ହଜାଇ ଦେଇଥିଲେ । ଏହି ଅପୂର୍ବ ସନ୍ତାନଟିର ନାମ ଥିଲା ସ୍ୱାଧୀନତା ।

ଉକ୍ତ ସ୍ମରଣୀୟ ରାତ୍ରି ପ୍ରଭାତ ହେଲା । ମୁଁ ନିତ୍ୟକର୍ମରେ ଲାଗି ପଡ଼ିଥାଏ । ଏତିକି ବେଳେ ଜଣେ କନଷ୍ଟେବଲ୍ ଆସି କହିଲା, " - ଆପଣଙ୍କୁ ଥାନାବାବୁ ଡକାଇଛନ୍ତି ।'' ମୋତେ କିଛି ଆଉ ଅଜଣା ରହିଲା ନାହିଁ । ମୁଁ କହିଲି, "ତୁମେ ଯାଅ, ମୁଁ ଟିକିଏ ପରେ ଯିବି ।'' ମାତ୍ର ସେ କହିଲା, " - ଶୀଘ୍ର କାମ ସାରି

ଦିଅନ୍ତୁ । ମୁଁ ସାଥୀରେ ନେଇ ନ ଗଲେ ମୋ ଚୁଟି ଉପୁଡ଼ିଯିବ । ରଘୁବାବୁଟି କାହାକୁ ମାନିବା ଲୋକ ନୁହନ୍ତି'' । ମୁଁ କହିଲି, " - ହଉ, ଅଳ୍ପ ସମୟ ଅପେକ୍ଷା କର ।'' ମୁଁ ତୁରନ୍ତ କାମ ଶେଷ କରି ଥାନାରେ ଉପସ୍ଥିତ ହେଲି । ମୋତେ ଦେଖିବା ମାତ୍ରେ ରଘୁବାବୁ ବହୁ କଦର୍ଯ୍ୟ ଶବ୍ଦ ବ୍ୟବହାର କରିଥିଲେ, ଯାହା କେବଳ ପୋଲିସ ମାନୁଏଲରେ ଥିବ ସିନା ଅନ୍ୟତ୍ର ଦୁର୍ଲ୍ଲଭ ନିଶ୍ଚୟ ।' ଅଶ୍ରାବ୍ୟ ଭାଷା ଶେଷରେ କହିଲେ, "- ଗୋଟାଏ ମାଷ୍ଟର ଚାକିରୀ କରିଛ ପରା ! କେଉଁ ବହିରେ ପଢ଼ିଛ ସରକାରଙ୍କ ଖାଇ ସରକାରଙ୍କ ବିରୁଦ୍ଧରେ ଅଙ୍ଗୁଳି ଉଠାଇବାକୁ ? ସାମାନ୍ୟ ଜଣେ ମାଷ୍ଟର ମୋ ପଞ୍ଝାରୁ ଖସି ପାରିବା ଅସମ୍ଭବ । ବଡ଼ ବଡ଼ ଦନ୍ତା ହାତୀକୁ ଆୟତ୍ତ କରିବା ମୁଁ ଉତ୍ତମ ରୂପେ ଜାଣେ । ତୁମ ବିରୁଦ୍ଧରେ ଅଜସ୍ର ଅଭିଯୋଗ ପାଇଛି ଓ ସେ ସବୁର ପୁରସ୍କାର ପାଇଁ ବାଟ ପ୍ରସ୍ତୁତ କରୁଛି । ରାଜଦ୍ରୋହ ଓ ସଂତ୍ରାସବାଦୀଙ୍କ ସହିତ ଆଉ ଅନେକ ଦଫାରେ ତୁମ ଅବସ୍ଥା ଶୋଚନୀୟ କରିଦେବି । ମୁଁ ଲଞ୍ଚ୍ ପାଇ ଯାଉଛି । ମନେରଖ, କାଲି ୧୦ଟା ସୁଦ୍ଧା ଏଠାରେ ଉପସ୍ଥିତ ହେବ୍ । ଏଥର ଯାଇପାର ।''

ମୁଁ ଏକାନ୍ତ ବିଷର୍ଣ୍ଣ ମନରେ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରିଥିଲି । ଶିକ୍ଷିତ ଓ ସମ୍ମାନିତ ବ୍ୟକ୍ତି ହୋଇ ଥାନାବାବୁ ଏପ୍ରକାର ଅଶାଳୀନ ମନ୍ତବ୍ୟ ଦେବାକୁ ଟିକିଏ ମଧ୍ୟ ସଂକୋଚବୋଧ ନକରିବା ମୋତେ ବିସ୍ମିତ କରି ପକାଇଥିଲା । ଆଉ ସ୍କୁଲକୁ ଗଲି ନାହିଁ ।

ପରଦିନ ମୁଁ ଯଥାଶୀଘ୍ର ନିତ୍ୟକର୍ମ ସାରି ଥାନାକୁ ଗଲି । ରଘୁବାବୁ ମୋତେ ଦେଖିବା ମାତ୍ରେ ଖୁବ୍ ଗମ୍ଭୀର ହୋଇ ଉଠିଲା । ମାତ୍ର କିଛି କହିବା ପୂର୍ବରୁ ମୁଁ କହିଲି, " କ'ଣ ପଚାରିବାର ପଚାରନ୍ତୁ । ମୁଁ ସ୍କୁଲକୁ ଯିବି । କାଲି ମଧ୍ୟ ଯାଇ ନଥିଲି ।'' ବାସ୍ ଏତିକି ମାତ୍ର କଥାରେ ମୋ ମୁହଁ ଉପରେ ତାଙ୍କ କ୍ରୋଧିତ ସିଂହ ନୃଶଂସା ପ୍ରକାଶ କରି କହିଲେ, " - ବହୁତ ସାହସ ତ ତୁମର । ଦେଶଦ୍ରୋହ, ସରକାରଙ୍କ ବିରୁଦ୍ଧରେ ଗୁପ୍ତମନ୍ତ୍ରଣା, ସନ୍ତ୍ରାସବାଦୀମାନଙ୍କୁ ଉତ୍ସାହ ପ୍ରଦାନ ଆଦି ଗୁରୁତର ଅପରାଧରେ ଅଭିଯୁକ୍ତ ଜଣେ ଶିକ୍ଷକ ଜେଲର ଚକିପେଷା କଥା ନଭାବି ପୁଣି ଚଉକିରେ ବସିବାର ଆଶାକୁ ତାରିଫ୍ ନକରି ରହିପାରୁ ନାହିଁ । ହେ ମାଷ୍ଟର, କାଲି ଭାରତକୁ ସ୍ୱାଧୀନ କରିଦେଲ । ଆମ ସିପାହୀଙ୍କ ହାତରୁ ବନ୍ଧୁକ ଛଡ଼ାଇ ନେଲ ? ହଇଓ, କେତୋଟି କୁକୁର ମିଶିଲେ ଗୋଟାଏ ସିଂହକୁ ବଣରୁ ତଡ଼ିଦେବେ । ଧିକ୍ ତୁମର ଏ ନିର୍ଲ୍ଲଜ ପ୍ରଚେଷ୍ଟା । ଶତଧିକ୍ ତୁମପରି ନିର୍ବୋଧମାନଙ୍କୁ ।'' ରଘୁବାବୁ

ତୁଛାକୁ ଉତ୍ୟକ୍ତ ହୋଇ ସାଧାରଣ ଭଦ୍ରତାକୁ ଭୁଲିଗଲେଣି । ମୁଁ କିଛି କହି ଅଧିକ ଉତ୍ୟକ୍ତ କରାଇବା ଅପେକ୍ଷା ସଂପୂର୍ଣ୍ଣ ନୀରବତାକୁ ଶ୍ରେୟ ମନେ କରିଥିଲି ।

ଦ୍ୱିତୀୟ ଦିନ ସ୍କୁଲରେ ମୋର ଅନୁପସ୍ଥିତରେ ଚିନ୍ତିତ ହୋଇ ପିଲାଙ୍କୁ ପଚାରିବାରେ ମୁଁ ଥାନାକୁ ଯାଉଛି ବୋଲି ଶୁଣି ହେଡ଼ପଣ୍ଡିତ ଆଚାର୍ଯ୍ୟ ମହାଶୟ ତତ୍କ୍ଷଣାତ୍ ଥାନାରେ ହାଜର ହୋଇଗଲେ । ସେଠାରେ ମୁଁ ଠିଆ ହୋଇଥିବା ଦେଖି ତାଙ୍କ ମୁଣ୍ଡକୁ ପିତ୍ତ ଚହଟି ଗଲା । ସେ ମୋତେ ଲକ୍ଷ୍ୟକରି କହିଲେ, "- ଚଉକି ଖାଲି ପଡ଼ିଛି । ଠିଆ ହୋଇଛ କାହିଁକି ? 'ବସ' ! ରଘୁବାବୁଙ୍କ ଉତ୍ତର ହେଲା - " ନାଁ ନାଁ, ଥାନାରେ ଅଭିଯୁକ୍ତମାନଙ୍କୁ ଚଉକି ଦେବାର ବ୍ୟବସ୍ଥା ଆଦୌ ନାହିଁ । ଇଚ୍ଛାକଲେ ତୁମେ ବସିପାର ।''

ଆଚାର୍ଯ୍ୟେ ଉଚ୍ଚଶିକ୍ଷିତ ନଥିଲେ । ମାତ୍ର ସେ ଅତ୍ୟନ୍ତ ସ୍ୱାଭିମାନୀ ଓ ସ୍ପଷ୍ଟବାଦୀ । କଥା କହି ଜନତାକୁ ମୁଗ୍ଧ କରିବାର ଏକ ଐଶ୍ୱରିକ ଶକ୍ତି ତାଙ୍କଠାରେ ନିହିତ ଥିଲା । ସେ କହିଲେ, " ଠିକ୍ ଅଛି । ମୁଁ ମଧ୍ୟ ଠିଆ ହୋଇ କଥା ହେବି । ଜଣେ ଗୁରୁ ଠିଆ ହେବେ, ମୁଁ ଚଉକିରେ ବସିବା ପରି ଜଘନ୍ୟ କାର୍ଯ୍ୟ କରି ପାରିବିନାହିଁ ।''

ରଘୁବାବୁ ଏକ ଅସଭ୍ୟ ଓ ବର୍ବର ଉପାଦାନରେ ଗଢ଼ା । ସେ ଆଚାର୍ଯ୍ୟଙ୍କୁ କହିଲେ, " ମୁଁ କାହାକୁ ଚଉକିରେ ବସିବାକୁ ଅନୁରୋଧ ଜଣାଇ ନାହିଁ । ଦେଖ, ମୋର ସମୟ ନାହିଁ । ତୁମର କିଛି କହିବାର ଥିଲେ ଚଞ୍ଚଳ କହିଦିଅ ।'' ଆଚାର୍ଯ୍ୟେ ଗମ୍ଭୀର ହୋଇ କହିଲେ, " - ମୁଁ ବର୍ତ୍ତମାନ ଖାଲି ଆପଣଙ୍କୁ ଚେତାଇ ଦେଉଛି ଯେ, ଆପଣ ଜଣେ ସର୍ବଜନ ପୂଜ୍ୟ ସମ୍ମାନିତ ବ୍ୟକ୍ତିଙ୍କୁ ଚୋର, ତସ୍କରଙ୍କ ପରି ବ୍ୟବହାର କରୁଥିବା ଘୋର ନିନ୍ଦନୀୟ । ଆପଣ ହଜାରେ ବରଷ ତପସ୍ୟା କଲେ ଜଣେ ଗୁରୁଙ୍କ ସମକକ୍ଷ ସମ୍ମାନିତ ବ୍ୟକ୍ତି ହୋଇ ପାରିନେ ନାହିଁ । ମନେରଖ ରଘୁବାବୁ, ଆପଣଙ୍କ ଦେହରୁ ଏ ପୋଷାକ ଚାଲିଗଲେ କେହି ଜଣେ ଆପଣଙ୍କୁ ଚାହିଁବେ ମଧ୍ୟ ନାହିଁ । କିନ୍ତୁ ଜଣେ ଶିକ୍ଷକ ରାସ୍ତାରେ ଚାଲି ଯାଉଥିଲେ ଶହ ଶହ ଲୋକ ତାଙ୍କ ପାଦଧୂଳି ନେବା ପାଇଁ ଠେଲା ପେଲା ହୁଅନ୍ତି । ତେଣୁ ଜଣେ ପୋଲିସ ସବ୍-ଇନ୍ସପେକ୍ଟରଙ୍କୁ ଜଣେ ଶିକ୍ଷକଙ୍କ ସହିତ କେଉଁ ମୂର୍ଖ ତୁଳନା କରିବ ? ଆପଣ ତ ଛାର; ଭାରତର ଭାଇସରାୟ ମଧ୍ୟ ଶିକ୍ଷକଙ୍କଠାରୁ ସମ୍ମାନରେ ଉଣା ବୋଲି ସ୍ୱୀକାର କରିବେ । ଥରେ ବର୍ଦ୍ଦି ଉତାରି ହୋଇଗଲେ ଆପଣ କେବଳ ଅପମାନ ହିଁ ପାଇବେ । ଯାଉଛି ? ପୁଣି ସନ୍ଧ୍ୟା ସମୟରେ ଦେଖା ହୋଇପାରେ । ମୁଁ

ଠିଆ ହୋଇଥାଏ । କିଛି ସମୟ ପରେ କହିଲି, " - ମୋତେ ଆଉ କିଛି ପଚାରିବାର ଥିଲେ ପଚାରନ୍ତୁ । ମୁଁ ଇନ୍‌ସପେକ୍ଟରଙ୍କ ବସାକୁ ଯିବା ପାଇଁ ଖବର ଆସିଛି ।''

ବାସ, ଏଇ ପଦଟିଏ ମାତ୍ର କଥାରେ ସେ ବିଷଧର ତମ୍ପର ଫଣା ଯୋର୍‌ରେ ଟେକି ହୋଇଗଲା, ସଙ୍ଗେ ସଙ୍ଗେ କର୍କଶ କଣ୍ଠରୁ ବାହାର ଆସିଲା, " ନିଜକୁ ଖୁବ୍ ଚତୁର ମନେ କରୁଛ ନା ? ମୋତେ ଧମକ ଦେବାକୁ ସାହସ କରନାହିଁ । ମନେରଖ, ଏ ରଘୁ ସାହୁ ଲାଟ ସାହେବଙ୍କୁ ମଧ୍ୟ ଖାତିରି କରେ ନାହିଁ । ଶିବଙ୍କ ସାପ ହୋଇ ଗରୁଡ଼କୁ ଫଁ କରିବା ଭୁଲିଯାଅ ।'' ମୁଁ କି ଉତ୍ତର ଦେବି ଭାବି ପାରିଲି ନାହିଁ । ନୀରବରେ ଛିଡ଼ା ହୋଇ ରହିଲି । ମୋତେ ଡାକିବାକୁ ଆସିଥିବା ସିପାହୀ ନୀରବରେ ଚାଲିଗଲା ।

ଇନ୍‌ସ୍ପେକ୍ଟର ଘରେ ଥିଲେ । କନ୍‌ଷ୍ଟେବଲ୍‌ଟି ଖୁବ୍ ଶଙ୍କିତ ହୋଇ ଯାହା କହିଲା, ତହିଁରେ ଇନ୍‌ସ୍ପେକ୍ଟରଙ୍କ ସ୍ତ୍ରୀ ଅତ୍ୟନ୍ତ ଉଦ୍‌କ୍ଷିପ୍ତ ହୋଇ କହିଲେ, " - ତୁମ ଉପର ହାକିମ ରଘୁବାବୁ ଯାହା କହିଲେ ଶୁଣିଲ ତ ! କଥାରେ ଅଛି ଲୁହା କଅଁଳ ଦେଖିଲେ ତାକୁ ବିରାଡ଼ି କାମୁଡ଼ିଥାଏ । ତୁମେ ରଘୁ ସାହୁର ମୁହଁ ବଢ଼ାଇଛ । ତା'ର ଯାବତୀୟ ଔଦ୍ଧତ୍ୟର କାରଣ ତୁମେ । ମୁଁ ସାର୍‌ଙ୍କୁ ଟିକିଏ ଡାକି ଆଣିବାକୁ କହିଥିଲି ମାତ୍ର । ଏବେ ଯାହା ସମ୍ମାନ ମିଳିଲା ଇନ୍‌ସ୍ପେକ୍ଟର ନିଜେ ଶୁଣିଲେ । ଯାଅ, ଲାଳିମାକୁ ବୁଝାଅ । ସେ ସ୍କୁଲକୁ ଗଲା ନାହିଁ । ଖାଇ ନାହିଁ । ପାଗଳୀଙ୍କ ପରି ଘର ଜିନିସ ଫୋପଡ଼ା ଫିଙ୍ଗା କରୁଛି ।''

ଇନ୍‌ସ୍ପେକ୍ଟର ଅତି ସରଳ - ପ୍ରାଣ ଓ ଧୀର ସ୍ଥିର ପ୍ରକୃତିର ଥିଲେ । ସେ କହିଲେ, " - ବ୍ୟସ୍ତ ହେବାର କିଛି ନାହିଁ । ମୁଁ ଥାନାକୁ ଯାଉଛି । କିଛି ସମୟ ପରେ ଲାଳିମା ଯାଇ ତା ସାର୍‌ଙ୍କୁ ଡାକି ଆଣିବ । ଏହା ପର ଘଟଣା ପରେ ଜାଣି ପାରିବ ।''

ସତୀଶ ବାବୁ ଘରୁ ବାହାରିବା ବେଳକୁ ଆଚାର୍ଯ୍ୟେ ଓ ମୋହନ ବାବୁ ତାଙ୍କ ସହିତ ସାକ୍ଷାତ କରି ସମସ୍ତ ଘଟଣା ବର୍ଣ୍ଣନା କରିବା ସହିତ ଥାନା ତରଫରୁ କରାଯାଇଥିବା ଅନ୍ୟାୟ ପାଇଁ ସତୀଶ ବାବୁଙ୍କୁ ଦାୟୀ କଲେ । କେତେଜଣ ରାଜବନ୍ଦୀଙ୍କୁ ପୂରା ଉପାସ ଭୋକରେ ରଖି ପଶୁପରି ବ୍ୟବହାର କରିଥିବା କଥା ଉପରେ ଜୋର୍ ଦେଇ ସେ ଦୁହେଁ ଚାଲି ଯାଇଥିଲେ ।

ଇନ୍ସପେକ୍ଟର ଥାନାରେ ପହଞ୍ଚି ମୁଁ ଠିଆ ହୋଇଥିବାର ଦେଖି କହିଲେ, "- ତୁମେ ଏଠାରେ କଅଣ କରୁଛ ?'' ମୁଁ କିଛି କହିଛି କି ନାହିଁ, ଲାଲିମା ଆସି ପହଞ୍ଚି ମୋ ହାତଧରି ଟାଣିଲା । ମୁଁ କହିଲି, "- ରହ ମା, ମୁଁ ରଘୁବାବୁଙ୍କୁ କହିଦେଇ ଯିବି ।'' ରଘୁବାବୁ ମୋ କଥା ଶୁଣୁ ଶୁଣୁ 'ଯାଅ' ବୋଲି କହିଦେଲେ । ମୁଁ ଚାଲି ଆସୁଥିବା ବେଳେ ଦଫାଦାର ଇନ୍ସପେକ୍ଟରଙ୍କ ପାଖକୁ ଯାଉଥିବାର ଦେଖିଲି । ଏହାପରେ ଥାନାରେ ଯାହାସବୁ କଥୋପକଥନ ହୋଇଥିଲା, ତାହା ମୁଁ ଜାଣିପାରି ନଥିଲେ ମଧ୍ୟ ଦଫାଦାର ସମସ୍ତ ବିବରଣୀ ଜଣାଇଥିଲେ ।

ଇନ୍ସପେକ୍ଟର ଅଧିକ କିଛି ନପଚାରି କହିଲେ, " - ଏ ସାର୍‌ଙ୍କ ବିରୁଦ୍ଧରେ ଅଭିଯୋଗ ମାନ ମୋତେ ଜଣାଅ । ଉପଯୁକ୍ତ ପ୍ରମାଣ ମଧ୍ୟ ଯୋଗାଡ଼ କର । ଦୋଷୀ ନିଶ୍ଚିତ ଦଣ୍ଡ ପାଇବା ଉଚିତ । ଆମେ ଏ ଦିଗରେ କାହା ପ୍ରତି ଦୟା ପ୍ରଦର୍ଶନ କରିବା ଉଚିତ ହେବନାହିଁ ।''

ରଘୁବାବୁ : "ଏ ଶିକ୍ଷକ ଆଶ୍ରମରେ ରହି ଥାନା ଘେରାଉ, ଡ଼ାକଘର ପୋଡ଼ି ସହିତ ବାରମ୍ବାର ସରକାରଙ୍କ ବିରୁଦ୍ଧରେ ଲୋକଙ୍କୁ ମତାଇଛନ୍ତି । ସନ୍ତ୍ରାସବାଦୀମାନଙ୍କ ସହିତ ବରାବର ଗୋପନମନ୍ତ୍ରଣାରେ ଜଡ଼ିତ ହୋଇ ନାନା ଆପତ୍ତିଜନକ କାର୍ଯ୍ୟ କରିଥିବାର ସମ୍ବାଦ ଧୀରେ ଧୀରେ ନଜରକୁ ଆସୁଛି । ସର୍ବୋପରି ଘଟଣାଦିନ ରାତି ଗୋଟାଏ ପରେ ସେ ଥାନା ଭିତରେ ଚୋରଙ୍କ ପରି ପଶି ସନ୍ତ୍ରାସବାଦୀମାନଙ୍କ ସହିତ ଗୋପନ ପରାମର୍ଶ କରିବା ପାଇଁ ହାଜତ ଭିତରେ ପଶିବାପରି ଦୁଃସାହସ ମଧ୍ୟ କରିଥିଲେ ଓ ଲୁଚିଲୁଚି ପଳାଉଥିବା ବେଳେ ଆମ ସିପାହୀଙ୍କ ହାତରେ ଧରା ହେଲେ । ଆଶ୍ଚର୍ଯ୍ୟର କଥା ଆମର ସବୁଠାରୁ ବଫାଦାର ଦଫାଦାର ଏ ଶିକ୍ଷକଙ୍କ ସହିତ ମିଶି ଏବେ ନିଜ ଚାକିରୀଟି ହରାଇବେ ।''

ଇନ୍ସପେକ୍ଟର : "ସେଥିପାଇଁ ଆଦୌ ଦୁଃଖ କରନ୍ତୁ ନାହିଁ । ପ୍ରକୃତ ଦୋଷୀକୁ ଚିହ୍ନଟ କରି ଆମେ ନିଶ୍ଚୟ ଉପଯୁକ୍ତ ପ୍ରତିକାର କରିବା । ଏଥିରେ ପୁଅ ହେଉ କି ବାପ ହେଉ, ସେ ସଂପର୍କରେ ଆଦୌ ପକ୍ଷପାତ କରିବା ନାହିଁ । ଏହା କହିବାପରେ ଦଫାଦାରଙ୍କୁ ପ୍ରଶ୍ନକଲେ ତୁମେ ଏ ଶିକ୍ଷକଙ୍କ ସହିତ ମିଶି ଏପରି କାମଟିଏ କରି ବସିଲ ଯହିଁରେ ଚାକିରୀ ତ ହରାଇବ ତା ପରେ ଜେଲ୍ ଦଣ୍ଡ ନହେବ ବୋଲି କିଏ କହିବ ?''

ଦଫାଦାର : "ମୁଁ ମୋ ଗାଁ'ର ପିଲାଙ୍କ ବିକଳ ସହି ନପାରି ରାତି ୧୨ଟା ପରେ ଏ ସାର୍‌ଙ୍କୁ ଉଠାଇ ପିଲାମାନଙ୍କ ପାଇଁ ଖାଇବା ଜିନିସ ଆଣିଛି ।''

ଇନ୍ସ୍‌ପେକ୍ଟର : ଓହୋ । ଏବେ କଥାଟା ସ୍ପଷ୍ଟ ବୁଝି ହୋଇଗଲା । ମୋହନ ବାବୁଙ୍କ ଗୁରୁତର ଅଭିଯୋଗକୁ ମୁଁ ପୂର୍ଣ୍ଣ ଅସ୍ୱୀକାର କରିବା ସହିତ କାଲି ଏ ସଂପର୍କରେ ସତ୍ୟାସର୍ତ୍ୟ ଜଣାଇବି ବୋଲି କହିଥିଲି । ତେବେ ଆପଣ ( ସବ୍-ଇନ୍ସ୍‌ପେକ୍ଟର) ସେ ବନ୍ଦୀମାନଙ୍କ ପାଇଁ ଖାଇବାର କିଛି କରିବାର ବ୍ୟବସ୍ଥା କରି ନଥିଲେ ?

**ସବ୍-ଇନ୍ସ୍‌ପେକ୍ଟର :** ନାଁ, ମୁଁ ଏତେ କ୍ଳାନ୍ତ ହୋଇ ପଡ଼ିଥିଲି ଯେ ବସାରେ ଶୋଇପଡ଼ିଛି ।

ଇନ୍ସ୍‌ପେକ୍ଟର : ଏହା ଏକ ଗୁରୁତର ଏବଂ ଧର୍ତ୍ତବ୍ୟ ଅପରାଧ । ଖୁନୀ ଆସାମୀକୁ ମଧ୍ୟ ଭୋକିଲା ରଖାଯାଇ ପାରିବ ନାହିଁ । ଆମେ ଏବେ ଅନ୍ୟ ଉପାୟ ଚିନ୍ତା କରିବା । ମନେରଖ ଆମେ ପୁଲିସବାଲା । ସେ ରାଜନୀତିଆଙ୍କୁ ଭୁଲାଇ ଦେବା ପାଇଁ କିଛିବାଟ ସୃଷ୍ଟି କରିବା ଯେପରିକି ତାଙ୍କ ଅଭିଯୋଗ ଅମୂଳକ ପ୍ରମାଣିତ ହେବ । ଚିନ୍ତା କରି କହନ୍ତୁ କ'ଣ କରାଯାଇପାରେ ?''

ସବ୍-ଇନ୍ସ୍‌ପେକ୍ଟର : "ହଠାତ୍ ମୁଁ କିଛି ଚିନ୍ତା କରିପାରୁ ନାହିଁ ସାର୍, ଭାବିକରି କହିବି ।''

**ଇନ୍ସ୍‌ପେକ୍ଟର :** "ଆମ ହାତରେ ରାତିଟିଏ ମାତ୍ର ସମୟ ଅଛି । ଏ ଅଞ୍ଚଳ ଲୋକେ ଖୁବ୍ ଜାଗ୍ରତ । ମୋହନ ବାବୁ ସେମାନଙ୍କ ନେତା । କାଲି ହୁଏତ ସେ ସକାଳୁ ଆସି ପାରନ୍ତି । କଅଣ କରାଯାଇ ପାରେ ଏବେ ଚିନ୍ତା କରିବା ଉଚିତ ।''

ସବ୍-ଇନ୍ସ୍‌ପେକ୍ଟର ନୀରବ ରହିଲେ ।

ଇନ୍ସ୍‌ପେକ୍ଟର କିଛି ସମୟ ପରେ କହିଲେ, " ମୁଁ ଗୋଟିଏ କଥା ଭାବିଛି । ଶୁଣନ୍ତୁ - ଆପଣ ବସାକୁ ଯିବା ପୂର୍ବରୁ ଦଫାଦାରଙ୍କୁ କିଛି ପଇସା ଦେଲେ ଓ ହାଜତରେ ଥିବା ବନ୍ଦୀମାନଙ୍କ ପାଇଁ ଖାଦ୍ୟ ଆଣି ଦେବାକୁ କହିଥିଲେ । ଦଫାଦାର ରାତିରେ ବଜାରକୁ ଯାଇ ସବୁ ଦୋକାନ ବନ୍ଦ ଥିବା ଦେଖି ଶେଷରେ ତାଙ୍କର ପରିଚିତ ଶିକ୍ଷକଙ୍କୁ ଅନୁରୋଧ କରି "କିଛି ଉପାୟ କରନ୍ତୁ'' ବୋଲି କହିଲେ । ଏ ଶିକ୍ଷକ ପାଖରେ ଯାହାଥିଲା ସେତକ ରାନ୍ଧି ସେନାପତିଙ୍କ ସାଙ୍ଗରେ ଆସି ଥାନାରେ ଥୋଇ ଦେଇ ଯାଇଥିଲେ । ସେନାପତି ସେମାନଙ୍କୁ ଖାଇବାକୁ ଦେଇଛନ୍ତି । ଏ ସମସ୍ତ କାର୍ଯ୍ୟ ଥାନା ଅଫିସରଙ୍କ ଦ୍ୱାରା କରାଯାଇଛି । ଏପରି କରବି ଛଡ଼ା ଆପଣ ଆଉ କିଛି ଭାବିଛନ୍ତି କି ?''

ସବ୍-ଇନ୍ସପେକ୍ଟର : "ନାହିଁ ସାର୍ । ଏହା ସବୁଠାରୁ ଉତ୍ତମ ବାଟ । ଦଫାଦାର ଆମ କଥା ମାନିଯିବେ । ମାତ୍ର ସେ ମାଷ୍ଟ୍ରେ ଓ ଉଦୟ ଆଚାର୍ଯ୍ୟଙ୍କ ଉପରେ ମୋର ଭରସା ନାହିଁ ।"

ଇନ୍ସପେକ୍ଟର : "ଆପଣଙ୍କ ଅନୁମାନ ଅମୂଳକ ନୁହେଁ । ତଥାପି ଆପଣ ସେ ଶିକ୍ଷକଙ୍କୁ ଡକାଇ ଏ ସବୁ କଥା କହନ୍ତୁ । ମୋର ବିଶ୍ୱାସ, ଆପଣଙ୍କ ବ୍ୟବହାର କଥା ସେ ଭୁଲିଯିବେ । ଥରେ ଚେଷ୍ଟା କରନ୍ତୁ । ନଚେତ୍ ବିକଳ୍ପ ଚିନ୍ତା କରି କହନ୍ତୁ ।"

ସବ୍-ଇନ୍ସପେକ୍ଟର : "ସାର୍, ଏହାହିଁ ସବୁଠାରୁ ଭଲ ବାଟ ବୋଲି ମୁଁ ଭାବୁଛି । କିନ୍ତୁ ସେ ମାଷ୍ଟ୍ରଙ୍କୁ ଆପଣ ଟିକିଏ କହନ୍ତୁ । ସେ ମୋ ଉପରେ ଭାରି ଖପ୍ପା ।"

ଇନ୍ସପେକ୍ଟର : "ଆପଣ ଶିକ୍ଷକମାନଙ୍କ ପ୍ରତି ମଧ୍ୟ ଚୋର ଡାକୁଙ୍କ ପରି ବ୍ୟବହାର କରିବାଟା ବାହାରେ ଖରାପ ବାତାବରଣ ସୃଷ୍ଟି କରିଛି । ପ୍ରକୃତରେ ଆପଣଙ୍କ କଥା ରହି ନପାରେ । ମୁଁ ନିଜେ ତାଙ୍କୁ ସନ୍ତୁଷ୍ଟ କରିବାକୁ ଉଦ୍ୟମ କରିବି । ଆପଣ ଏ ଯୋଜନାରେ ଏକମତ ତ ?"

ସବ୍-ଇନ୍ସପେକ୍ଟର : "ଏହାଠାରୁ ଅଧିକ କିଛି ମୁଁ ଚିନ୍ତା କରି ନାହିଁ । ଏଣୁ ଆପଣ ବସାକୁ ଯାଇ ମାଷ୍ଟ୍ରଙ୍କ ସହିତ ଆଲୋଚନା କରନ୍ତୁ ।"

ଆଚ୍ଛା ହଉ, କହି ଇନ୍ସପେକ୍ଟର ବସାକୁ ଆସି କହିଲେ, " – ବେଶ୍ ଆଲୋଚନା ହେଲା । ସବୁ ଠିକ୍ ହୋଇଗଲାଣି, ଆପେ ଆପେ ଆପଣ ଆଉ ଜେଲ ଯିବେ ନାହିଁ । ଦଫାଦାରଙ୍କ ଚାକିରୀ ଠିକ୍ ରହିବ । ରଘୁବାବୁଙ୍କୁ କେହି ଦୋଷ ଦେଇ ପାରିବେ ନାହିଁ । ଆପଣ ଆଶ୍ରମକୁ ଯାଆନ୍ତୁ ।" ଏହାପରେ ଲାଲିମାକୁ ଚାହିଁ କହିଲେ, " – ତୋ ସାର୍ ଆଉ ଥାନାକୁ ଯିବେ ନାହିଁ । ତୋ କଥା ରହିଲା କି ନାହିଁ କହ ?" ଲାଲିମା ହସି ଦେଇ ଚାଲି ଯାଇଥିଲା । ମୋ ମୁଣ୍ଡ ଉପରୁ ଏକ ମସ୍ତବଡ଼ ପଥର ବୋଝ ଖସି ପଡ଼ିଥିବା ପରି ଅନୁଭବ କରିଥିଲି । ଥାନା ରଙ୍ଗମଞ୍ଚରେ ଅଭିନୀତ ହେଉଥିବା ଏକାଙ୍କିକାର ଯବନିକା ପତନ ଅତି ସହଜରେ ହୋଇଗଲା ।

\+ + + +

କଥାରେ ଅଛି, ଘର କରି କୁମ୍ଭୀର ସହିତ ଶତ୍ରୁତା କରିବା ଅବିବେକୀର

କାର୍ଯ୍ୟ । ମୁଁ ଥାନା ଠାରୁ ମାତ୍ର ୧୦୦ ଗ.ଜ. ଦୂରରେ ଥିବା ପରି ମନେ ହୁଏ । ରଘୁବାବୁଙ୍କ ପରି ହିଂସ୍ର ବ୍ୟକ୍ତି ଯେ କୌଣସି ସମୟରେ ପ୍ରତିଶୋଧ ପରାୟଣ ହେବା ଆଦୌ ଅସମ୍ଭବ ନୁହେଁ । ପାଠ କହୁଛି, ନଦୀ ନାଂଚ ନଖୀ ନାଂଚଙ୍କୁ ବିଶ୍ୱାସ କରିବା କର୍ତ୍ତବ୍ୟ ନୁହେଁ । ତେଣୁ ବହୁ ଚିନ୍ତା ପରେ ମୁଁ ଆଶ୍ରମର ମୋହ ତ୍ୟାଗ କରିବାକୁ ନିଷ୍ପତ୍ତି କରିନେଲି ।

ସ୍କୁଲର ଅବ୍ୟବହୃତ ଗୃହଟି ଉପରେ ମୋର ନଜର ପଡ଼ିଲା । ଆଚାର୍ଯ୍ୟଙ୍କୁ କହିବାରେ ସେ ଆନନ୍ଦର ସହିତ ସମ୍ମତ ହୋଇଥିଲେ । ମାତ୍ର ରୋଷେଇ ପାଇଁ କୌଣସି ସୁବିଧା ନଥିବାରୁ ତାହା ଏକ ପ୍ରଧାନ ଅନ୍ତରାୟ ସୃଷ୍ଟି କଲା । ଆଚାର୍ଯ୍ୟ ମୋତେ ସାଥୀରେ କୋଠଦେଶ ଇଷ୍ଟେଟର କମନ ମେନେଜରଙ୍କୁ ଦେଖାକରି ସବୁକଥା ବର୍ଣ୍ଣନା କରିବା ପରେ ମେନେଜର ନଳିନୀ କାନ୍ତ ମୁଖାର୍ଜୀ ଠୋ, ଠୋ, ହୋଇ ହସି ଉଠି କହିଲେ, " – ଆଚାର୍ଯ୍ୟେ, ଆପଣଙ୍କ ମୁଣ୍ଡ ଠିକ୍ ଅଛି ତ ? ୪ର୍ଥ ୫ମ ଶ୍ରେଣୀ ପିଲା ଭାତ ଖାଇ ହାତ ଧୋଇ ଜାଣି ନାହାନ୍ତି, ସେ ପୁଣି ଘରଛାଡ଼ି ଏତେ ଦୂରରେ ହଷ୍ଟେଲରେ ରହିବା କଥା ଆପଣ ଚିନ୍ତାକରି ପାରିଲେ କିପରି ?''

ଆଚାର୍ଯ୍ୟେ କଥା କହିବାରେ ସଂପୂର୍ଣ୍ଣ ଦକ୍ଷ । ସେ ମୋ ଦ୍ୱାରା ସ୍ଥାପିତ ଆଶ୍ରମ ଛାତ୍ରାବାସ ସଂପର୍କରେ ଏକ ସଂକ୍ଷିପ୍ତ ବର୍ଣ୍ଣନା କରି କହିଲେ, " – ଯଥା ସମୟରେ ମୋ କଥାର ସତ୍ୟତା ପ୍ରତିପାଦନ କରି ମୁଁ ଆପଣଙ୍କୁ ସ୍କୁଲକୁ ନେଇ ଆପଣ ଯାହାକୁ ଅସମ୍ଭବ କହୁଛନ୍ତି, ତାହା ନିଶ୍ଚୟ ସମ୍ଭବ କରି ଦେଖାଇ ଦେବି ।''

ମୁଁ ଆଶ୍ରମ ଛାଡ଼ିବାର କାରଣ ସଂପର୍କରେ ଆଚାର୍ଯ୍ୟେ ସବିଶେଷ ବର୍ଣ୍ଣନା କରିବା ପରେ ନଳିନୀ ବାବୁଙ୍କୁ କହିଲେ, " – ଏହି ବିଶେଷ କାରଣରୁ ମୁଁ ଆପଣଙ୍କ ପାଖେ ସାହାଯ୍ୟପ୍ରାର୍ଥୀ ।''

ପ୍ରାୟ ୧୫ ଦିନ ଭିତରେ ଇଷ୍ଟେଟର ଆର୍ଥିକ ସହାୟତାରେ ଆଚାର୍ଯ୍ୟେ ସ୍କୁଲର ପୂର୍ବ ପଶ୍ଚିମକୁ ଲମ୍ବିଥିବା ବ୍ଲକ୍‌ର ଶେଷ ମୁଣ୍ଡରେ ରୋଷ ଘରଟିଏ କରିଦେଲେ । ମଝିରେ ଦକ୍ଷିଣରୁ ଉତ୍ତରକୁ ଲମ୍ବିଯାଇଥିବା ବ୍ଲକ୍ ଓ ପ୍ରଥମ ବ୍ଲକ୍ ମଧ୍ୟରେ ପୁଷ୍କରିଣୀକୁ ଯିବା ପାଇଁ ଯଥେଷ୍ଟ ବାଟ ରହିଥିଲା ।

ଏଠାରେ ଆଉ ଗୋଟିଏ କଥା ସୂଚାଇ ଦେବା ନିତାନ୍ତ ଆବଶ୍ୟକ ମନେ ହୁଏ । ନଟବାବୁ ଓ ମୁଁ ଏକତ୍ର ବିଷ୍ଣୁପୁରରେ ରହିଥିଲୁ । ମୁଁ ଅସିବା ପରେ ପିଲାମାନେ ଆଶ୍ରମକୁ ଆସିଲେ ନଟବାବୁଙ୍କ ବିଷ୍ଣୁପୁରରେ ରହିବା ଆଉ ଆବଶ୍ୟକ

ହେଲା ନାହିଁ । ଘନବାବୁଙ୍କ ଉଦ୍ୟମରେ ୧୯୪୨ର ଜୁଲାଇ ମାସ ଶେଷ ଆଡ଼କୁ ନଟବାବୁ ମଧ୍ୟ ନିମାପଡ଼ା ମଡ଼େଲ ଉ.ପ୍ରା.ର ଜଣେ ସହକାରୀ ଶିକ୍ଷକ ଭାବରେ ନିଯୁକ୍ତି ପାଇ ଆଶ୍ରମରେ ରହିଥିଲେ ।

ସେପ୍ଟେମ୍ବର ମାସର ଅଧାଅଧି ବେଳକୁ ଆମେ ଆଶ୍ରମ ତ୍ୟାଗ କରି ଉ.ପ୍ରା.ସ୍କୁଲକୁ ଆସିଲୁ । ସବୁ ସମୟ ପାଇଁ ସ୍କୁଲରେ ରହିବା ଫଳରେ ଗୋଟିକ ପରେ ଆଉ ଗୋଟିଏ ଅସୁବିଧା ମୋ ନଜରକୁ ଆସିଲା ।

ଅନେକଦିନ ତଳୁ ଡାକ୍ତରଖାନା ପାଖ ସାହିର ପୁରୁଷ, ସ୍ତ୍ରୀ ଓ ପିଲାମାନେ ଅବାରିତ ଗତିରେ ସ୍କୁଲ ଶ୍ରେଣୀ କୋଠରୀମାନଙ୍କ ସାମ୍ନାରେ ସ୍କୁଲ ପଛପଟ ପୁଷ୍କରିଣୀକୁ ଅବାରିତ ଗତିରେ ଯାତାୟତ କରୁଥିଲେ । ହଠାତ୍ ବନ୍ଦ କରିବା ଉଚିତ ମନେ ହେଲା ନାହିଁ । ସ୍କୁଲ ସମ୍ମୁଖରେ ଆଦୌ ଫାଟକ ନଥିଲା । ଆଚାର୍ଯ୍ୟଙ୍କୁ କହିବାରେ ସେ ଏକ ସୁଦୃଶ୍ୟ ଫାଟକର ବ୍ୟବସ୍ଥା କରି ଦେଇ ଦେଲେ ମଧ୍ୟ ସାହି ଲୋକଙ୍କୁ ଫାଟକର ଗତିର ପ୍ରତିରୋଧ କରିବା ଆଦୌ ସମ୍ଭବ ହେଲା ନାହିଁ । ମୁଁ ପ୍ରତିଦିନ ଆସୁଥିବା ଲୋକମାନଙ୍କୁ ଏହା ବନ୍ଦ କରିବାକୁ ବାରମ୍ବାର କହିଲି । କିଛିଦିନ ପରେ ଗୋଟିଏ ଚାବି ଆଣି ଗେଟ୍‌ରେ ପକାଇ ଦେଲି । ଲୋକେ ଆଉ ଆସିବାକୁ ସାହସ କଲେ ନାହିଁ । ମାତ୍ର ଅନ୍ୟବାଟ ଦେଇ ପୋଖରୀଟିକୁ ବ୍ୟବହାର କଲେ । ପଢ଼ା ହେଉଥିବା ବେଳେ ହତା ମଧ୍ୟ ଦେଇ ଯାତାୟତ ସଂପୂର୍ଣ୍ଣ ବନ୍ଦ ହୋଇ ଯାଇଥିଲା ।

ଏଥର ମୁଁ ଛାତ୍ରାବାସ ପାଇଁ କିଛି ନୟମ କରିଦେଲି । ସମସ୍ତେ ସୂର୍ଯ୍ୟୋଦୟ ପୂର୍ବରୁ ଉଠିବେ । ବିଛଣାରେ ବସି ପ୍ରାର୍ଥନା ଏବଂ ପରେ ପରେ ହତା ସ୍କୁଲ ବାରଣ୍ଡା ଆଦି ଓଳାଇ ସଫା କରିବା ପରେ ନିତ୍ୟକର୍ମ ସାରି ପଢ଼ାପଢ଼ି ଆରମ୍ଭ କରିବେ । ଏ ପର୍ଯ୍ୟନ୍ତ ମୁଁ ବଗିଚା କଥା ଚିନ୍ତା କରି ନଥାଏ । ଏଇ ଶୃଙ୍ଖଳାରେ କିଛିଦିନ ଚାଲିବା ପରେ ବହୁ ଅଭିଭାବକ ଓ ସାଧାରଣ ଜନତାଙ୍କ ଦୃଷ୍ଟି ଆମ ସ୍କୁଲ ପ୍ରତି ସ୍ୱତଃ ଆକୃଷ୍ଟ ହୋଇଥିଲା । ବିଶେଷ କରି ଅନ୍ତେବାସୀମାନଙ୍କର ପଢ଼ା ଓ ଲେଖାପ୍ରତି ଆମେ (ନଟବାବୁ ଓ ମୁଁ) ତୀକ୍ଷ୍ଣ ଦୃଷ୍ଟି ଦେଇଥାଉ । ମୁଁ ଗୁରୁକୁଳାଶ୍ରମର କିଛି ଅଭ୍ୟାସ ପ୍ରଚଳନ କରୁଥିବା ଦେଖି ଆଚାର୍ଯ୍ୟେ ଖୁବ୍ ସନ୍ତୁଷ୍ଟ ଥିଲେ । ପୁନଶ୍ଚ ମୁଁ ଯେତିକି ପ୍ରଶଂସା ପାଇବା କଥା, ତାଠାରୁ ଯଥେଷ୍ଟ ଅଧିକ ପ୍ରଶଂସା ଲୋକଙ୍କ ଆଗରେ କରିବାରେ ଲାଗିଲେ ।

## ଆମ ଉ.ପ୍ରା.ରେ ଇଂରାଜୀ ଶିକ୍ଷକଙ୍କ ନିଯୁକ୍ତି

ଆମ ଉ.ପ୍ରା.ରେ ୧୯୪୪-୪୫ରେ ଇଂରାଜୀ ଶିକ୍ଷାଦାନ ପାଇଁ ଜଣେ ଶିକ୍ଷକଙ୍କୁ ନିଯୁକ୍ତି ଦିଆଗଲା । ତାଙ୍କ ନାମ ଯୋଗେନ୍ଦ୍ର ନାଥ ସ୍ୱାଇଁ । ସେ ନିମାପଡ଼ା ହାଇସ୍କୁଲର ଶିକ୍ଷକ ଥିଲେ ଓ ଅତୀତର ସେହି ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ମଧ୍ୟ ଥିଲେ । ତେଣୁ ତାଙ୍କଠାରେ ଜାତୀୟତା, ସତ୍ୟବାଦିତା ତଥା ନିର୍ଭୀକତା ଓ ସ୍ପଷ୍ଟବାଦିତା ସାକ୍ଷୀଗୋପାଳ ଅଧ୍ୟୟନ ସମୟରୁ ହିଁ ବିକଶିତ ହୋଇ ଉଠିଥିଲା ।

ଘଟଣାଚକ୍ରରେ ଇନ୍‌ସ୍‌ପେକ୍ଟର ସୁକାନ୍ତ ରାଓଙ୍କ ସହିତ ତାଙ୍କର କିଛି ଯୁକ୍ତି ତର୍କ ହେଲା ଓ ଇନ୍‌ସ୍‌ପେକ୍ଟର ଏକ ଭୂଗୋଳ ପୁସ୍ତକର ସାତକୋଣିଆ ଗଣ୍ଡର ଚିତ୍ର ଭୁଲ୍ ବୋଲି କହିବାରେ ଯୋଗୀବାବୁ କହିଥିଲେ, "ସରକାର ଯଦି ଭୁଲ୍ ବହିଛାପନ୍ତି, ମୁଁ ସେଇ ଚିତ୍ରକୁ ଅନୁସରଣ କରି ଅନୁରୂପ ଚିତ୍ର କଳାପଟାରେ ଅଙ୍କନ କରି ଶିକ୍ଷା ଦେଉଛି । ଯଦି ସରକାର ଭୁଲ ତେବେ ଆପଣଙ୍କ କହିବା ଅନୁସାରେ ମୋ ଅଙ୍କନ ମଧ୍ୟ ଭୁଲ ହେବ ।"

ଉପରିସ୍ଥ ହାକିମଙ୍କ ସହିତ ଯୁକ୍ତିତର୍କ କରିବା ଓ ତାଙ୍କ କଥାକୁ ମାନି ନନେବା ଅପରାଧରେ ତାଙ୍କୁ ଚାକିରୀଟି ହରାଇବାକୁ ପଡ଼ିଥିଲା । କହିବା ନିଷ୍ପ୍ରୟୋଜନ ଯେ ଯୋଗୀବାବୁଙ୍କ ପରି ସର୍ବ ବିଷୟରେ ଦକ୍ଷ ଶିକ୍ଷକ ହାଇସ୍କୁଲରେ କେହି ନଥିଲେ ।

ସତ୍ୟପ୍ରକାଶରେ ନିର୍ଭୀକତା ହିଁ ଯୋଗୀବାବୁଙ୍କର କାଳ ହେଲା । ସେ କର୍ମଚ୍ୟୁତ ହୋଇ ଘରେ ବସି ରହିଥିଲେ । ଆଚାର୍ଯ୍ୟେ ଅନୁରୋଧ କରିବାରୁ ସେ ଆମ ସ୍କୁଲରେ ଯୋଗ ଦେଲେ ଇଂରାଜୀ ଶିକ୍ଷକ ରୂପେ ।

ବର୍ତ୍ତମାନ ଆମ ସ୍କୁଲର ଶିକ୍ଷକ ସଂଖ୍ୟା ୭ ହୋଇଗଲା । ଯୋଗୀବାବୁଙ୍କ ଉପସ୍ଥିତି ଆମ ସ୍କୁଲରେ ହର୍ଷ ଉଲ୍ଲାସର ବାତାବରଣ ସୃଷ୍ଟି କରିଥିଲା । ୪ର୍ଥ ୫ମ ଶ୍ରେଣୀରେ ଇଂରାଜୀ ଶିକ୍ଷାଦାନ – ତାହା ପୁଣି ଯୋଗୀବାବୁଙ୍କ ଦାୟିତ୍ୱରେ ହେଉଛି ଜାଣି ଆଖପାଖ ଏପରିକି ୩/୪ ମାଇଲ ଦୂରର ଛାତ୍ରମାନେ ଆମ ସ୍କୁଲରେ ନାମ ଲେଖାଇବାକୁ ଧାଡ଼ି ଲଗାଇଲେ । ୪୫ ମସିହାରେ ୪ର୍ଥ ଶ୍ରେଣୀଟି ସେକ୍ସନ ହୋଇଗଲା । ସାତଜଣ ଶିକ୍ଷକ ଥିବାରୁ ଅଧ୍ୟାପନାରେ ଅସୁବିଧା ନହେଲେ ମଧ୍ୟ ଶ୍ରେଣୀ କୋଠରୀ ପାଇଁ ଛାତ୍ରାବାସ ରୂପେ ବ୍ୟବହୃତ କୋଠରୀରେ ସେକ୍ସନ୍‌ର ଅଧ୍ୟାପନା ଚାଲିଲା । ଦିନରେ କ୍ଲାସ ଓ ରାତିରେ ଛାତ୍ରାବାସ – ସେଇ ଗୋଟିଏ କୋଠରୀରେ ହେଉଥାଏ ।

କ୍ରମେ ଆମ ଛାତ୍ରାବାସର ସୁନାମ ସହିତ ଛାତ୍ରସଂଖ୍ୟା ମଧ୍ୟ ଯଥେଷ୍ଟ ବୃଦ୍ଧି ପାଇବାରେ ଲାଗିଲା । ରାତିରେ ପିଲାମାନେ ବିଭିନ୍ନ ଶ୍ରେଣୀ କକ୍ଷରେ ଅଧ୍ୟୟନ କରୁଥିଲେ ।

ଯୋଗୀବାବୁଙ୍କ ଘର ଆମ ସ୍କୁଲଠାରୁ ୩-୪ ମାଇଲ ଦୂର ଥିଲା । ସେ ନିୟମିତ ଯଥା ସମୟରେ ବିଦ୍ୟାଳୟରେ ଉପସ୍ଥିତ ହେବାରେ ଆଦୌ ତ୍ରୁଟି କରୁନଥିଲେ । ମାତ୍ର ସ୍ଥାନୀୟ ଶିକ୍ଷକମାନେ ଉପସ୍ଥିତ ହେବାରେ ପୂର୍ବ ଅଭ୍ୟାସ ବରକରାର ଥିଲା । ଦିନେ ଯୋଗୀବାବୁଙ୍କୁ ଅନୁରୋଧ କର କହିଲି, " – ଆପଣ ମୋର ଗୁରୁତୁଲ୍ୟ ବ୍ୟକ୍ତି । ଯଦି ଦୟାକରି ଏ ଛାତ୍ରାବାସରେ ରହିବାକୁ ଆସି ପାରନ୍ତେ, ମୁଁ ଅନେକ କଥା ଆପଣଙ୍କଠାରୁ ଶିକ୍ଷା କରିବାର ସୁଯୋଗ ପାଆନ୍ତି । ଆଶା, ମୋ ଅନୁରୋଧ ଉପେକ୍ଷିତ ହେବ ନାହିଁ ।''

ଦୁଇଦିନ ପରେ ଯୋଗୀବାବୁ ଆମ ଛାତ୍ରାବାସରେ ରହିଲେ । ଛାତ୍ରାବାସଟିକୁ ଏକ ଆଶ୍ରମ ଢ଼ାଞ୍ଚାରେ ପରିଚାଳିତ କରିବା ପାଇଁ ଯୋଗୀବାବୁଙ୍କୁ ଅନୁରୋଧ କଲି । ଉତ୍ତରରେ ସେ କହିଲେ, " – ଆପଣଙ୍କ ସାହସ ଓ ଦୃଢ଼ ମନୋବଳ ଆପଣଙ୍କ ସଦିଚ୍ଛା ପୂରଣରେ କଦାପି ଅନ୍ତରାୟ ହେବନାହିଁ । ଆପଣ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ୪ର୍ଥ ୫ମ ପିଲାଙ୍କୁ ନେଇ ଏକ ଛାତ୍ରାବାସର ପରିକଳ୍ପନା ଏକ ଅଭିନବ ଚିନ୍ତା । ମୁଁ ନିମିତ୍ତ ମାତ୍ର । ଆପଣଙ୍କୁ ଯଥା ଶକ୍ତି ସାହାଯ୍ୟ ଓ ସହଯୋଗ ନିଶ୍ଚୟ ଦେବି । ଆପଣଙ୍କ ଉଦ୍ୟମ ପୁରୀ ଜିଲାରେ ନିଶ୍ଚୟ ନାହିଁ, ଓଡ଼ିଶାରେ କେଉଁଠି ଥିବ କି ନାହିଁ ସନ୍ଦେହ । ଭଗବାନ ଆପଣଙ୍କ ଏ ମହତ୍-କାର୍ଯ୍ୟରେ ଉପରେ ଆଶୀର୍ବାଦ ବର୍ଷଣ କରିବେ ।"

ଏହି ସମୟକୁ ଆମ ଛାତ୍ରାବାସର ଛାତ୍ରସଂଖ୍ୟା ୧. ଶିକ୍ଷକ ୩ ଓ ପୂଜାରୀ ୧– ଏପରି ୧୭ ଜଣଙ୍କୁ ନେଇ ଆମେ ଅଗ୍ରସର ହେଲୁ । ମାତ୍ର ପରେ ପରେ ଛାତ୍ରାବାସର ସଂଖ୍ୟା ୨୪ ହୋଇଯାଇଥିଲା । ଆମେ ପ୍ରଥମ ପର୍ଯ୍ୟାୟରେ ଅନ୍ତେବାସୀ ନିୟମ କରିଥିଲୁ - ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟାତ୍ୟାଗ, ପ୍ରାର୍ଥନା, ସଫାଇ । ଏବେ ନିଜର ଖାଇବା ବାସନ, ଲୁଗାପଟା ସଫା, ଖନ୍ଦା ପାଇଖାନା (trench ) ବ୍ୟବହାର, ବଗିଚା କାମ, ହାଟରୁ ରୋଷେଇ ପାଇଁ ପରିବା ଓ ଅଳ୍ପ ସଉଦା ଆଣିବା କାର୍ଯ୍ୟ ଯୋଗ କରାଗଲା । ମେସ୍‌ର ପରିଚାଳନା ଦାୟିତ୍ୱ ନଟବାବୁଙ୍କ ଉପରେ ନ୍ୟସ୍ତ ରହିଲା । ସକାଳେ ପ୍ରାୟ ଦେଢ଼ଘଣ୍ଟା ପିଲାମାନେ ନିର୍ଜନରେ ପାଠ-ପ୍ରସ୍ତୁତିରେ ନିମଗ୍ନ ରହିବେ ଓ ଆମେ ପ୍ରତି ପିଲା ପାଖକୁ ଯାଇ ତା'ଙ୍କ କାର୍ଯ୍ୟର ସମୀକ୍ଷା କରିବୁ ।

ସ୍କୁଲ ଓ ପୋଖରୀ ମଝିରେ ଥିବା ପ୍ରଶସ୍ତ କ୍ଷେତ୍ର ପଡ଼ିଆ ଓ ଅବ୍ୟବହୃତ ଅବସ୍ଥାରେ ପଡ଼ି ରହିଥିଲା । କେବଳ ଉତ୍ତର ଦିଗରେ କେତୋଟି ନଡ଼ିଆ ଗଛ ଲାଗିଥିଲା । ମାତ୍ର ସେଗୁଡ଼ିକ ଅଯତ୍ନବର୍ଦ୍ଧିତ ଥିଲା । ଏହି ବିସ୍ତୃତ ପଡ଼ିଆର ଦକ୍ଷିଣ ପଟରେ ବଗିଚାର ବ୍ୟବସ୍ଥା କଲୁ । ଉତ୍ତରପଟ ନଡ଼ିଆ ଗଛର ସୁରକ୍ଷା ସହିତ ଦୁଇ ଧାଡ଼ି ମଧ୍ୟରେ ଥିବା ମେଲା ସ୍ଥାନରେ ଖନ୍ଦା ପାଇଖାନାର ବ୍ୟବସ୍ଥା କରି ତହିଁରେ ଛାଞ୍ଚ ବାନ୍ଧିଥିଲୁ ଓ ପ୍ରତ୍ୟେକ ପିଲା ଏହି ଟ୍ରେଞ୍ଚ ବ୍ୟବହାର କରି ତହିଁରେ କିଛି ମାଟି ପକାଇବା ପାଇଁ ସ୍ପଷ୍ଟ ନିର୍ଦ୍ଦେଶ ଦିଆଯାଇଥିଲା । ବର୍ତ୍ତମାନ ମୋର ପରିକଳ୍ପିତ ସମ୍ଭାବନା ବାସ୍ତବ ରୂପ ନେବା ପଥରେ ଅଗ୍ରଗତି କରୁଥିବା ଦେଖି ମୁଁ ବିଶେଷ ଆନନ୍ଦିତ ହେଉଥିଲି ।

କିଛିଦିନ ପରେ ନିମାପଡ଼ା ଠାରୁ ପ୍ରାୟ ୧୦-୧୨ ମାଇଲ ଦୂରସ୍ଥ ରେଘାଂଲୋ ଗ୍ରାମର ଦୁଇଟି ପିଲା ବାଉରୀବନ୍ଧୁ ଓ ହାଡ଼ିବନ୍ଧୁ ଆମ ଛାତ୍ରାବାସରେ ରହି ଅଧ୍ୟୟନ କରିବାକୁ ଆସିଲେ । ଏହାପରେ ୪-୫ ମାଇଲ ଦୂରବର୍ତ୍ତୀ ଆଳିପିଙ୍ଗଳର କୃଷ୍ଣଚନ୍ଦ୍ର ନନ୍ଦ, ଦହିଜଙ୍ଗର ଆଦିକନ୍ଦ ଏବଂ ଡ଼େଣୁଅ, ଲମ୍ବିଲୋ, ଧଳେଶ୍ୱର ଏବଂ ଶ୍ରୀମୁଖ ଅଞ୍ଚଳର ପିଲା ଆମ ସ୍କୁଲକୁ ଆସିଲେ ଓ କେତେକ ଛାତ୍ରାବାସରେ ମଧ୍ୟ ରହିଲେ । ଶେଷକୁ ଅବସ୍ଥା ଏପରି ହେଲା ଯେ ନିମାପଡ଼ା ହାଇସ୍କୁଲ ହଷ୍ଟେଲରେ ସ୍ଥାନ ପାଇପାରୁନଥିବା କିଛି ଛାତ୍ର ଆମ ଛାତ୍ରାବାସରେ ରହିବାର ଇଚ୍ଛା ପ୍ରକାଶ କଲେ । ଏଥିପାଇଁ ହେଡ୍‌ମାଷ୍ଟରଙ୍କ ଅନୁମତି ଓ ଆମ ଛାତ୍ରାବାସର ନିୟମଶୃଙ୍ଖଳାକୁ ମାନିବାକୁ ବାଧ୍ୟ ବୋଲି ପିଲାଙ୍କଠାରୁ ଲେଖା ରଖାଯାଇ ୩ ଜଣ ଛାତ୍ରଙ୍କୁ ସ୍ଥାନ ଦିଆଯାଇଥିଲା ।

କୋଣାର୍କ ନିକଟସ୍ଥ କାଇମାଟି ଗ୍ରାମର ବନମାଳୀ ନାୟକ ୯ମ ପାଶ୍ କରି ବାଲ୍ୟ ବିବାହ କରିଥିଲେ ଓ ପଢ଼ା ଛାଡ଼ିଥିଲେ । ଦୁଇବର୍ଷ ପରେ ପୁଣି ପଢ଼ିବାର ପ୍ରବଳ ଆଗ୍ରହ ନେଇ ନିମାପଡ଼ା ହାଇସ୍କୁଲକୁ ଆସିଲେ ଓ ନାମ ମଧ୍ୟ ଲେଖାଇ ଦେଲେ । ମାତ୍ର ହଷ୍ଟେଲରେ ସ୍ଥାନାଭାବ ଯୋଗୁ ଅତ୍ୟନ୍ତ ବିମର୍ଷ ମନରେ ମୋ ପାଖକୁ ଆସିଲେ । ମୁଁ ଆମ ନୀତିନିୟମ ସଂପର୍କରେ କହିଲି ଓ ପିଲାଟିର ଆଗ୍ରହାତିଶଯ୍ୟକୁ ଉପେକ୍ଷା କରିବା ସମ୍ଭବପର ହେଲା ନାହିଁ । ଆମ ଛାତ୍ରାବାସରେ ରହି ସେ ଏକ ସ୍ୱତନ୍ତ୍ର ଭାବରେ ଏକାକୀ ଅଧ୍ୟୟନ କରିବେ । ଆମେ ଶୋଉଥିବା ଶ୍ରେଣୀଗୃହରେ ତାଙ୍କ ଶୋଇବାର ବ୍ୟବସ୍ଥା କରାହେଲା । ଛାତ୍ରଟିର ବୟସ ପ୍ରାୟ ୧୭ରୁ ଊଣା ନଥିଲା । ତା'ର ମନୋବଳ ଓ ନିଷ୍ଠାକୁ ମନେ ପକାଇ ଏବେ ମଧ୍ୟ ମୁଁ ଉଲ୍ଲସିତ ହୋଇ ଉଠୁଛି । ଭବିଷ୍ୟତରେ ଏଇ ବନମାଳୀ ନାୟକ ଓ.ଏ.ଏସ୍

ପାଶ୍‌କରି ତହସିଲଦାର ରୂପେ ଅବସ୍ଥିତ ହୋଇଥିଲେ । ପିପିଲିକୁ ତହସିଲଦାର ହୋଇ ଆସିବା ପରେ ଆମ ଗାଁରେ ପହଞ୍ଚି ମୋତେ ସାକ୍ଷାତ କଲେ । ଏହା ୧୯୬୨ ମସିହାର ଘଟଣା ପରି ମନେ ହେଉଛି ।

ସେତେବେଳକୁ ମୁଁ ବାଲକାଟି ଉ.ପ୍ରା.ରେ ପ୍ରଧାନ ଶିକ୍ଷକ ଥାଏ । ମୁଁ ତ ତାଙ୍କୁ ଚିହ୍ନିପାରିଲି ନାହିଁ ମାତ୍ର ସେ ମୋତେ ଭକ୍ତି ନମ୍ର ହୃଦୟରେ ଯେଉଁ ସମ୍ମାନ ଦେଖାଇ ନିଜର ପରିଚୟ ଦେଲେ ମୁଁ ଅଭିଭୂତ ହୋଇ ପଡ଼ିଲି । ମନେ ହେଲା, ମୋ ସାଧନାର ସିଦ୍ଧି ମୋତେ ମିଳିଗଲା । ଦୀର୍ଘ ସମୟ ପାଠପଢ଼ା ବେଳର କଥା ସେ କହୁଥାନ୍ତି ଓ ମୋ ଚକ୍ଷୁ ସମକ୍ଷରେ ସେ ସବୁ କଥା ଚଳଚିତ୍ରର ରୂପେଲି ପରଦାରେ ଝଲସି ଉଠୁଥିବା ପରି ମୁଁ ଅନୁଭବ କରି ଅପାର ଆନନ୍ଦରେ ଅଭିଭୂତ ହୋଇ ପଡୁଥାଏ। କିଛି ସମୟ ପରେ ବନମାଳୀ ଆନନ୍ଦରେ ଅଭିଭୂତ ହୋଇ ପଡୁଥାଏ । କିଛି ସମୟ ପରେ ବନମାଳୀ ବିଦାୟ ନେଲେ ଓ ପିପିଲିରେ ତାଙ୍କ ସହିତ ଅନେକ ଥର ସାକ୍ଷାତ ହୋଇଥିଲା । ମୋ ସାହାଯ୍ୟ ଓ ସହାନୁଭୂତିରୁ ସେ ଆଜି ଏହି ପଦବୀରେ ଅଧିଷ୍ଠିତ ବୋଲି ତହସିଲ ଅଫିସର କର୍ମଚାରୀମାନଙ୍କୁ ଡାକି ମୋର ଗୁଣଗାନ କରିଥିବା କଥା ମୁଁ କଦାପି ପାସୋରି ପାରିବି ନାହିଁ ।

ଯୋଗୀବାବୁ ରହିବା ପରେ ଆମର ଶ୍ରେଣୀ ଶିକ୍ଷାଦାନ ବେଶ୍ ଅଗ୍ରଗତି କଲା । ଏପରିକି ହାଇସ୍କୁଲ ହେଡ୍‌ମାଷ୍ଟ୍ର ପଦ୍ମନାଭ ମହାପାତ୍ର ଆମ ପିଲାମାନେ ବେଶ୍ ଭଲ କରୁଥିବା ଓ ଭଦ୍ରତା, ନମ୍ରତା ଆଦିରେ ଉତ୍ତମ ତାଲିମ ପାଇଥିବା କଥା ଖୋଲାଖୋଲି ଭାବରେ ପ୍ରକାଶ କରୁଥିଲେ । ଏହାହିଁ ଥିଲା ଜଣେ ଉପଯୁକ୍ତ ଛାତ୍ରର ଅନାବିଳ ଗୁରୁଭକ୍ତିର ଉତ୍କୃଷ୍ଟ ନିଦର୍ଶନ ।

ଛାତ୍ରାବାସର ଛାତ୍ରମାନଙ୍କୁ ସାଥୀରେ ନେଇ ପାଶ୍ୱବର୍ତ୍ତୀ ସ୍ଥାନ, ମନ୍ଦିର, କୋଠଦେଶ ଇଷ୍ଟେଟର ପ୍ରଥମ ମାଲିକ ଜଗବନ୍ଧୁ ରାଏଟ୍‌ସିଂଙ୍କ ଉଆସ, ଗୁଣ୍ଡିଚା ବାଡ଼ି, ମଠ, କୁଶଭଦ୍ରା ନଦୀ ଓ ପାଖ ଆଖରେ ଥିବା ସ୍ଥାନମାନଙ୍କ ପରିଦର୍ଶନ ସହିତ ପରିଭ୍ରମଣ ଉଦ୍ଦେଶ୍ୟରେ ପ୍ରତି ମାସର ଶେଷ ରବିବାର ଦିନକୁ ସ୍ଥିର କରାଯାଇଥିଲା। ଏଥିରେ ମୁଖ୍ୟତଃ ଛାତ୍ରାବାସର ଛାତ୍ର ଓ କିଛି ସ୍ଥାନୀୟ ପିଲା ଯୋଗ ଦେଉଥିଲେ। ରବିବାର ଯୋଗୁ ଯୋଗୀବାବୁ ଘରକୁ ଯାଉଥିଲେ । ମୁଖ୍ୟତଃ ଏ କାର୍ଯ୍ୟ ମୋତେ ହିଁ କରିବାକୁ ପଡୁଥିଲା ।

ଆମ ସ୍କୁଲ ତଥା ଛାତ୍ରାବାସର ପରିଚାଳନା ଅତ୍ୟନ୍ତ ଶୃଙ୍ଖଳିତ ହୋଇ ଆସିଥିଲା। ଦିନେ ହାଇସ୍କୁଲର ଶିକ୍ଷକ ବିନାୟକ ଦାସ, ୟୁ.ଭି.ପି. (ଉଭୟ ଭାଷା

ପ୍ରବୀଣ) ଏକ ସାନ୍ଧ୍ୟ ଆସରର ବ୍ୟବସ୍ଥା କରି ତହିଁରେ ମୋତେ ସଭ୍ୟ ଭାବରେ ଗ୍ରହଣ କଲେ ଓ ସର୍ବମୋଟ ପ୍ରଥମେ ଏଥିରେ ୯ ଜଣ ସଭ୍ୟ ରହିଥିଲେ । ସଭ୍ୟମାନେ ସ୍ଥାନୀୟ ବ୍ୟାଙ୍କ ପରିସର ମଧ୍ୟରେ ସମବେତ ହୋଇ ନାନା ଖୁସି ଗପ ସହିତ ପ୍ରାଚୀନ ସାହିତ୍ୟ ଆବୃତ୍ତି କରୁଥିଲେ । ବିନାୟକ ବାବୁଙ୍କ ଛାନ୍ଦଗୁଡ଼ିକର ଭାବାର୍ଥ ବୁଝାଇବା ଅତ୍ୟନ୍ତ ହୃଦୟ ଓ ଆକର୍ଷଣୀୟ ଥିଲା ।

କିଛିଦିନ ପରେ ଆମ ସାନ୍ଧ୍ୟ ଆସର ଏକ ସାଂସ୍କୃତିକ ଆସରରେ ପରିଣତ ହୋଇ ଏକ ପତ୍ରିକା ପ୍ରକାଶ କରିବାର ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା ।

## କୁଶଭଦ୍ରା ପତ୍ରିକା ପ୍ରକାଶନ

ପତ୍ରିକାର ନାମ 'କୁଶଭଦ୍ରା' ରଖାଗଲା । ବିଭିନ୍ନ ବ୍ୟକ୍ତି ସେମାନଙ୍କର ଲେଖାମାନ ବିନାୟକ ବାବୁଙ୍କୁ ଦେବେ । ସେ ପ୍ରକାଶଯୋଗ୍ୟ ଲେଖାଗୁଡ଼ିକୁ ମୋ ପାଖକୁ ପଠାଇବେ । ମୁଁ ତାକୁ ଏକ ପତ୍ରିକା (ହାତଲେଖା) ଆକାରରେ ପ୍ରକାଶ କରିବି । ଅତି ବେଶୀରେ କାର୍ବନ ଦେଇ ମୁଁ ୨ଟି କପି କରି ପାରୁଥିଲି । ଏହି ଦୁଇକପି ସଭ୍ୟମାନେ ଜଣକଠାରୁ ଅନ୍ୟଜଣେ ପାଠ କରି ପୁଣି ଫେରାଇ ଦେଉଥିଲେ । ପ୍ରତି ସଂଖ୍ୟାରେ ମୋର ଗୋଟିଏ ଲେଖାଏଁ ଲେଖା ବାହାରୁଥାଏ । ପ୍ରାୟ ୪ ମାସ ପରେ ବିନାୟକ ବାବୁ ଅନ୍ୟତ୍ର ଚାଲିଯିବାରୁ ମୁଁ ପତ୍ରିକାର ସଂପାଦକ ରୂପେ ଆଉ ୩/୪ ମାସ ଚଳାଇଲି । ଏହାପରେ ପତ୍ରିକାଟି ବନ୍ଦ କରିବାକୁ ବାଧ୍ୟ ହୋଇଥିଲି ।

ମୁଁ ମୋ ମୂଳଲକ୍ଷ୍ୟରୁ ଖାସ ଏଇ ପତ୍ରିକା ଲାଗି ବିଚ୍ୟୁତ ହୋଇ ପଡୁଛି । ତେଣୁ ପତ୍ରିକା ବନ୍ଦ କରିଦେବା ପରେ ମୁଁ ଏକ ଉ.ପ୍ରା.ସ୍କୁଲରେ ବଡ଼ ଧରଣର ପୁରସ୍କାର ବିତରଣ ସଭା କରିବାକୁ ଚିନ୍ତା କଲି । ପ୍ରଥମେ ଯୋଗୀବାବୁଙ୍କ ସହିତ ପରାମର୍ଶ କରିବାରେ ସେ କହିଲେ, " – ଉଦ୍ଦେଶ୍ୟ ମହତ୍ । ଏପରି କାର୍ଯ୍ୟ କୌଣସି ଉ.ପ୍ରା.ରେ ହେବା କଥା ମୁଁ ଆଦୌ ଶୁଣିନାହିଁ । ଏଥିରେ ପରିଚାଳନା ଓ ଅର୍ଥ ଯୋଗାଡ଼ ଦୁଇଟି ଯାକ କଷ୍ଟକର ବ୍ୟାପାର । କିନ୍ତୁ କୃତକାର୍ଯ୍ୟ ହୋଇପାରିଲେ ପ୍ରଶଂସାର ସୀମା ରହିବ ନାହିଁ । ମୁଁ ଯଥାସାଧ୍ୟ ସାହାଯ୍ୟ କରିବି । ଆଚାର୍ଯ୍ୟଙ୍କୁ ପଚାରନ୍ତୁ ।"

ଯୋଗୀବାବୁଙ୍କ ସକାରାତ୍ମକ ମତ ମୋତେ ଆହୁରି ଟିକିଏ ଅଧିକ ଆଶାୟୀ କରି ପକାଇଥିଲା । ମୁଁ ତହିଁଆରଦିନ ଆଚାର୍ଯ୍ୟଙ୍କୁ ଏ କଥା ପଚାରିବାରେ ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, – "ଯୋଗୀ ଘରେ ଢ଼ିଙ୍କି" –ଏପରି

ଭାବନା ତୁମ ମୁଣ୍ଡକୁ ଜୁଟିଲା କିପରି ? ଏ ସ୍କୁଲରେ ଏ ପ୍ରକାର କଳ୍ପନା କେହି କେବେ କରି ନଥିଲେ । ଏହା ଏକ ଆୟାସସାଧ୍ୟ କାର୍ଯ୍ୟ ।''

ମୋର ଆଗ୍ରହ ଓ ଯୋଜନା ସଂପର୍କରେ ସବିଶେଷ ଜଣାଇବା ପରେ କହିଲେ, " - ଠିକ୍ ଅଛି । ତୁମ ସମ୍ଭାବନାର ଏକ ପରୀକ୍ଷା ହୋଇଯାଉ । ମୁଁ କିଛି କରିପାରିବି ନାହିଁ । କେବଳ ଆବଶ୍ୟକ ପରିମାଣର ଅର୍ଥ ଓ ପେଣ୍ଡାଲ ଆଦି କାମ ପାଇଁ ମଜୁରିଆ ଯୋଗାଇ ଦେବି । କାଲି ମୋତେ ଆନୁମାନିକ ଖର୍ଚ୍ଚର ହିସାବ ଦିଅ ।''

ଆଶା ତରୁରେ ନୂତନ ପୁଷ୍ପ ଉଦ୍ଗମର ସମ୍ଭାବନା ମୋ ଆଖିରୁ ନିଦ ଚୋରାଇ ନେଇଥିଲା । ଯୋଗୀ ବାବୁଙ୍କ ସହାୟତାରେ ଏକ ବ୍ୟୟ ଅଟକଳ ପ୍ରସ୍ତୁତ କଲି । ଠିକ୍ ଖେଳଛୁଟିରେ ଉକ୍ତ ହିସାବ ଫର୍ଦ୍ଦ ଦେଖାଇ ଆଚାର୍ଯ୍ୟଙ୍କ ସହିତ ସବୁ ଆଲୋଚନା କରିବାରେ ସେ ଆଉ ୧୦୦ ଟଙ୍କାର ହିସାବ ଯୋଗ କରିଥିଲେ ।

ଆହ୍ୱାନସଙ୍ଗୀତ ଓ ବାର୍ଷିକ ବିବରଣୀ ସଂପାଦନାର ଦାୟିତ୍ୱ ମୁଁ ନିଜେ ନେଲି । ସ.ଇ. ବାଳମୁକୁନ୍ଦବାବୁ ଦୁଇଟି ଏକାଙ୍କିକା ଲେଖିବେ । ପାଟପୁରର ଜଗନ୍ନାଥ ଦାସ ଦୁଇଟି ଗୀତ ଲେଖି ଦେବା ପାଇଁ ପ୍ରତିଶ୍ରୁତି ଦେଲେ । ତାଲିମ ଦେବାପାଇଁ ଅଣିଆ ସାହିର ବିଶିଷ୍ଟ କାଳାକାର ବ୍ରଜ ବିଧାର ଓ ଛାତ୍ରାଭିଭାବକ ଟୁଙ୍କ ଭାଇଙ୍କୁ ଅନୁରୋଧ କରିବା ପାଇଁ ଆଚାର୍ଯ୍ୟେ ଦାୟିତ୍ୱ ନେଲେ ।

ଆଶ୍ଚର୍ଯ୍ୟର କଥା, ଯୋଗୀବାବୁଙ୍କ ବ୍ୟତୀତ ଅନ୍ୟ ଶିକ୍ଷକମାନେ ଏହା ଏକ ଆକାଶ କୁସୁମ ଓ ଉଦ୍ଭଟ ଚିନ୍ତା ବୋଲି ପରୋକ୍ଷରେ କହୁଥିବାର ଶୁଣିଲି । ମାତ୍ର ଲକ୍ଷ୍ୟଚ୍ୟୁତ ହୋଇ ଭାଙ୍ଗି ପଡ଼ିନଥିଲି ।

ଏହାପରେ ଆଚାର୍ଯ୍ୟଙ୍କୁ କହିଲି, " - ଆମ ଆୟୋଜନ ସବୁଦିଗରୁ ଉଲ୍ଲେଖନୀୟ ହେବାରେ ମୁଁ ଅତ୍ୟନ୍ତ ଆଶାବାଦୀ । ଆପଣ ସଭାପତି ପାଇଁ କାହାକୁ ଅନୁରୋଧ କରାଯିବ ଭାବିଚିନ୍ତି କହନ୍ତୁ ।'' ସେ ଜମା ଚିନ୍ତା କରନ୍ତି ନାହିଁ । ପ୍ରଶ୍ନର ଉତ୍ତର ସଙ୍ଗେ ସଙ୍ଗେ ମିଳିଯାଏ । ସେ କହିଲେ, "କମନ ମେନେଜର, ଡି.ଆଇ., ଜିଲାବୋର୍ଡ଼ ଚେୟାରମେନ କିମ୍ବା ଏମ୍.ଏଲ୍.ଏ ମୋହନ ବାବୁ –ଏମାନଙ୍କ ଭିତରୁ କାହାକୁ କିମ୍ବା ଅନ୍ୟ କାହାକୁ ଆଣିବା ଶିକ୍ଷକମାନଙ୍କ ସହିତ ପରାମର୍ଶ କରି କହିବ ।''

ତହିଁ ଆରଦିନ ସ୍କୁଲଛୁଟି ପରେ ଆଚାର୍ଯ୍ୟେ ଚାଲିଗଲେ । ମୁଁ ଶିକ୍ଷକମାନଙ୍କୁ ଏକତ୍ର କରି ଆଚାର୍ଯ୍ୟଙ୍କ ପ୍ରସ୍ତାବ କଥା କହିଲି । ବନ୍ଧୁ ବିରାଡିରେ ମୂଷା ମାରିହୁଏ

ନାହିଁ ପରି କାହା ସହିତ କାହାର ମତ ମିଳିଲା ନାହିଁ । ଶେଷକୁ ମୋ ମତାମତ ପଚାରିବାରୁ ମୁଁ କହିଲି, " ପାରଳା ମହାରାଜାଙ୍କୁ ଆଣିପାରିଲେ ଏକ ବଡ଼ ସଫଳତା ମିଳନ୍ତା ।'' ଏତିକିରେ କିଏ ଇନ୍ଦ୍ରଙ୍କୁ କିଏ ସୂର୍ଯ୍ୟଙ୍କୁ କିଏ ଭାଇସରାୟଙ୍କୁ ଆଣିବାକୁ କହି ବେଶ୍ ଉପହାସ କରିଥିଲେ ।

ସହକର୍ମୀମାନଙ୍କର ଏ ପ୍ରକାର ଉପହାସ ମୋର ଅତ୍ୟନ୍ତ ଅସହ୍ୟ ହୋଇ ଉଠିଥିଲା । ମୁଁ ନୀରବରେ ସ୍ଥାନତ୍ୟାଗ କରି ଚାଲି ଆସିଥିଲି । ରାତିକୁ ଯୋଗୀବାବୁ ଡାକିକରି କହିଲେ, - " ଆପଣ ଏପରି ଏକ ଅଜବ ସମ୍ଭାବନାକୁ ରୂପଦେବାକୁ ଯାଇ କେବଳ ମନସ୍ତାପ ହିଁ ଭୋଗ କରିବେ ।'' ମୁଁ ତାଙ୍କୁ ମଧ୍ୟ କୌଣସି ଉତ୍ତର ଦେଇ ନଥିଲି । ସକାଳୁ ନିତ୍ୟକର୍ମ ସାରି ସିଧା ଯାଇ ମୋହନବାବୁଙ୍କୁ ସାକ୍ଷାତ କରି ମୋ ମନକଥା ଜଣାଇଲି । ମୋ ଉପରେ ମୋହନ ବାବୁଙ୍କର ବେଶ୍ ଭଲ ଧାରଣାଥାଏ । ମୁଁ ସବୁକଥା ପ୍ରାଞ୍ଜଳ ଭାବରେ ବୁଝାଇବା ପରେ ଏକାନ୍ତ ଅନୁରୋଧ କରି କହିଲି, " - ଯେପରି ହେଉ, ମହାରାଜାଙ୍କୁ ଆଣିବାକୁ ଆପଣ ଚେଷ୍ଟା କରିବେ ।'' ବାରମ୍ବାର ମୋର ବ୍ୟାକୁଳତାମିଶା ଅନୁରୋଧକୁ ସେ ଗ୍ରହଣ କଲେ ଓ ମୁଁ ନିଶ୍ଚୟ ଚେଷ୍ଟା କରି ଜଣାଇବି'' ବୋଲି ମଧ୍ୟ କହିଲେ । ପୁଣି କହିଲେ, "ଆୟୋଜନ ଅତ୍ୟନ୍ତ ଆକର୍ଷଣୀୟ ହେବା ନିତାନ୍ତ ଆବଶ୍ୟକ । ଉତ୍ସବଟିକୁ ଖୁବ୍ ସରସ ସୁନ୍ଦର କରିବା ଦିଗରେ ତତ୍ପରତା ପ୍ରକାଶ କର ।''

ଯୋଗୀବାବୁ ଦେଇଥିବା ହେଡ଼ିଂକୁ ଭିତ୍ତିକରି ମୁଁ ଦୁଇଦିନ ଭିତରେ ବାର୍ଷିକ ବିବରଣୀର ଡ୍ରାଫ୍ଟ ପ୍ରସ୍ତୁତ କରି ଆଚାର୍ଯ୍ୟଙ୍କୁ ଦେଲି । ଆହ୍ୱାନ ସଙ୍ଗୀତଟିକୁ କୌଣସି ମତେ ଲେଖି ସୁଲେଖକ ବାଳମୁକୁନ୍ଦ ବାବୁଙ୍କୁ ଦେଖାଇଲି । ସେ ଭିନ୍ନ ଧରଣରେ ତାହାକୁ ବଦଳାଇ ଡୁଏଟ୍ ପରି ଜଣେ ପଚାରିବ, ଅନ୍ୟ ସାଥୀଟି ଉତ୍ତର ଦେବ, ଏହି ରୀତିରେ କରିବା ପାଇଁ ପରାମର୍ଶ ଦେଲେ । "ମୁଁ ଗୀତଟି ରଖୁଛି । ସଭାପତି ନିର୍ଣ୍ଣୟ ହୋଇଯିବା ପରେ ଏହାକୁ ଶେଷସ୍ପର୍ଶ ଦେବି । ତୁମେ ଅନ୍ୟକାର୍ଯ୍ୟରେ ଲାଗିପଡ଼ ।'' ସେ ସମୟରେ ସଭାପତିଙ୍କ ନାମରେ ହିଁ ଆବାହନ ସଙ୍ଗୀତ ରଚିତ ହେବାର ପରଂପରା ଥିଲା । ମୁଁ ଫେରି ଆସିଲି ।

ମୋର ସମସ୍ତ ଚିନ୍ତାଧାରାକୁ ଏକତ୍ର କରି ମୁଁ ବାର୍ଷିକ ବିବରଣୀଟି ପ୍ରସ୍ତୁତ କରିନେଲି । ଗୋଟିଏ କାମ ସରିଲା ବୋଲି ଭାବିଲି । ଆବାହନ ସଙ୍ଗୀତ ମୋହନ ବାବୁଙ୍କ ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରେ । ତେଣୁ ଜଗନ୍ନାଥ ରଥ ଓ ବାଳମୁକୁନ୍ଦବାବୁଙ୍କୁ ଦୁଇଟି ଗୀତ ଓ ଦୁଇଟି ଏକାଙ୍କିକା ପାଇଁ ଯଥାକ୍ରମେ ଅନୁରୋଧ କଲି ।

ସତ୍‌କାର୍ଯ୍ୟରେ ଈଶ୍ୱର ସହାୟ ହୁଅନ୍ତି । ଏକଥା ମୋ ଜୀବନରେ ମୁଁ ବାରମ୍ବାର ପ୍ରତ୍ୟକ୍ଷ କରିଛି । ମୋହନବାବୁ କଟକ ଯାଇ ଗାଁକୁ ଫେରିଲେ ଏବଂ ମୁଁ ତାଙ୍କୁ ସାକ୍ଷାତ କରିବା ପାଇଁ ଖବର ଦେଲେ । ୪ଟା ପରେ ମୁଁ ଖବର ପାଇ ଆଶାରେ ଉଲ୍ଲସିତ ହୋଇ ଉଠୁଥିବା ସଙ୍ଗେ ସଙ୍ଗେ ଆଶଙ୍କାରେ ବୁଡ଼ି ଯାଉଥାଏ । ମନ ଆଉ ସ୍ଥିର ହୋଇ ରହିଲା ନାହିଁ । କୌଣସି ମତେ ରାତିଟା କଟାଇ ପରଦିନ ସକାଳୁ ସାକ୍ଷାତ କଲି । ମୋତେ ଦେଖି ମୋହନ ବାବୁ ଟିକିଏ ଗମ୍ଭୀର ଦେଖାଗଲେ । ସତ୍ କହୁଛି, ମୁଁ ଝାଉଁଳି ପଡ଼ିଲି । କିଛି ପଚାରିବାକୁ ସାହସ କରିପାରୁ ନଥାଏ । ନାହିଁ, ଶୁଣିବା ପାଇଁ ମୁଁ ଆଦୌ ପ୍ରସ୍ତୁତ ନଥାଏ । ମୋ ଦୟନୀୟ ଭାବ ଭଙ୍ଗୀ ଦେଖି ସେ କହିଲେ, ମାଷ୍ଟ୍ରେ, ତୁମେ ବହୁତ ଭାଗ୍ୟବାନ୍ ! ଶୀଘ୍ର ଯାଇ ସ୍କୁଲ୍‌ରେ ଖବର ଦିଅ । ଆୟୋଜନକୁ ବଢ଼ାଇ ଦେବାକୁ ହେବ । ଅସମ୍ଭବକୁ ସମ୍ଭବ କରାଯାଉଛି । ପରେ ସବୁ ଶୁଣିବ । ବର୍ତ୍ତମାନ ମୁଁ ତ ନିଜକୁ ବିଶ୍ୱାସ କରିପାରୁନଥାଏ । ବାମନର ଚନ୍ଦ୍ର ଧରିବା ସମ୍ଭବ ହୋଇ ଯାଇଥିବାରୁ ମୁଁ ଅତ୍ୟନ୍ତ ଉଲ୍ଲସିତ ହୃଦୟରେ ସ୍କୁଲକୁ ଛୁଟି ଆସିଲି ।

ପାରଳା ମହାରଜା ଉ.ପ୍ରା. ସ୍କୁଲକୁ ଆସିବା କଥା ମୁଁ ସର୍ବପ୍ରଥମେ ମୋର ଈର୍ଷାଳୁ ସହକର୍ମୀମାନଙ୍କୁ ଜଣାଇ ଦେଇଥିଲେ ମଧ୍ୟ ସେମାନେ ବିଶ୍ୱାସ କରିପାରିନଥିଲେ । ମାତ୍ର ମୁଁ ସମ୍ଭାବନାକୁ ସାକାର କରିପାରିଥିବା ଯୋଗୁ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠୁଥାଏ । ମାତ୍ର କେତେ ଘଣ୍ଟା ପରେ ସମଗ୍ର ନିମାପଡ଼ା ଅଞ୍ଚଳରେ ଏହି ବାର୍ତ୍ତା ଏକ ଚମକ ସୃଷ୍ଟି କରି ଦେଇଥିଲା । ବାରମ୍ବାର ଅନେକ ଲୋକ ଆଚାର୍ଯ୍ୟଙ୍କୁ ସାକ୍ଷାତ କରୁଥିଲେ । ମୁଁ ବାଳମୁକୁନ୍ଦବାବୁଙ୍କୁ କହି ଆବାହନ ସଙ୍ଗୀତଟି ସଜାଡ଼ି ମୋତେ ଦେବା ପାଇଁ ଅନୁରୋଧ କଲି । ଏହାପରେ କଳାକାର ବ୍ରଜ ବିଧାର ଓ ଚୁଙ୍କ ଭାଇଙ୍କୁ ସମ୍ବାଦ ଦେବାରେ ସେ ଦୁହେଁ ସ୍କୁଲକୁ ଆସି କହିଲେ, " - ଆଚାର୍ଯ୍ୟେ, କାଶୀବାବୁ ତ କମାଲ କରିଦେଲେ ।''

ପରଦିନ ବିଧାରବାବୁ ଠିକ୍ ସ୍କୁଲ ସମୟ ଭିତରେ ଆସି ମୋତେ ଆହ୍ୱାନ ସଙ୍ଗୀତ ଆବୃତ୍ତି ପାଇଁ ଗୀତ ଓ ଅଭିନୀତ ହେବାପାଇଁ ଏକାଙ୍କିକାଗୁଡ଼ିକ ମାଗିଲେ । ବ୍ରଜବାବୁ ଆହ୍ୱାନ ସଙ୍ଗୀତ ଦ୍ୱାରା ବିମୁଗ୍ଧ ହୋଇ କହିଲେ, " - ସୁନ୍ଦର, ଅତି ସୁନ୍ଦର । ଆପଣ ଯୁବକ ହୋଇ ଏ ପୁରୁଣା କାଳିଆ ବିଦଗ୍ଧ ଚିନ୍ତାମଣିଙ୍କୁ ଅନୁକରଣ କଲେ କାହିଁକି ?'' କିଛି ନକହିବାରୁ ସେ କହିଲେ, "ଆପଣଙ୍କ ଲେଖାଟି ପୁରୁଣା ସ୍ୱରରେ ଲେଖା ହୋଇଥିଲେ ମଧ୍ୟ ଏହା ଏକ ନୂତନ ଦିଗନ୍ତ ସୃଷ୍ଟି କରିବ । ଏପରି ଧରଣର ପ୍ରଶ୍ନ ଉତ୍ତର ମାଧ୍ୟମରେ କେଉଁଠି ଆବାହନ ସଙ୍ଗୀତ ବୋଲାଯାଇ

ନାହିଁ । ମୁଁ ଏହାକୁ ଅତିସୁନ୍ଦର ଭାବରେ ଗାଇବାର ବ୍ୟବସ୍ଥା କରିବି । ଶୁଣ, ମୋତେ ଦୁଇଟି ଝିଅପିଲା ଦେଖାଅ । ସେମାନଙ୍କ ବୟସ, ଉଚ୍ଚତା, ଦେହର ରଙ୍ଗ ସମାନ ହେଲେ ଭଲ ହେବ । ଆଜି ସ୍ଥିର କରି କାଲି ନିଶ୍ଚୟ ମୋ ପାଖକୁ ଆଣିବେ ।''

ବହୁ ଚିନ୍ତା ପରେ ଦେଖିଲି, - ଡାକ୍ତର ଯାମିନୀକାନ୍ତ ସେନ୍‌ଗୁପ୍ତଙ୍କ ଝିଅ ଆରତି ଓ ସ.ଇ. ବାଳମୁକୁନ୍ଦ ବାବୁଙ୍କ ଝିଅ ଲିଲି ହିଁ ମୋ ଉଦ୍ଦେଶ୍ୟ ସାଧନର ସହାୟକ ହେବେ । ଏହି ଝିଅଦୁଇଟି ଦେଖିବାକୁ ଠିକ୍ ଯାଆଁଳା ଭଉଣୀ ପରି । ଉଚ୍ଚତା, ବର୍ଣ୍ଣ ଓ ଗଠନ ପରିପାଟୀ ବେଶ୍ ଚମତ୍କାର ଥିଲା । ସେ ଦୁହେଁ କିଛି କିଛି ଗୀତମଧ୍ୟ ବୋଲିବାରେ ଅଭ୍ୟସ୍ତ ଥିଲେ ।

ପରଦିନ ବ୍ରଜବାବୁ ପହଞ୍ଚିବା ମାତ୍ରେ ସେ ଦୁହିଁଙ୍କୁ ମୁଁ ତାଙ୍କ ପାଖକୁ ନେଇ ଯାଇଥିଲି । ଦେଖୁ ଦେଖୁ ସେ ବହୁତ ଖୁସି ହୋଇଥିଲେ ମଧ୍ୟ କଣ୍ଠସ୍ୱର ଓ ତାଳଲୟ ପରୀକ୍ଷା କରିବା ପାଇଁ ତତ୍ପର ହୋଇ ଉଠିଲେ । ସବୁ ପରୀକ୍ଷାରେ ଝିଅଦୁଇଟି ଉତ୍ତୀର୍ଣ୍ଣ ହୋଇ ଆହ୍ୱାନ ସଙ୍ଗୀତଟିକୁ ମୁଖସ୍ଥ କରିବାରେ ଲାଗିଲେ । ଅନ୍ୟ ଆବୃତ୍ତି ଓ ଅଭିନୟ ପାଇଁ ଗୀତ ଓ ଏକାଙ୍କିକା ମଧ୍ୟ ବ୍ରଜବାବୁଙ୍କୁ ଦେଇଦେଲି ।

ପୂରାଦମ୍‌ରେ କାର୍ଯ୍ୟ ଚାଲିଥାଏ । ଆଚାର୍ଯ୍ୟେ ବାଜା ଓ ଶୋଭାଯାତ୍ରା ପାଇଁ ବ୍ୟସ୍ତ ହୋଇ ପଡ଼ିଥାନ୍ତି । ଅବସ୍ଥା ଏପରି ହେଲା ଯେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଆସୁଛନ୍ତି ଶୁଣି ଲୋକସମାଗମ ଆଶାତୀତ ହେବ ବୋଲି ଜଣା ପଡ଼ିଗଲା । ଆମ ତରଫରୁ ସବୁ ସ୍କୁଲର ଶିକ୍ଷକମାନଙ୍କୁ, ହାଇସ୍କୁଲ ଛାତ୍ର ଓ ଶିକ୍ଷକଙ୍କ ସହିତ ଆମ ଛାତ୍ରଛାତ୍ରୀଙ୍କୁ ହାଇସ୍କୁଲଠାରୁ ଆମ ସ୍କୁଲଯାଏ ଦୁଇ ଧାଡ଼ିରେ ଠିଆ କରାଇବାର ସ୍ଥିର କଲୁ । ସବୁ କାମ ଠିକ୍ ଠିକ୍ ଚାଲୁଥାଏ । ମାତ୍ର ନିର୍ଦ୍ଦିଷ୍ଟ ତାରିଖ ଜାଣିବା ପାଇଁ ସମସ୍ତେ ଉଦ୍‌ବିଗ୍ନ ହୋଇ ପଡ଼ିଥାନ୍ତି ।

ବହୁ ପ୍ରତୀକ୍ଷିତ ନିର୍ଦ୍ଦିଷ୍ଟ ତାରିଖ ମୋହନ ବାବୁ ନିଜେ ଆସି ଜଣାଇବା ପରେ ସମସ୍ତ ସନ୍ଦେହର ଅବସାନ ହେଲା । ମାତ୍ର ଆଉ ୧୫ ଦିନ ପରେ ସେହି ଆକାଂକ୍ଷିତ ଶୁଭମୁହୂର୍ତ୍ତ ଉପସ୍ଥିତ ହେବାର ନିଶ୍ଚିତ ସଂବାଦରେ ସମସ୍ତେ ଚଳଚଞ୍ଚଳ ହୋଇ ଉଠିଥିଲେ । ସବୁ କାର୍ଯ୍ୟ ଅତ୍ୟନ୍ତ ନିଷ୍ଠା ଓ ଆନ୍ତରିକତାର ସହିତ ଯନ୍ତ୍ରଗତିରେ ଚାଲିବାରେ ଲାଗିଲା । ପ୍ରଧାନମନ୍ତ୍ରୀଙ୍କ ଉ.ପ୍ରା.ସ୍କୁଲକୁ ଆଗମନ ଶୁଣି ଆଶାତୀତ ଜନ ସମାଗମର ସୂଚନା ମିଳିଲା ।

\+ + + +

ନିର୍ଦ୍ଦିଷ୍ଟ ତାରିଖ ମନେ ପକାଇ ପାରୁନାହିଁ । ମାତ୍ର ଉକ୍ତ ସମୟର ସମସ୍ତ ଘଟଣା ସଂପୂର୍ଣ୍ଣ ମନେ ଅଛି ।

ସମସ୍ତ ଦ୍ରବ୍ୟ ସଂଗୃହୀତ ହୋଇ ମହଜୁଦ୍ ଥାଏ । ନିର୍ଦ୍ଦିଷ୍ଟ ଦିନ ୧୦ଟା ସୁଦ୍ଧା ସ୍କୁଲ ହତା, ବାରଣ୍ଡା, ସଭାମଣ୍ଡପର କାର୍ଯ୍ୟ ଜୋର୍‌ସୋର୍‌ରେ ଚାଲିଲା । ସମୁଦାୟ ସ୍କୁଲ ହତା ଉପରେ ବଡ଼ ଚାନ୍ଦୁଆ ଦୁଇଟି ବନ୍ଧା ଯାଇଥିଲା । ନିମନ୍ତ୍ରିତ ସଜ୍ଜନମାନଙ୍କ ପାଇଁ ବ୍ୟାଙ୍କ, ଇଷ୍ଟେଟ୍, ହାଇସ୍କୁଲ ଓ ଅନେକଙ୍କ ଘରୁ ଚଉକି ମଗାଯାଇ ପେଣ୍ଡାଲ ଉପରେ ସଭାପତିଙ୍କ ଆସନର ଉଭୟ ଦିଗରେ ସଜାଇ ଦିଆଯାଇ ତଳେ ଧାଡ଼ି ଧାଡ଼ି ବେଞ୍ଚ୍ ମଧ୍ୟ ପଡ଼ିଥିଲା ।

ପ୍ରାୟ ୫ଟା ବେଳକୁ ପୂର୍ବ ନିର୍ଦ୍ଧାରିତ ମତେ ଆମ ଉ.ପ୍ରା. ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ସହିତ ବହୁ ଶିକ୍ଷକ ଓ ସାଧାରଣ ଜନତା ଦୁଇଧାଡ଼ିରେ ଛିଡ଼ା ହୋଇ ରହିଲେ । ୩/୪ ପ୍ରକାର ବାଜା ପ୍ରସ୍ତୁତ ହୋଇ ରହିଥାଏ । ଆତସବାଜୀର ବ୍ୟବସ୍ଥା କଥା ମୋର ସ୍ମରଣ ହେଉ ନାହିଁ।

ମନ୍ତ୍ରୀଙ୍କ ଆସିବା ପୂର୍ବ ସୂଚନା ମିଳିଗଲା । ସମସ୍ତେ ସଜାଗ ହୋଇ ଉଠିଲେ। ପିଲାମାନେ କରିଥିବା ଧାଡ଼ିଠାରୁ ମନ୍ତ୍ରୀ ଓ ତାଙ୍କ ସହିତ ଆସିଥିବା ଗାଡ଼ି ୩/୪ଟି ଧୀରେ ଧୀରେ ପିଲାମାନଙ୍କ ଗତି ସହିତ ସମତା ରକ୍ଷାକରି ଅଗ୍ରସର ହେଉଥାନ୍ତି ।

ସ୍କୁଲ ଫାଟକରେ ମହାରାଜା ଗାଡ଼ିରୁ ଓହ୍ଲାଇବା ମାତ୍ରେ ଆମ ପ୍ରଧାନ ଶିକ୍ଷକ ଆଚାର୍ଯ୍ୟେ ଏକ ସୁନ୍ଦର ଗଜରାମାଳରେ ସମ୍ବର୍ଦ୍ଧନା ଜଣାଇ ମଞ୍ଚ ପର୍ଯ୍ୟନ୍ତ ପାଛୋଟି ନେଇଥିଲେ । ସେତେବେଳକୁ ସଂପୂର୍ଣ୍ଣ ସନ୍ଧ୍ୟା ହୋଇ ଯାଇଥିଲା ଓ ଡେ ଲାଇଟ୍ ଗୁଡ଼ିକର ଉଜ୍ଜ୍ୱଳ ଆଲୋକ ଆମର ସାଜସଜ୍ଜାକୁ ଚକମକ କରି ଦେଇଥିଲା । ସଭାପତି ଆସନ ଗ୍ରହଣ କରିବା ପରେ ପରେ ନିମନ୍ତ୍ରିତ ସଜ୍ଜନମଣ୍ଡଳୀ ମଞ୍ଚଟିକୁ ଭରପୂର କରି ଦେଇଥିଲେ । ଅନ୍ତରାଳରୁ ହାର୍‌ମୋନିୟମ୍ ସହିତ ଡୁବି ତାବଲାର ମଧୁର ସ୍ୱର ଭାସିଆସିଲା। ସଙ୍ଗେ ସଙ୍ଗେ ଆରତି ଓ ଲିଲି ଦୁଇଟି ସୁନ୍ଦର ଫୁଲମାଳ ଧରି ଏପରି ସୁମଧୁର କଣ୍ଠରେ ଆବାହନ ସଙ୍ଗୀତଟି ଗାନ କରିଥିଲେ, ଯାହାକି ଉପସ୍ଥିତ ଅଗଣିତ ଜନତାଙ୍କୁ ମନ୍ତ୍ରମୁଗ୍ଧ କରି ପକାଇଥିଲା । ସ୍ୱଭାବ ସୁନ୍ଦରୀ ବାଳିକା ଦୁଇଟିଙ୍କର ବେଶ ବିନ୍ୟାସ ପରିପାଟୀ ମଧ୍ୟ ସଭାର ଦ୍ୱିତୀୟ ଆକର୍ଷଣ ଥିଲା । ବହୁ ଚେଷ୍ଟା କରି ମଧ୍ୟ ଉକ୍ତ ଆହ୍ୱାନ-ସଙ୍ଗୀତଟିକୁ ମନେ ପକାଇ ପାରୁନାହିଁ । କେବଳ ପ୍ରଥମ ଦୁଇଟି ପଦ ସବୁଦିନ ପାଇଁ ମୋ ମନରେ ଅଭୁଲା ହୋଇ ରହିଯାଇଛି ।

ଆଗ୍ରହାତିଶଯ୍ୟରୁ ମୁଁ ସେ ପଦଦ୍ବୁଇଟି ଏଠାରେ ଉଲ୍ଲେଖ କରିବାର ଲୋଭ ସମ୍ବରଣ କରିନପାରି ଲେଖିଦେଲି ।

୧ମ - କିଂପା ଏତେ ଆୟୋଜନରେ ସଙ୍ଗୀତ
କିଂପା ଏତେ ଆୟୋଜନ ?

୨ୟ - ପୁରସ୍କାର ସଭା କରୁଛନ୍ତି ପରା
ଶିଶୁ-ଶିକ୍ଷା ଅନୁଷ୍ଠାନ ।

୧ମ - କିଏ ଏଥି ସଭାପତିରେ ସଙ୍ଗୀତ
କିଏ ଏଥି ସଭାପତି ?

୨ୟ - ପାରଳାଧୀଶ୍ୱର ସେ'ତ କୃଷ୍ଣଚନ୍ଦ୍ର
ଉତ୍କଳର ଗଜପତି ।

ଉଭୟ ବାଳିକା ସଭାପତିଙ୍କୁ ମାଲ୍ୟାର୍ପଣ କରିବା ପରେ ପରେ ଆଉ ୩-୪ ଜଣ ବାଳିକା ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ପୁଷ୍ପମାଲ୍ୟରେ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ଏହାପରେ ଆଚାର୍ଯ୍ୟ ମହାଶୟ ବାର୍ଷିକ ବିବରଣୀଟିକୁ ତାଙ୍କ ସ୍ୱଭାବ ସୁଲଭଶୈଳୀରେ ପାଠ କରି ବିବରଣୀଟି ମହାରାଜାଙ୍କ ସମ୍ମୁଖରେ ଉପସ୍ଥାପିତ କଲେ । ଏହାପରେ ପୁଣି ହାର୍‌ମୋନିୟମ୍ ବାଜି ଉଠିଲା । ପୂଜ୍ୟ ଜଗନ୍ନାଥ ରଥ ଦେଇଥିବା ଦୁଇଟି ଗୀତକୁ ଦୁଇଟି ପିଲା ଏକତ୍ର ଗାନ କରିଥିଲେ । ତାଲିମ୍ ଦେଉଥିବା କଳାକାର ଦ୍ୱୟଙ୍କ ପ୍ରଚେଷ୍ଟା ଅତ୍ୟନ୍ତ ଫଳବତୀ ହୋଇଥିଲା । ଉକ୍ତ ଗୀତ ଦୁଇଟି ଅଭିନୟ ସହ ପିଲାମାନେ ଆବୃତ୍ତି କରିଥିଲେ । ଗୋଟିଏ ଗୀତରୁ ଅଳ୍ପ ମନେ ଅଛି । ତାହା ଏହିପରି :-

ଚଷା ବୋଲନ୍ତେ ,ଲକ୍ଷେ ଜୀବ ପୋଷା
ଏବେ ଉଡୁଛି ତାର ସବୁ ଆଶା
କେହି ନାହାନ୍ତି ରଖିବାକୁ ତା'କୁ
ବନ୍ୟା ବିପତ୍ତି କରତେ ତା' ବୁକୁ -

ମଞ୍ଚକୁ ମିନିଟିଏ ଫୁରୁସତ ନଦେଇ ଏକାଙ୍କିକା ଦୁଇଟି ଅଭିନୀତ ହେବାପରେ ଏକ ଶିକ୍ଷଣୀୟ ଫାର୍ସେ ମଧ୍ୟ ପରିବେଷଣ କରାଯାଇଥିଲା । ମନ୍ତ୍ରୀ ତଥା ମହାରାଜ ଏତେ ସମୟ ଯାଏ ନିବିଷ୍ଟ ଚିତ୍ତରେ କାର୍ଯ୍ୟକ୍ରମ ଉପଭୋଗ କରୁଥିବା କଥାକୁ

ମୋହନବାବୁ ତାଙ୍କ ଭାଷଣରେ ବିସ୍ମୟ ପ୍ରକାଶ କରିଥିଲେ । ପରେ ପରେ ଆଉ ୨/୩ ଜଣ ଅଳ୍ପ ଅଳ୍ପ କହିବା ପରେ ମନ୍ତ୍ରୀ ମହୋଦୟ ଅନ୍ୟ କାର୍ଯ୍ୟରେ ଯିବାକଥା ମୋହନବାବୁଙ୍କୁ ଜଣାଇ ଦେବାରୁ ଆଉ କୌଣସି ବକ୍ତାଙ୍କୁ କହିବାକୁ ସୁଯୋଗ ମିଳିପାରି ନଥିଲା ।

ଏଥର ପ୍ରଧାନମନ୍ତ୍ରୀ (ବର୍ତ୍ତମାନ ମୁଖ୍ୟମନ୍ତ୍ରୀ) ତାଙ୍କର ଅଭିଭାଷଣ ଆରମ୍ଭ କରି କହିଲେ, " - ମୋହନବାବୁଙ୍କ ଅନୁରୋଧକୁ ଉପେକ୍ଷା କରିଥିଲେ ମୁଁ ଏକ ବିରାଟଭୁଲ୍ କରିଥାନ୍ତି । ପ୍ରାଇମେରୀ ସ୍କୁଲର ପୁରସ୍କାର ବିତରଣକୁ ପ୍ରଧାନମନ୍ତ୍ରୀଙ୍କୁ ନିମନ୍ତ୍ରଣ କରାଯିବା ଏବଂ ମନ୍ତ୍ରୀ ତାହାକୁ ସଦୟ ପ୍ରତିଶ୍ରୁତି ଦେବା ଇତିହାସରେ ନାହିଁ । ମୁଁ ମଧ୍ୟ ସନ୍ଦିଗ୍ଧ ନହୋଇଛି ଏପରି ନୁହେଁ । ମାତ୍ର ଏ ଅନୁଷ୍ଠାନର ବିପୁଳ ଆୟୋଜନ, ଉଚ୍ଚକୋଟୀର ଅଭିନୟ ପ୍ରଶଂସନୀୟ । ସର୍ବୋପରି ଏହା ଏକ ଗୁରୁକୁଳ ଆଶ୍ରମକୁ କିଛି ପରିମାଣରେ ଅନୁସରଣ କରି ଏକ ନୂତନ ଆଦର୍ଶର ପ୍ରତିଷ୍ଠା କରିପାରିଛି । ଛୋଟ ଛୋଟ ପିଲାମାନଙ୍କୁ ନେଇ ଛାତ୍ରାବାସ । ପୁଣି ତହିଁରେ ୨୩/୨୪ ଛାତ୍ରଙ୍କ ପାଇଁ ୩ ଜଣ ଶିକ୍ଷକ ପିଲାମାନଙ୍କୁ ପ୍ରତିଦିନ ପାଠପଢ଼ା ସହିତ ବହୁ ବିଷୟରେ ତାଲିମ ଦେଉଥିବା ଏକ ଉଚ୍ଚ ଆଦର୍ଶର ସ୍ୱାକ୍ଷର ବହନ କରେ । ସ୍କୁଲର ବଗିଚା, ଖନ୍ଦା ପାଇଖାନାର ବ୍ୟବହାର, ପ୍ରାର୍ଥନା, ସଫାଇ, ମାସିକ ପରିଭ୍ରମଣ ପରି ମହତ୍ କାର୍ଯ୍ୟର ସୂଚନା ପାଇଁ ମୁଁ ବିସ୍ମିତ ହୋଇ ଉଠୁଛି । ମୋ ରାଜ୍ୟରେ ଏହିପରି ୧୦୦ଟି ସ୍କୁଲ ଗଢ଼ି ଉଠିଲେ ଏ ରାଜ୍ୟର ନକ୍ସା ବଦଳି ଯାଆନ୍ତା । ଏସବୁ କାର୍ଯ୍ୟ ଶିକ୍ଷକମାନଙ୍କ ଦ୍ୱାରା ହିଁ ସମ୍ଭବ ହୋଇଛି । ଦୃଢ଼ ମନୋବଳ, ପ୍ରବଳ ଇଚ୍ଛାଶକ୍ତି, କର୍ତ୍ତବ୍ୟନିଷ୍ଠା ଏବଂ ସଂପୂର୍ଣ୍ଣ ସମର୍ପଣ ମନୋଭାବ ହିଁ ମାଟିପିଣ୍ଡକୁ ସୁନାରେ ପରିଣତ କରିପାରେ । ଏହାହିଁ ମୋର ଏହି ଅନୁଷ୍ଠାନଟିକୁ ଦେଖି ହୃଦ୍‌ବୋଧ ହେଲା । ସମୟ ବହୁତ କମ୍ । ଏତିକି କହି ମୁଁ ବିଦାୟ ନେଉଛି ଯେ ଯଦି କୌଣସି ବିଷୟରେ ସରକାରୀ ସାହାଯ୍ୟର ଆବଶ୍ୟକତା ଅନୁଭୂତ ହୁଏ, ପ୍ରଧାନ ଶିକ୍ଷକ ନିଃସଙ୍କୋଚରେ ମୋହନ ବାବୁଙ୍କ ମଧ୍ୟବର୍ତ୍ତିତାରେ ମୋତେ ସ୍ମରଣ କରାଇବାକୁ ଅନୁରୋଧ । ଜୟହିନ୍ଦ୍ ।"

ମନ୍ତ୍ରୀ ମଞ୍ଚ ତ୍ୟାଗ କରିବା ପୂର୍ବରୁ ପୁରସ୍କାର ବିତରଣ କାର୍ଯ୍ୟଟି କମନ ମେନେଜର ନଳିନୀ ବାବୁଙ୍କ ଉପରେ ନ୍ୟସ୍ତ କରିଥିଲେ ।

ମୁଁ ମୋ ପରିକଳ୍ପନାକୁ ଏପରି ସନ୍ତୋଷଜନକ ଭାବରେ ସଂପନ୍ନ କରିପାରିଥିବାରୁ ଅତ୍ୟନ୍ତ ହୃଷ୍ଟ ହୋଇଥିଲି । ସମ୍ଭାବନା ସତ୍ୟରେ ପରିଣତ ହେଲେ

କିଏ ବା ଆମୋଦିତ ନହୁଏ ? ବିଶେଷ କରି ଆଚାର୍ଯ୍ୟେ ଓ ଯୋଗୀବାବୁ ମୋର ଖୁବ୍ ପ୍ରଶଂସା ବଖାଣିବାରେ ଶତମୁଖ ହୋଇ ଉଠିଥିଲେ । ଏହି ପୁରସ୍କାର ସଭାଟି ଆମ ସ୍କୁଲର ସୁନାମକୁ ସୁଦୂରପ୍ରସାରୀ କରି ଦେଇଥିଲା । ଫଳରେ ସ୍କୁଲର ଛାତ୍ରସଂଖ୍ୟା ଆହୁରି ବଢ଼ିବାରେ ଲାଗିଲା ।

ଏହି ସ୍କୁଲରେ ଯୋଗଦାନ କରିବାର କିଛିଦିନ ପରେ ଶିକ୍ଷକମାନଙ୍କର କେତେକ କାର୍ଯ୍ୟର ବିରୋଧ କରି ପ୍ରଧାନ ଶିକ୍ଷକଙ୍କୁ କହିଥିଲି, - "କୌଣସି ଟେବୁଲ୍ ଉପରେ ବେତ ରଖା ନଯାଉ । ଦଣ୍ଡ ଆଦୌ ନଦେଇ ଶିକ୍ଷାଦେବାକୁ ଶିକ୍ଷକମାନଙ୍କୁ ସତର୍କ କରାଇ ଦିଅନ୍ତୁ । ଏହି ରୀତି ଅନୁସୃତ ହେଲେ ଆମେ ଏକ ପୁରାତନ ଅତି ଅବୈଜ୍ଞାନିକ ପରମ୍ପରାର ମୂଳୋତ୍ପାଟନ କରି ଏକ ନୂତନ ପଦ୍ଧତିର ଶ୍ରୀଗଣେଶ କରିବା ।'' ମୋ କଥାରେ ଆଚାର୍ଯ୍ୟ ପ୍ରତିବାଦ କରନ୍ତି ନାହିଁ । ସେ ଏକ ନୋଟିସ ଜରିଆରେ ଏହା ଶିକ୍ଷକମାନଙ୍କୁ ଜଣାଇ ଦେଇ ଥିଲେ ସତ, ମାତ୍ର ଶତ ପ୍ରତିଶତ କାର୍ଯ୍ୟକାରୀ ହୋଇ ପାରିନଥିଲା । ଦୁଃଖର ସହିତ କହିଲି, " - ଯେଉଁଠି ପ୍ରଧାନ ଶିକ୍ଷକଙ୍କ ପରାମର୍ଶ ଉପେକ୍ଷିତ ସେଠାରେ ମୋର ପରିକଳ୍ପନା ଆଦୌ ବାସ୍ତବରୂପ ପରିଗ୍ରହ କରିପାରିବ ନାହିଁ । ବରଂ ମୋର ସେହି ବିଷ୍ଣୁପୁର କିମ୍ବା ଭିଲିଗ୍ରାମକୁ ଫେରିବା ଶ୍ରେୟସ୍କର ହେବ ।''

ଯୋଗୀବାବୁ ବାଧା ଦେଇ କହିଲେ, " – ସବୁ ହେବ, କେବଳ ଧୈର୍ଯ୍ୟ ଧରନ୍ତୁ । ଆପଣଙ୍କର ଆଉ ଗୋଟିଏ କାମରେ ମନ ଲଗାଇବା ଏବେ ଆବଶ୍ୟକ ହେଲାଣି । ଆମେ ସାକ୍ଷୀଗୋପାଳରେ ପଢୁଥିବା ବେଳେ ସେଠାରେ ଦଣ୍ଡଦାନର ପ୍ରଶ୍ନ ନଥିଲା । ବରଂ ପିଲାମାନେ ଦୋଷ କରିଥିବା ପିଲାର ବିଚାର କରି ଅପରାଧର ଗୁରୁତ୍ୱ ଦୃଷ୍ଟିରୁ ଦଣ୍ଡବିଧାନର ବ୍ୟବସ୍ଥା କରୁଥିଲେ । ଅବଶ୍ୟ ଏହା ଏକ ମାଟ୍ରିକ୍ ପଢୁଥିବା ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ବିଚାରମଂଚର ନାମ ଥିଲା (Boys' own court )। ଆପଣ ପ୍ରଥମେ ଆମ ଛାତ୍ରାବାସରେ ଏହି ପ୍ରକ୍ରିୟାର ପ୍ରବର୍ତ୍ତନ କରନ୍ତୁ । ମୁଁ ତା'ର ବିଶଦ ବିବରଣୀ ଦେବି । ନାମ ରହିବ "ବାଳ ବିଚାର ମଞ୍ଚ'' । କଥାଟି ମୋତେ ବହୁତ ଯୁକ୍ତିଯୁକ୍ତ ମନେ ହେଲା । ମୋର ପ୍ରବୃତ୍ତି ହେଉଛି - ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ପାଇଁ ଉଦ୍ୟମ । ଏହା ଦୀର୍ଘ ଦିନ ଧରି ଅନୁସୃତ ହେଲେ ସୁଫଳ ମିଳିଥାଏ । ମୁଁ ଆଗ୍ରହର ସହିତ ଏହି "ବାଳବିଚାର ମଞ୍ଚ''ର ଶ୍ରୀଗଣେଶ କଲି ଓ ଯୋଗୀବାବୁ ଏହାକୁ ଯଥାର୍ଥ ପରିଚାଳନା କରି ମୋତେ ଦିଗ୍‌ଦର୍ଶନ୍ ଦେଉଥିଲେ । ଏହାପରେ ମୁଁ ସଂପୂର୍ଣ୍ଣ ଚତୁର୍ଥ ଶ୍ରେଣୀର ଦାୟିତ୍ୱ ଓ ୫ମର କେବଳ ସାହିତ୍ୟ ନେବା ପାଇଁ ଜିଦ୍ ଧରିଲି । ଫଳରେ ପୂର୍ବ

ପ୍ରଚଳିତ ପିରିଅଡ୍ ଶିକ୍ଷା ବ୍ୟାହତ ହେଲା । ତଥାପି ଏହା ଏକ ପରୀକ୍ଷାମୂଳକ ଉଦ୍ୟମ ବୋଲି ଆଚାର୍ଯ୍ୟେ କହିଥିଲେ । ମୁଁ କେବଳ ୪ର୍ଥ ଶ୍ରେଣୀ ପିଲାମାନଙ୍କୁ ନେଇ ଏହି Boys Own Courtର କାର୍ଯ୍ୟ ଚଳାଇଥିଲି ଓ ସୁଫଳ ମଧ୍ୟ ପାଇଥିଲି । ମୁଁ ପ୍ରଧାନ ଶିକ୍ଷକ ନଥିବାରୁ ଯାହା ଚିନ୍ତା କରୁଥାଏ, ତାହାକୁ ସଂପୂର୍ଣ୍ଣ କାର୍ଯ୍ୟକାରୀ କରିବାରେ ଅସୁବିଧା ହେଉଥାଏ ।

ସ୍କୁଲର ସ୍ୱତନ୍ତ୍ର ଖେଳ ପଡ଼ିଆ ନଥିବାରୁ ଓ ଶିକ୍ଷକ କେହି ପିଲାମାନଙ୍କୁ ନେଇ ଖେଳାଇବାକୁ ଆଗ୍ରହୀ ନଥିବାରୁ ମୁଁ ଖୁବ୍ ଦୁଃଖିତ ହୋଇ ଆଚାର୍ଯ୍ୟଙ୍କୁ କହିବାରେ ସେ ନିଜର ଅକ୍ଷମତା ପ୍ରକାଶ କରିଥିଲେ । ସବୁ ସୁବିଧା କରିପାରିଥିଲେ ମଧ୍ୟ ଆମ ସ୍କୁଲର ସନ୍ତୋଷଜନକ ଭାବରେ କ୍ରୀଡ଼ା ପାଇଁ ବ୍ୟବସ୍ଥା କରିପାରିନଥିଲି । ସାମୟିକ କିଛି ପିଲାଙ୍କୁ ନେଇ ହାଇସ୍କୁଲ ପ୍ରାଙ୍ଗଣରେ ବେଳେ ବେଳେ ଖେଳାଇ ମନର ଓରିମାନା ମେଣ୍ଟାଇଛି ମାତ୍ର ।

ଦିନେ ଆଚାର୍ଯ୍ୟେ ପୁରସ୍କାର ବିତରଣୀ ଉତ୍ସବର ଆୟବ୍ୟୟ ସଂପୂର୍ଣ୍ଣ କରି ଶିକ୍ଷକମାନଙ୍କୁ ଡାକି ସେ ସବୁ ବୁଝାଇ ବସିଲେ । ଆୟ ତାଲିକାରେ ପୋଲିସ ଇନ୍ସପେକ୍ଟରଙ୍କ ଦାନ ୫୧ ଟଙ୍କା ପଡ଼ିଥିବା ଦେଖି ଯୋଗୀବାବୁ କହି ଉଠିଲେ, " - ଆପଣ ପୁଲିସ ଅଫିସରଙ୍କ ଠାରୁ ପୁଣି ୫୧ ଟଙ୍କା ଆଣିପାରିବା ଏକ ଆଶ୍ଚର୍ଯ୍ୟ ଘଟଣା । କାହାକୁ କିଛି ଦେବା ପୋଲିସଙ୍କ ଜାତକରେ ନଥାଏ ।''

ଆଚାର୍ଯ୍ୟେ କହିଲେ, " - ମୁଁ ତାଙ୍କୁ ମାଗିନାହିଁ । ମାଗି ନଥାନ୍ତି ମଧ୍ୟ । ପାରଳା ମହାରାଜା ତଥା ଓଡ଼ିଶାର ପ୍ରଧାନମନ୍ତ୍ରୀ ଆସୁଥିବା ଶୁଣି ସେ ମୋତେ ଯଥାଯୋଗ୍ୟ ଆୟୋଜନ ସଂପର୍କରେ ପଚାରିବା ପରେ ସ୍ୱତଃ ଏ ଅର୍ଥ ଦେଇ କହିଲେ, " - ଏ ମୋର ଗୁରୁଦକ୍ଷିଣା ବୋଲି ମନେ କରିବେ । ସ୍କୁଲର ଉତ୍ସବ ସରିବା ପରେ ଦିନେ ପଚାରନ୍ତେ ସେ କହିଲେ, " ଆପଣଙ୍କ ଶିକ୍ଷକ ନାୟକ ବାବୁ ମୋ ଝିଅକୁ ସନ୍ଧ୍ୟା ବେଳେ କିଛି ସମୟ ପଢ଼ାନ୍ତି । ଏଥିପାଇଁ ସେ କୌଣସି ପାରିଶ୍ରମିକ ନେବା ପାଇଁ ସ୍ପଷ୍ଟ ମନା କରିଥିଲେ । କିପରି ଗୁରୁଙ୍କୁ କିଛି ଦେବି ଭାବୁଥିବା ବେଳେ ଏପରି ଏକ ସୁଯୋଗ ପାଇ ଯତ୍-କିଞ୍ଚିତ ଦକ୍ଷିଣା ଦେଇଛି ।'' ଏହା ଶୁଣି ୩ ଜଣ ଶିକ୍ଷକ ପ୍ରତିବାଦ କରି କହିଥିଲେ, " - ଏହା ଏକ ଅତିବେଶୀ ମହତ୍-ବ୍ୟକ୍ତି ଭାବରେ ନିଜକୁ ପରିଚିତ କରାଇବାର ଅପଚେଷ୍ଟା । ପରିଶ୍ରମ କରିବ, ପୁଣି ବିନା ମୂଲ୍ୟରେ ଏହା ଅଶୋଭନୀୟ ପରଂପରା । '' ମୁଁ ବିନମ୍ର କଣ୍ଠରେ କହିଥିଲି, "- ମୁଁ ଯାହା ଉଚିତ ମନେ କରିଛି ତାହାହିଁ କରୁଛି । ଏହା ମୋର ସଂପୂର୍ଣ୍ଣ

ଇଚ୍ଛାଧୀନ । ଏଥିରେ କେହି କ୍ଷୁବ୍ଧ ବା ରୁଷ୍ଟ ନହେବା ପାଇଁ ଅନୁରୋଧ ।'' ଆଉ କାହାରି ସ୍ୱର ଶୁଣାଯାଇନଥିଲା ।

## ଆମ ଛାତ୍ରାବାସରେ ମାଟ୍ରିକ ପରୀକ୍ଷାର୍ଥିନୀ

ଆଚାର୍ଯ୍ୟଙ୍କର କୌଣସି ସନ୍ତାନ ନଥିବାରୁ ସେ ତାଙ୍କ ସାନଭାଇଙ୍କ ପୁଅକୁ ପୁଅ କରିଥିଲେ । ମାତ୍ର ଧର୍ମଝିଅ ଥିଲେ ଅନେକ । ଧଳେଶ୍ୱର ଗ୍ରାମରେ ତାଙ୍କର ଏକ ଧର୍ମଝିଅ ଥିଲା । ସେ ସେଇ ବର୍ଷ ମାଟ୍ରିକ ପରୀକ୍ଷା ଦେବ । ପରୀକ୍ଷା ଆଉ ମାତ୍ର ୩ ମାସ ଥାଏ । ଆଚାର୍ଯ୍ୟେ ମୋତେ, ଯୋଗୀ ବାବୁ ଓ ନଟବାବୁଙ୍କୁ ଅଫିସକୁ ଡାକି କହିଲେ, " ମୋ ଅନୁରୋଧ ରକ୍ଷା ନକଲେ ମୋ ମନରେ ଦାରୁଣ କଷ୍ଟ ହେବ । ମୋ ଧର୍ମଝିଅ ହାରାମଣି ଏବର୍ଷ ମାଟ୍ରିକ ପରୀକ୍ଷାର୍ଥିନୀ । ଘରେ ଆଦୌ ପଢ଼ାପଢ଼ିର ସୁବିଧା ହେଉନାହିଁ । ଏଣୁ ମୋର ଏକାନ୍ତ ଅନୁରୋଧ, ଆପଣମାନେ ସେ ଝିଅଟିକୁ ଏଠାରେ ରଖି ମାତ୍ର ତିନିମାସ ପାଇଁ ତା'ର ଦାୟିତ୍ୱ ନିଅନ୍ତୁ । ମୋ ନିଜଘରେ ମଧ୍ୟ ସୁବିଧା ନାହିଁ । ସ୍କୁଲର ପ୍ରଥମ ବ୍ଲକ୍ ପଛପଟେ ଟୁକୁ ମିଆଁଦୋକାନ ପାଖରେ ଛୋଟ ବଖରାଟିଏ ଅଛି । କାଲି ତାହା ଲିପାପୋଛା ହୋଇଯିବ । ହାରାମଣି ଦିନଯାକ ସେ ଘରେ ରହି ପଢ଼ିବ । ମେସରେ ଖାଇବ । ରାତିରେ ତା ପାଖରେ ଦୁଇଟି ପିଲା ଶୋଇବେ । ପାଠପଢ଼ାରେ ଆବଶ୍ୟକ ହେଲେ ଯୋଗୀବାବୁ ତାକୁ ସାହାଯ୍ୟ କରିବେ ।'' ଆଚାର୍ଯ୍ୟେ ଏକା ନିଃଶ୍ୱାସକେ ତାଙ୍କ କଥା କହିଗଲେ ସିନା ଆମକୁ ଖୁବ୍ ଚିନ୍ତା ମାଡ଼ିବସିଲା । ଉପାୟ ନାହିଁ । ହଁ ଛଡ଼ା ନାହିଁ କରି ଦେବାର ଉପାୟ ମଧ୍ୟ ନାହିଁ । ତିନି ଶିକ୍ଷକଯାକ ସାମାନ୍ୟ ଆଲୋଚନା ପରେ ସମ୍ମତ ହେଲୁ ।

ଦୁଇଦିନ ପରେ ହାରାମଣି ଆସିଲା । ପୂର୍ବ ବ୍ୟବସ୍ଥା ଅନୁସାରେ ସବୁ କାର୍ଯ୍ୟ ଚାଲିଲା । ସଫାଇରେ ସ୍ୱତଃ ପ୍ରବୃତ୍ତ ହୋଇ ହାରାମଣି ଯୋଗ ଦେଲା । ଖନ୍ଦା ପାଇଖାନା ତା ପାଇଁ ବିଶେଷ ଉପଯୋଗୀ ହୋଇଥିଲା ।

ତିନୋଟି ମାସ ସୁରୁଖୁରୁରେ କିପରି କଟିଯିବ, ଆମ ସମସ୍ତଙ୍କ ମନରେ ଏକ ଗୁରୁତର ଚିନ୍ତା ରୂପେ ରହିଥାଏ । ଯାହାହେ. ହାରାମଣି ପରୀକ୍ଷା ଦେଲା । ପରେ ଶୁଣିଲୁ ସେ ଉତ୍ତୀର୍ଣ୍ଣ ହୋଇଛି । ଫଳ ପ୍ରକାଶିତ ହେବା ପରେ ସେ ଆମ ତିନିଜଣ ଶିକ୍ଷକଙ୍କୁ ଯଥାବିହିତ ସମ୍ମାନ ଦେଖାଇବା ପାଇଁ ସ୍କୁଲକୁ ଆସିଥିଲା । ଆମେ ଏକ ମହାନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାରୁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲୁ ।

ଏହା ଉଲ୍ଲେଖନୀୟ ଘଟଣା ନହେଲେ ମଧ୍ୟ ଏକ ସ୍ମରଣୀୟ ଘଟଣାଥିଲା ।

## ଅନ୍ୟ ଏକ ଏକ୍ସପେରିମେଣ୍ଟ

କୌଣସି ଶିକ୍ଷକ ବା ତାଙ୍କ କାର୍ଯ୍ୟକୁ ସମାଲୋଚନା କରିବା ମୋର ଆଦୌ ଇଚ୍ଛା ନୁହେଁ । ସର୍ବଦା ସହକର୍ମୀ ଶିକ୍ଷକମାନଙ୍କ ସାନ୍ନିଧ୍ୟ, ସହଯୋଗ ଓ ସହାନୁଭୂତି ଆକର୍ଷଣ ପ୍ରୟାସୀ ଥାଏ । ମାତ୍ର ଘଟଣାଚକ୍ରରେ ମୋର ନିଷ୍ଠା ଓ ଐକାନ୍ତିକ ଆନ୍ତରିକତା ମୋର ସହକର୍ମୀମାନଙ୍କୁ ଅଲକ୍ଷ୍ୟରେ ଅସନ୍ତୁଷ୍ଟ କରିଥାଏ ।

ମୋର ଶିକ୍ଷାଦାନ ପଦ୍ଧତି ଶିକ୍ଷକମାନେ ଅନୁସରଣ କରୁଥିବା ପଦ୍ଧତିଠାରୁ ଭିନ୍ନଥାଏ । ମୁଁ ଯାହାକୁ ଶିଖିଥିଲି, ତାକୁ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରିବା ପରେ ମୋର ଯେଉଁ ଅଭିଜ୍ଞତା ହୁଏ ତହିଁରୁ ମୁଁ କିଛି ପୋଥିବାଇଗଣଙ୍କୁ ବାଦ୍‌ଦେଇ ଏକ ପରିବର୍ତ୍ତିତ ପଦ୍ଧତି ସୃଷ୍ଟି କରିଥାଏ ।

ବିଶେଷକରି ଶିଶୁ-ଶିକ୍ଷାଦାନ ଏକ ଅତ୍ୟନ୍ତ ଦୁରୂହ କାର୍ଯ୍ୟ । ଯେଉଁଠି ଶିକ୍ଷକ ଶିଶୁକୁ ପାଠ୍ୟପୁସ୍ତକରୂପେ ଗ୍ରହଣ କରି ତାକୁ ଉତ୍ତମରୂପେ ପୃଷ୍ଠା ପରେ ପୃଷ୍ଠା ଅଧ୍ୟୟନ କରିବାର ଆଗ୍ରହୀ ହୋଇଥାନ୍ତି, ସେଇଠି ଶିକ୍ଷାଦାନର ସଫଳତା ନିଶ୍ଚିତ ହୋଇଥାଏ ।

ପ୍ରତ୍ୟେକ ଶିଶୁଙ୍କୁ ଅଧ୍ୟୟନ କରିବା ପଦ୍ଧତି ଏକାପ୍ରକାର ହୋଇନଥାଏ । ଏଥିପାଇଁ ପରିବେଶ ପରିବାର ଓ ପ୍ରଜ୍ଞାରେ ବିଭିନ୍ନତା ଦେଖାଯିବା ସ୍ୱାଭାବିକ । ଗୋଟିଏ ସଭ୍ୟ, ଶିକ୍ଷିତ ପରିବାରରୁ ଆସିଥିବା ଶିଶୁ ସହିତ ଜଣେ ଅଶିକ୍ଷିତ ଶ୍ରମିକ ଶ୍ରେଣୀରୁ ଆସିଥିବା ପିଲାକୁ ସମାନ ଦୃଷ୍ଟିରେ ଦେଖିହୁଏ ନାହିଁ । ଏଇଠି ଶିକ୍ଷକ ମନିଷୀ ପେଷ୍ଟାଲଜୀଙ୍କ ଶିଶୁ-ମନୋବିଜ୍ଞାନକୁ ଶତ-ପ୍ରତିଶତ ପ୍ରୟୋଗ ନକରି ଅନେକ ପରିବର୍ତ୍ତନ କରିଥାନ୍ତି । ଏହା ଶିକ୍ଷକଙ୍କ ଅଭିଜ୍ଞତାପ୍ରସୂତ ହୋଇଥାଏ । ଉଦାହରଣ ଦେଇ ଏହାକୁ ବିଶଦ୍ ବର୍ଣ୍ଣନା କରିବା ଏକ ବଡ଼ ପ୍ରବନ୍ଧରେ ପରିଣତ ହୋଇଯିବ ।

ସ୍ଥୂଳତଃ ଶିଶୁଛାତ୍ରକୁ ଶିକ୍ଷାଦେବା ଅତୀବ କଷ୍ଟକର ବ୍ୟାପର । ମୋ ଦୀର୍ଘ ଅଭିଜ୍ଞତାରୁ କହିବି, ଶିକ୍ଷକ ବିଶେଷ କରି ଯୁବକ ଶିକ୍ଷକମାନେ ଏ କାର୍ଯ୍ୟ କରିବାପାଇଁ ଆଦୌ ଧୈର୍ଯ୍ୟର ସହିତ ଅପେକ୍ଷା କରିନଥାନ୍ତି । ସାମାନ୍ୟ ସାମାନ୍ୟ କାରଣରୁ ରକ୍ତଚକ୍ଷୁ, ଶିକ୍ଷକତାର ଅହଂ ଏବଂ ଲମ୍ବା ବେତ୍ରର ପ୍ରୟୋଗ ଶିଶୁ ପ୍ରାଣର କୋମଳତାକୁ ସଂପୂର୍ଣ୍ଣ କବଳିତ କରି ପକାଏ । ଶିଶୁ ଶିକ୍ଷକଙ୍କୁ ପୋଲିସ ଅଫିସର ଓ ଶିକ୍ଷାନୁଷ୍ଠାନକୁ ଜେଲ୍‌ଖାନା ପରି ଭୟ କରେ । ଏହି କାରଣରୁ ଅନେକ ଶିଶୁ ବିଦ୍ୟାଳୟକୁ ଆସନ୍ତି

ନାହିଁ ! ସ୍କୁଲ ଆସୁଥିବା ପିଲାମାନଙ୍କର ସଂଖ୍ୟା ଧୀରେ ଧୀରେ ଊଣା ହେବାରେ ଲାଗେ । ଖାଲି ଶିଶୁ ନୁହନ୍ତି, ଅନେକ ବଡ଼ ପିଲା ମଧ୍ୟ ଶିକ୍ଷକଙ୍କର ଦଣ୍ଡବିଧାନକୁ ଭୟ କରି ଅଧାରୁ ପାଠ ଛାଡ଼ିଥାନ୍ତି । ଆମ ରାଜ୍ୟର ଅପଚୟ (dropout) ର ନାନା ବିଧି କାରଣ ମଧ୍ୟରୁ ଛାତ୍ରଛାତ୍ରୀଙ୍କ ମନରେ ଦଣ୍ଡଦାନର ଅହେତୁକ ଭୟ ହିଁ ଏକ କାରଣ ରୂପେ ବିବେଚିତ ହୋଇଛି । ତେଣୁ ଶିକ୍ଷକ ସର୍ବଦା ହର୍ଷମୁଖ ହୋଇ ଅଧ୍ୟାପନା କରିବେ । ପିଲାମାନେ ଶିକ୍ଷକଙ୍କୁ ଅତି ଆପଣାର ବୋଲି ଧାରଣା ସୃଷ୍ଟି କରାଯିବ । ଦଣ୍ଡ ସମ୍ପୂର୍ଣ୍ଣ ନିରୋଧ ହେବ । କିନ୍ତୁ ଏହା ଏବେ ମଧ୍ୟ ଏକ ପୋଥି ବାଇଗଣ ହୋଇ ରହିଯାଇଛି । ଛାଡ଼ନ୍ତୁ - ମୂଳକଥା ସଂପର୍କରେ ଏପର୍ଯ୍ୟନ୍ତ କିଛି ନକହି ଗୌରଚନ୍ଦ୍ରିକାରେ ଅନେକ କିଛି ବର୍ଣ୍ଣନା କରି ପକାଇଛି ।

ପୁରସ୍କାର ବିତରଣ ପରେ ପରେ ଆମ ମଡ଼େଲ ଉ.ପ୍ରା.ରେ ସତେ ଯେପରି ନବଜୀବନ ସଞ୍ଚାରିତ ହୋଇଗଲା । ସମସ୍ତଙ୍କ ତୁଣ୍ଡରେ ଆମ କୃତିତ୍ୱର ତାରିଫ୍ ଶୁଣାଗଲା । ଆଚାର୍ଯ୍ୟେ ମୋ ସଂପର୍କରେ ସର୍ବତ୍ର ଆବଶ୍ୟକତାଠାରୁ ଅଧିକ ପ୍ରଶଂସାଗାନ କରି ବେଶ୍ ସୁଖ ଅନୁଭବ କରୁଥିଲେ । ଆମ ସ୍କୁଲଠାରୁ ଅଳ୍ପ ଦୂରରେ ଓଭରସିଅର୍ ଲକ୍ଷ୍ମୀଧର ମହାନ୍ତିଙ୍କ କ୍ୱାର୍ଟର । ଏପରିକି ସ୍କୁଲ ଫାଟକ ପାଖରୁ ବଡ଼ପାଟିରେ ଡାକିଲେ ତାଙ୍କ ଘରକୁ ଶୁଣାଯିବ । ତାଙ୍କର ଗୋଟିଏ ଝିଅ । ତେଣୁ ଲାଳନର ଆତିଶଯ୍ୟ ତାକୁ ପାଠ ପଢ଼ିବାକୁ ଆଗ୍ରହୀ କରି ପାରିନଥିଲା । ବିଶେଷ କରି ଆମ ସ୍କୁଲର ଦୁଇଜଣ ଶିକ୍ଷକ ଏହି ଛାତ୍ରୀଟିକୁ ଟିଉସନ କରିବାକୁ ଯାଇ ଉପଯୁକ୍ତ ପାରିଶ୍ରମିକ ଗ୍ରହଣ କରିଥିଲେ ମଧ୍ୟ ଅକୃତକାର୍ଯ୍ୟ ହୋଇଥିଲେ । ହତାଶ ହୋଇ ଲକ୍ଷ୍ମୀଧର ବାବୁ ଆଚାର୍ଯ୍ୟଙ୍କ ଶରଣାପନ୍ନ ହେଲେ । କିଛି ନବିଚାରି ଆଚାର୍ଯ୍ୟେ ଚଟାପଟ୍ ମୋ ନାଆଟି ପ୍ରକାଶ କରିଦେଲେ ଓ ପରଦିନ ପ୍ରତ୍ୟୁଷରୁ ଲକ୍ଷ୍ମୀଧର ବାବୁ ମୋତେ ତାଙ୍କ ମନକଥା ସହିତ ଆଚାର୍ଯ୍ୟଙ୍କ କଥା ମଧ୍ୟ କହିଲେ । ମୁଁ ଭାବିଚିନ୍ତି ଜବାବ ଦେବି ବୋଲି କହିବାରେ ସେ ଆଜି ସ୍ଥିର ଜବାବ ନେଇ ଫେରିବେ ଓ କାଲି ସକାଳୁ ଝିଅକୁ ପଢ଼ାଇବାକୁ ଯିବେ, ଏତିକି ନଶୁଣିବା ଯାଏ ବସାକୁ ଫେରିବେ ନାହିଁ ବୋଲି କହିଲେ । ମୁଁ ଅନନ୍ୟୋପାୟ ହୋଇ ଜବାବ ଦେଲି ଓ ସେହି ରାତିରେ ଯୋଗୀ ବାବୁ ଓ ନଟବାବୁଙ୍କୁ ଛାତ୍ରାବାସର ଯଥାର୍ଥ ତତ୍ତ୍ୱ ନେବା ପାଇଁ ଅନୁରୋଧ କଲି । ସେମାନେ ମଧ୍ୟ ମୋ କଥାରେ ଅସମ୍ମତ ହୋଇନଥିଲେ । ମାତ୍ର ଘଣ୍ଟାଏ ଦେଢ଼ଘଣ୍ଟା ପାଇଁ ଯିବାକୁ ସ୍ଥିର କଲି । ତହିଁ ଆରଦିନ ସକାଳୁ ତାଙ୍କ କ୍ୱାର୍ଟରକୁ ଗଲି । ତାଙ୍କ ସ୍ତ୍ରୀ ପ୍ରାରମ୍ଭିକ କଥାଭାଷା ସହିତ କିଛି ଜଳଯୋଗ ଗ୍ରହଣ କରିବାକୁ ବାଧ୍ୟ କଲେ । କଥା ପ୍ରସଙ୍ଗରେ ତାଙ୍କ ଝିଅର ଅଧ୍ୟୟନ ବିମୁଖତାର

ମୁଖ୍ୟ କାରଣ ସଂପର୍କରେ ଜାଣିଲି । ଆସିଥିବା ଶିକ୍ଷକମାନେ ଶିକ୍ଷକ ଭାବରେ ଆସିଥିଲେ । ପିଲାଟି ମନରେ ଆପଣାର ଲୋକ ବୋଲି ଧାରଣା ସୃଷ୍ଟି କରାଇ ନଥିବା ତଥା ଶିକ୍ଷାଦାନର ତଥାକଥିତ ମୁଖ୍ୟ ମାଧ୍ୟମ ମାଡ଼ର ପ୍ରୟୋଗ ତାକୁ ପାଠ ପଢ଼ିବାକୁ ଅନାଗ୍ରହୀ କରି ପକାଇ ଥିଲା ।

ସମୁଦାୟ ବିଷୟ ଲେଖିଲେ ବହୁତ ଲମ୍ବିଯିବ । ଏତିକି କହିଲେ ଯଥେଷ୍ଟ ହେବ ଯେ ମୁଁ ଟ୍ରେନିଂ ସ୍କୁଲରେ ହେଡ୍‌ମାଷ୍ଟରଙ୍କ ସହାୟତାରେ ତାଙ୍କ ପୁଅ ବିଷ୍ଣୁକୁ ଯେଉଁ ପ୍ରଣାଳୀରେ ନିଜର କରି ପାରିଥିଲି, ଏଠାରେ ଠିକ୍ ସେହିପରି ପ୍ରଣାଳୀରେ ଲକ୍ଷ୍ମୀଧର ବାବୁଙ୍କ ଝିଅ ବୁଢ଼ୀ (ସରୋଜିନୀ) କୁ ଏକ ଏକାନ୍ତ ଅନୁଗତ ଛାତ୍ରୀ ଭାବରେ ଶିକ୍ଷା ଦେଇ ଆମ ସ୍କୁଲରେ ନାମ ଲେଖାଇବାକୁ ସମର୍ଥ ହୋଇଥିଲି । ଅତ୍ୟନ୍ତ ଧୈର୍ଯ୍ୟର ସହିତ କ୍ରୀଡ଼ା ଓ ଗଳ୍ପକଥନ ମାଧ୍ୟମରେ ମୁଁ ଲକ୍ଷ୍ୟ ଲାଭ କରିବାକୁ ସମର୍ଥ ହୋଇଥିଲି ।

ମୁଁ ୧୯୪୮ରେ ନିମାପଡ଼ାରୁ ବାଲକାଟି ଟଣା ହୋଇ ଆସିଲି । ଚାକିରିଆର ସ୍ୱାଧୀନତା ନଥାଏ । ତେଣୁ ସବୁ ପ୍ରତିବାଦ, ଆପତ୍ତି ପାଣିରେ ଗାର ପରି ହୋଇଯାଉଥିଲା । ଇଚ୍ଛା ବିରୁଦ୍ଧରେ ମୁଁ ନିମାପଡ଼ା ଛାଡ଼ିବାକୁ ବାଧ୍ୟ ହୋଇଥିଲି ।

\+ \+ \+ \+

ଏହାପରେ ଅନେକ ବର୍ଷ ବିତିଯାଇଛି । ମୁଁ ପୁରୀ ଜିଲା ଶିକ୍ଷକ ସଂଘର ସଂପାଦକ ରୂପେ ପୁରୀ ମ୍ୟୁନସିପାଲ୍ଟି ଶିକ୍ଷକଙ୍କର ଏକ ସମ୍ମିଳନୀ ସଭାପତି ରୂପେ ଯୋଗ ଦେଇଥାଏ । ସଭା ସରିଲା । ବହୁ ଶିକ୍ଷକ ଶିକ୍ଷୟିତ୍ରୀ ସମବେତ ହୋଇଥିଲେ । ଏତିକିବେଳେ ସଂପୂର୍ଣ୍ଣ ଶ୍ୱେତବସ୍ତ୍ର ପରିହିତା ଜଣେ ନିରାଭରଣା ଶିକ୍ଷୟିତ୍ରୀ ମୋ ପାଦତଳେ ମଥାନତ କରି ଅଶ୍ରୁସଜଳ ଅଧୋବଦନରେ ଠିଆ ହୋଇଗଲା । ମୁଁ ଚିହ୍ନି ତ ପାରିଲି ନାହିଁ । ପଚାରିବାକୁ କାହିଁକି ଇଚ୍ଛା ହେଉନଥାଏ । ଏତିକିବେଳେ ସେ କହିଲା, – "ସାର୍, ଆପଣ ମୋତେ ନିଶ୍ଚୟ ଚିହ୍ନି ପାରୁନାହାନ୍ତି । ମୁଁ ଆପଣଙ୍କ ନିମାପଡ଼ା ଛାତ୍ରୀ ବୁଢ଼ୀ । ଦାରୁଣ ବିଧାତାର କ୍ରୂର ଅଭିଶାପ ମୋତେ ଏ ଦୁର୍ଦ୍ଦଶା ଦେଇଛି । ଗୋଟିଏ ମାତ୍ର ପୁଅ ମୋର । ସେହି ପୁଅକୁ ଆଶ୍ରା କରି ଏ ଜୀବନର ଭଙ୍ଗା ନୌକାକୁ ଅତି କଷ୍ଟରେ କାତ ମାରି ଚାଲିଛି, ସାର୍ । ପୁଅଟି ଆରବର୍ଷ ଡାକ୍ତରୀ ପାଶ୍ କରି ଆସିବ ଓ ତାକୁ ବିଭା କରିଦେବି ।''

ମୋର ସମସ୍ତ ଅତୀତ ଇତିହାସ ସ୍ମୃତିପଟରେ ଉଦ୍‌ଭାସିତ ହୋଇ ଉଠିଲା । ସେ ମାଟ୍ରିକ ପାଶ୍ ପରେ ଟ୍ରେନିଂ ଓ ତାପରେ ବିବାହ କରି ପୁରୀ କୁଣ୍ଡେଇବେଣ୍ଟ ସାହିରେ ରହିଲା । ସ୍ୱାମୀଙ୍କ ବିୟୋଗ ପରେ ଚାକିରୀକୁ ଆଶ୍ରୟ କରି କୌଣସି ମତେ ସମୟ କଟାଉଛି । ଅଜାଣତରେ ମୋ ଆଖି ଓଦା ହୋଇଗଲା ଓ ମୁଁ ନିଜ ହାତରେ ମୋ ବୁଢ଼ୀର ଆଖିରୁ ଲୁହ ପୋଛି ଦେଇଥିବା କଥା ଏବେ ମଧ୍ୟ ମୋ ମନକୁ ଆନ୍ଦୋଳିତ କରୁଛି । ସମସ୍ତେ ଫେରିଲେ । ବୁଢ଼ୀ ମୋତେ ତା ଘରକୁ ଯିବାକୁ ଅନୁରୋଧ କରିଥିଲା । ମାତ୍ର ଯାଇପାରିନଥିଲି । ଏତେ ବଡ଼ ସଭାରେ ସେ ମୋତେ ଯେଉଁ ଗୁରୁଦକ୍ଷିଣା ଦେଇଥିଲା, ତାହାର ମୂଲ୍ୟାଙ୍କନ କରିବା ପାଇଁ କୌଣସି ପାର୍ଥିବ ଧନ ପର୍ଯ୍ୟାପ୍ତ ନୁହେଁ ।

## ନିମାପଡ଼ାରେ ମାୟାଧର ମାନସିଂହଙ୍କ ସହିତ

ବହୁ ମହାପୁରୁଷ, ବିଶିଷ୍ଟଲେଖକ, ରାଜନୀତିଜ୍ଞଙ୍କ ପ୍ରାଥମିକ ଜୀବନ ଶୈଳୀ ପାଠ କରିଛି । ଫକୀରମୋହନ, ଗଙ୍ଗାଧର ମେହେର ଏବଂ ବିଦେଶର କେଉଁ ମହାନ୍ ବୈଜ୍ଞାନିକ ଖବର କାଗଜ ହକର ତ ଆଉ କିଏ ବିଜ୍ଞାନାଗାରରୁ ଛାତ୍ରମାନଙ୍କୁ ବିଭିନ୍ନ ପଠନୋପଯୋଗୀ ଦ୍ରବ୍ୟମାନ ଯୋଗାଇବା ବୟ ( Boy) ଭାବରେ ନିଯୁକ୍ତ ହୋଇଛନ୍ତି ତ ଆଉ କେହି ଘରର ଚାକର ହିସାବରେ ରହି ସ୍ୱୀୟ ଅସାଧାରଣ ପ୍ରଜ୍ଞାକୁ ପ୍ରକଟିତ କରି ଜଗତ୍‌ବିଖ୍ୟାତ ବ୍ୟକ୍ତି ରୂପେ ସମ୍ମାନିତ ହୋଇଛନ୍ତି ।

ମାୟାଧର ବାବୁ ଉତ୍କଳ ଜନନୀଙ୍କ ଗଳାରତ୍ନମାଳା ରୂପେ ଶୋଭାପାଇ ଏକ ଅକ୍ଷୟ କୀର୍ତ୍ତି ସ୍ଥାପିନ କରି ଯାଇଛନ୍ତି । ଉତ୍କଳର ସାରସ୍ୱତ ଭଣ୍ଡାରକୁ ବହୁ ମୂଲ୍ୟବାନ ମଣି ମାଣିକ୍ୟରେ ଋଦ୍ଧିମନ୍ତ କରିଛନ୍ତି । ଏଇ ମହାନ୍‌ବ୍ୟକ୍ତି ୧୯୪୬ ବା ୪୭ ମସିହାରେ ନିମାପଡ଼ା ହାଇସ୍କୁଲର ସହକାରୀ ଶିକ୍ଷକରୂପେ ଯୋଗ ଦେଲେ । ନିମାପଡ଼ା ଉପାନ୍ତରେ ପାଟପୁର ଶାସନରେ ଏକ ଭଡ଼ାଘରେ ରହି ପ୍ରତ୍ୟହ ଆମ ଉ.ପ୍ରା. ସ୍କୁଲ ଦେଇ ହାଇସ୍କୁଲକୁ ଯାତାୟତ କରୁଥିଲେ । ବସାରେ ଥିଲେ ଧର୍ମପତ୍ନୀ ହେମଲତା ମାନସିଂ । ପ୍ରାୟ ପ୍ରତିଦିନ ତାଙ୍କ ସହିତ ଆମ ସ୍କୁଲ ସାମ୍ନାରେ ଦେଖାହୁଏ । ଏତେ ବଡ଼ ବିଦ୍ୱାନ୍ ବ୍ୟକ୍ତିଙ୍କୁ ଦେଖି ମୋ ମଥା ନଇଁ ଯାଉଥାଏ । ମାସିକ ପରିଭ୍ରମଣ ଅବସରରେ ମୁଁ ପିଲାମାନଙ୍କୁ ନେଇ ପାଟପୁର ଓ କୁଶଭଦ୍ରା ନଦୀ ଆଦି ବୁଲି ଫେରୁଥିବା ବେଳେ ମାନସିଂ ବାବୁଙ୍କ ସହିତ ସାକ୍ଷାତ ହୋଇଗଲା । ମୋ ଆତ୍ମ ପରିଚୟ ଦେଇ କହିଲି, " – ଆପଣଙ୍କ ପୂଜ୍ୟଗୁରୁ କୁଂଜବିହାରୀ ମହାନ୍ତି ମୋର ନିଜ ପିଉସା ।'' ମାତ୍ର ଏତିକି କଥାରେ ସେ ଭାବବିହ୍ୱଳ ହୋଇ ଉଠିଲେ । କହିଲେ,

" - ସେ ମୋର ଖାଲି ଗୁରୁନଥିଲେ । ସେ ମୋ ଜୀବନ ରକ୍ଷା କରି ମୋତେ ମଣିଷ ପରି ଗଢ଼ିଥିଲେ ।'' ଅଳ୍ପ ସମୟ ରହି ମୁଁ ପିଲାଙ୍କ ସହିତ ଫେରି ଆସିଥିଲି । କିଛିଦିନ ପରେ ମାନସିଂ ନିମାପଡ଼ା ଛାଡ଼ି ଅନ୍ୟତ୍ର କିମ୍ବା ବିଦେଶ ଯାତ୍ରା କରିଥିଲେ, ଠିକ୍ ଜାଣିପାରୁନାହିଁ ।

## ଯୋଗୀବାବୁଙ୍କ ଭାଗ୍ୟୋଦୟ

ଚାକିରୀ କରି ଉପରିସ୍ଥ କର୍ମକର୍ତ୍ତାଙ୍କ ସହିତ ସାମାନ୍ୟ ଯୁକ୍ତି କରିବା ମଧ୍ୟ ହାକିମଙ୍କ ପକ୍ଷରେ ଅସହ୍ୟ ହୁଏ । ଯେଉଁ କଥା ହାକିମ କହିବେ, ତାହା ଅସତ୍ୟ ହେଲେ ମଧ୍ୟ ଜଣେ ସାଧାରଣ କର୍ମଚାରୀ ତା'ର ବିରୋଧ କରିବାର ପରିଣତି କେଡ଼େ ଭୟାବହ ଓ ବେଦନାଦାୟକ, ତାହା ଯୋଗୀବାବୁହିଁ ମର୍ମେ ମର୍ମେ ଅନୁଭବ କରିଥିଲେ । ଇନ୍ସପେକ୍ଟର ସୁକାନ୍ତ ରାଓଙ୍କ ରୋଷର ଶୀକାର ହୋଇ ସେ ଚାକିରୀଟି ହରାଇଥିଲେ ।

ଦୀର୍ଘଦିନ ଆବେଦନ, ନିବେଦନ ଓ ସାକ୍ଷାତକାର ସମସ୍ତ ନିଷ୍ଫଳ ହୋଇଗଲା । ଶେଷକୁ ସେ ଆଶା ତ୍ୟାଗ କରି ହତାଶ କଣ୍ଠରେ ଥରେ କହିଥିଲେ, "ସତ୍ୟବାଦୀର ଗୁରୁମାନେ ମୋର ଏ ଶୋଚନୀୟ ଦୁର୍ଗତିର କାରଣ ହୋଇଗଲେ । ସତ୍ୟ କଥନ ଓ ସତ୍ୟ-ପ୍ରକାଶ ପାଇଁ ଆମକୁ ପ୍ରତ୍ୟହ ଚେତାଇ ଦିଆଯାଉଥିଲା । ଏହି ମହତ୍ ଉପଦେଶର ଫଳ ହେଲା ମୁଁ ଅଯୋଗ୍ୟ ଶିକ୍ଷକ । ବ୍ୟବହାର ଜ୍ଞାନ ନଥିବା ବ୍ୟକ୍ତି ।''

ସମୟର ସ୍ରୋତ ଅନେକ ଆବର୍ଜନାକୁ ଭସାଇ ନିଏ । ଅମାବାସ୍ୟା ଅନ୍ଧକାର ପରେ ଆକାଶରେ ପୂର୍ଣ୍ଣିମା ଚନ୍ଦ୍ରର ଦୀପ୍ତ - ମୟୂଖ ସମଗ୍ର ବିଶ୍ୱକୁ ପୁଲକିତ କରି ପକାଏ । ଲୋକ ଅନ୍ଧକାରର ଅସୁବିଧାକୁ ଅଳ୍ପ ସମୟରେ ଭୁଲିଗଲା ପରି ଯୋଗୀବାବୁଙ୍କ ଭାଗ୍ୟ ଗଗନରେ ପୂର୍ଣ୍ଣଚନ୍ଦ୍ର ଉଦୟ ହୋଇ ଆସିଲେ ।

ପଣ୍ଡିତ ଲିଙ୍ଗରାଜ ମିଶ୍ର ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଦ ମଣ୍ଡନ କଲେ । କହିବା ନିଷ୍ପ୍ରୟୋଜନ ଯେ ସତ୍ୟବାଦୀ ବନ ବିଦ୍ୟାଳୟରେ ପଣ୍ଡିତ ମିଶ୍ର ଜଣେ କୃତୀ ଶିକ୍ଷକ ଥିଲେ ଓ ଯୋଗୀବାବୁ ତାଙ୍କର ଛାତ୍ର ଥିଲେ । ଏହା ପ୍ରମାଣିତ କରିବା ପାଇଁ ଯୋଗୀ ବାବୁ କେତୋଟି ଅତୀତ ଘଟଣାକୁ ମନେ ପକାଇ ନିଜ ପ୍ରତି ମନ୍ତ୍ରୀଙ୍କ ମନରେ ବିଶ୍ୱାସ ସୃଷ୍ଟି କରାଇ ପାରିଲେ । ସବିଶେଷ ବିବରଣୀ ଅବଗତ ହେବାପରେ ମନ୍ତ୍ରୀ କହିଲେ, " – ପ୍ରବଳ ପ୍ରତାପୀ ହାକିମଙ୍କ କଥାକୁ ଠିକ୍ ନୁହେଁ କହିବାଟା ଏକ ମସ୍ତବଡ଼ ଅପରାଧ ।'' ଏପରି କହିବାର ପ୍ରୟୋଜନ ନଥିଲା । ଯୋଗୀବାବୁ

ବିନମ୍ର ଭାବରେ କହିଲେ, " – ଆପଣ ମୋର ଗୁରୁ । ତତ୍ରତ୍ୟ ସମସ୍ତ ଶିକ୍ଷକ ସର୍ବଦା ସତ୍ୟ କହିବା, ଅନ୍ୟାୟ କାର୍ଯ୍ୟନକରିବା ଏବଂ ଅନ୍ୟାୟକୁ ମୁଣ୍ଡପାତି ସହିନେବା ଏକ ଅକ୍ଷମଣୀୟ ଅପରାଧ ବାରମ୍ବାର ଶୁଣି ଆମେ ଛାତ୍ରମାନେ ସେଥିରେ ଅନୁପ୍ରାଣିତ ହୋଇ ପଡ଼ିଥିଲୁ । ମାତ୍ର ତାହା କାର୍ଯ୍ୟକ୍ଷେତ୍ରରେ ଅପ୍ରମାଣିତ ହେଲା ଓ ଫଳସ୍ୱରୂପ ପ୍ରତିକାର ପ୍ରତିବଦଳରେ ନୀରବ-ଅଶ୍ରୁ ମୁଞ୍ଚନ ହିଁ ସାର ହୋଇଛି । ମୋ ଜୀବନର କରୁଣ କାହାଣୀ ବର୍ଣ୍ଣନା କଲି । ଆପଣମାନଙ୍କର ପରି ମହାନ୍ ଗୁରୁମାନଙ୍କ ଆଦେଶ ଓ ଉପଦେଶକୁ ପାଳନ କରିବାକୁ ଶପଥ କରି ମୁଁ ଆଜି ସର୍ବସ୍ୱାନ୍ତ ଅର୍ଦ୍ଧମୃତ ଅପମାନିତ ଓ ଅତ୍ୟନ୍ତ ମର୍ମାହତ । ବହୁ ଆଶାବାନ୍ଧି ଆପଣଙ୍କ ନିକଟକୁ ଆସିଛି । କ'ଣ କରିବି ମୋତେ ଖୋଲିକରି କହନ୍ତୁ । ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ ।"

ମନ୍ତ୍ରୀଙ୍କର କିଛି କହିବାର ନଥିଲା । ସେ କହିଲେ, " - ତୁମେ ଯାଅ । ମୁଁ ନିମାପଡ଼ାର ତତ୍କାଳୀନ ପରିଦର୍ଶନ ମନ୍ତବ୍ୟ ଓ ଇନ୍ସିପେକ୍ଟରଙ୍କ ଅଫିସରେ ଥିବା ତୁମ ସଂପର୍କୀୟ ରେକର୍ଡ଼ ମଗାଇ ଦେଖିବା ପରେ ତୁମ ଠିକଣାରେ ଚିଠି ଯିବ । ତାହାପରେ ତୁମେ ମୋତେ ସାକ୍ଷାତ କରିବ ।

\+ \+ \+ \+

ଯୋଗୀବାବୁ ସନ୍ଦିଗ୍ଧମାନସ ଓ ଦୋଦୂଲ୍ୟମାନ ଅନ୍ତରରେ ଫେରିଲେ । ଏହି ଘଟଣାଟିର ୩ ମାସ ପରେ ଚିଠି ଆସିଲା – ଯୋଗୀନ୍ଦ୍ର ନାଥ ସ୍ୱାଇଁ ନିମାପଡ଼ା ହାଇସ୍କୁଲରେ ପୁନର୍ନିଯୁକ୍ତି ପାଇଲେ । ଇନ୍ସିପେକ୍ଟରଙ୍କର ଏ ଚିଠିପାଇ ଯୋଗୀବାବୁଙ୍କ ମନର ଅବସ୍ଥା ବର୍ଣ୍ଣନା କରିବା ଅସମ୍ଭବ । ସେ ଅତି ଅପ୍ରତ୍ୟାଶିତ ଭାବରେ କୁବେର ସମ୍ପତ୍ତି ଲାଭର ଆନନ୍ଦ ଅନୁଭବ କରିଥିଲେ । ବିଶେଷ କରି ତାଙ୍କ ଚରିତ୍ର ପଞ୍ଜିକାରେ ଯେଉଁ କଳା ଦାଗ ଥିଲା ତାହା ଦୂରୀଭୂତ ହୋଇ ଯାଇଥିବାର ଆନନ୍ଦରେ ସେ ଉତ୍‌ଫୁଲ ହୋଇ ଉଠିଥିଲେ । ଅନ୍ୟାୟ ଓ ଅସତ୍ୟ ଉପରେ ନ୍ୟାୟ ଓ ସତ୍ୟର ବିଳମ୍ବରେ ହେଲେ ମଧ୍ୟ ବିଜୟ ବୈଜୟନ୍ତୀ ଫରଫର ଉଡ଼ିବାରେ ଲାଗିଲା ।

## ଦାରୁଣ ବିପର୍ଯ୍ୟୟର ବର୍ଷ ୧୯୪୮

ମୋ ଜୀବନର ସମସ୍ତ ଆନନ୍ଦ, ସୁଖ, ଶାନ୍ତି ଓ ଶିକ୍ଷକ ଭାବରେ ଅର୍ଜନ କରିଥିବା ପ୍ରତିଷ୍ଠା ଉପରେ ଶନିଦୃଷ୍ଟି ପଡ଼ି ଏକ ବିରାଟ ବିପର୍ଯ୍ୟୟର ଆବର୍ତ୍ତ ମଧ୍ୟକୁ ମୋତେ ଠେଲି ନେଇଥିଲା ।

ଏହି ସ୍ମରଣୀୟ ୧୯୪୮ରେ ବାଳକାଟୀର ସତ୍ୟପ୍ରିୟ ମହାନ୍ତି ଜିଲାବୋର୍ଡ଼ର ଚେୟାରମେନ୍ ରୂପେ ନିର୍ବାଚିତ ହୋଇଥିଲେ । ଥରେ ସତ୍ୟପ୍ରିୟ ମହାନ୍ତି ନିମାପଡ଼ା

ଆସିଥିବା ଅବସରରେ ପାଖ ଆଖ କେତୋଟି ସ୍କୁଲ ଦେଖିବା ପରେ ଆମ ମଡ଼େଲ ଉ.ପ୍ରା.କୁ ଦେଖିବା ପାଇଁ ଆସିଥିଲେ ।

ଆଚାର୍ଯ୍ୟେ ଅତ୍ୟନ୍ତ ଉତ୍‌ଫୁଲ୍ଲ ହୋଇ ତାଙ୍କୁ ପ୍ରତ୍ୟେକ ଶ୍ରେଣୀଗୃହ ଛାତ୍ରଛାତ୍ରୀଙ୍କ ସଂଖ୍ୟା, ବଗିଚା, ପୋଖରୀ ଏବଂ ସର୍ବୋପରି ଛାତ୍ରାବାସ ଦେଖାଇବାରେ ସେ ବିସ୍ମିତ ହୋଇ କହିଲେ, " – ପ୍ରାଇମେରୀ ସ୍କୁଲରେ ପୁଣି ଛାତ୍ରାବାସ ! ସେଥିରେ ପୁଣି ରହୁଛନ୍ତି, ୨୩ ଜଣ ପିଲା ଏବଂ ତିନିଜଣ ଶିକ୍ଷକ । ଏହା ମୋର ବିଶ୍ୱାସ ହେଉନାହିଁ । ଅନ୍ୟ କୌଣସି ଉ.ପ୍ରା. ବିଦ୍ୟାଳୟର ଛାତ୍ରାବାସ ଥିବା ମୋ ଦୃଷ୍ଟିରେ ପଡ଼ିନାହିଁ ।'' ଆଚାର୍ଯ୍ୟେ ଅତିଶୟ ଭାବପ୍ରବଣ ହୋଇ କହିଚାଲିଲେ ଏହା ଛାତ୍ରବାସ ନୁହେଁ, ଏଠାରେ ଆଶ୍ରମର ଅନେକ ନୀତିନିୟମ ଅନୁସୃତ ହୁଏ । ଖାଦା ପାଇଖାନା ସବୁ ପିଲା ବ୍ୟବହାର କରିବାକୁ ବାଧ୍ୟ ହୋଇଥାନ୍ତି । ପିଲାମାନଙ୍କ ଦ୍ୱାରା ପ୍ରସ୍ତୁତ ଏକ ସୁଦୃଶ୍ୟ ବଗିଚାକୁ ଦେଖାଇ ଆଚାର୍ଯ୍ୟେ କହିଲେ, " – ଆମ ଏହି ଶିକ୍ଷାନୁଷ୍ଠାନଟି ବହୁ ପୁରାତନ ମାତ୍ର ଏଥିରେ ନବଜୀବନ ସଞ୍ଚାର କରିବା ଦିଗରେ ଶିକ୍ଷକ କାଶୀନାଥଙ୍କ ନିଷ୍ଠା ଓ ଅକ୍ଲାନ୍ତ ପରିଶ୍ରମ ଅବିସ୍ମରଣୀୟ ଅଟେ । ଏଠାରେ ୨୩-୨୪ ଜଣ ଛାତ୍ର ଓ ତିନିଜଣ ଶିକ୍ଷକଙ୍କ ସହାୟତାରେ ଯେଉଁ ଆଦର୍ଶ ଛାତ୍ରାବାସଟି ଗଢ଼ି ଉଠିଛି, ତାହା କେବଳ କଳ୍ପନାର ରୂପକଳ୍ପ ଅଟେ ।

ସତ୍ୟପ୍ରିୟବାବୁ ସବୁ ଶୁଣିଲେ ସବୁ ଦେଖିଲେ । ମୁଁ ଆସି ତାଙ୍କୁ ସାକ୍ଷାତ କରିବା ପରେ ସେ ଆଶ୍ଚର୍ଯ୍ୟ ହୋଇ କହିଲେ, " – ଆରେ, ତୁମେ ଏହି ସ୍କୁଲରେ ଅଛ ? ଆଚ୍ଛା, କେତେବର୍ଷ ରହିଲଣି ? ମୁଁ ପ୍ରାୟ ଆଠବର୍ଷ ହେବ କହିବାରେ ସେ କହିଲେ, " – ମୁଁ ଆଚାର୍ଯ୍ୟଙ୍କ ଠାରୁ ତୁମ ବିଷୟରେ ବହୁତ ଶୁଣି ସାରିଲିଣି । ଏହା ପରେ ସେ ନିମାପଡ଼ାରୁ ଅନ୍ୟ କୁଆଡ଼େ ଗଲେ ।

## ଅତି ପ୍ରଶଂସାର କୁପରିଣତି

ଭାବପ୍ରବଣ ହୋଇ ଆଚାର୍ଯ୍ୟେ ଯେଉଁ ଉଚ୍ଛ୍ୱସିତ ପ୍ରଶଂସା ଅଜାଡ଼ି ଦେବାରେ ଲାଗିଲେ, ତା'ର ପରିଣତି ବୁମେରାଂ ପରି ତାଙ୍କୁ ହିଁ ପ୍ରଥମେ ଆଘାତ କରିଥିଲା ।

ଠିକ୍ ପନ୍ଦର ଦିନପରେ ସର୍କଲ ଇନ୍ସପେକ୍ଟରଙ୍କ ଅଫିସରୁ ଚିଠି ମିଳିଲା, ମୁଁ ପ୍ରତାପଶାସନ ନି.ପ୍ରା. ବିଦ୍ୟାଳୟକୁ ବଦଳି ହୋଇଛି । ହଠାତ୍ ଏପରି ସଂବାଦରେ ଆଚାର୍ଯ୍ୟେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ବିଷର୍ଣ୍ଣ ବଦନରେ ବସି ରହିଲେ । ଏ ବଦଳିକୁ ବନ୍ଦ କରିବା ପାଇଁ ଆପ୍ରାଣ ଚେଷ୍ଟା କରିବି'' କହି ନିଜକୁ ଆଶ୍ୱାସନା ଦେଇଥିଲେ ମାତ୍ର ବହୁ ଚେଷ୍ଟା, ଅନେକ ସାକ୍ଷାତକାର ପରେ ମଧ୍ୟ ଆଦେଶ ଅପରିବର୍ତ୍ତିତ

ରହିଥିଲା ।

ଆଚାର୍ଯ୍ୟେ ସ୍କୁଲକୁ ଆସି ମୋତେ କୁଣ୍ଢାଇ ପକାଇ ଗଦ୍‌ଗଦ୍ କଣ୍ଠରେ କହିଲେ, "– ମୋତେ ତୁମେ କ୍ଷମା କରିଦିଅ । ମୁଁ ଚଣ୍ଡାଳ ନିଜ ହାତରେ ମୋ ଗୋଡ଼ରେ କୁରାଢ଼ୀ ମାରି ଦେଇଛି । ମୋ ଡ଼ାହାଣ ହାତକୁ କାଟି ପକାଇଛି । ମୋର ସବୁ ଆଶା ଉପରେ ପାଣି ମାଡ଼ିଗଲା ।" ଏତିକି କହିଲା ବେଳକୁ ତାଙ୍କ ଚକ୍ଷୁଦ୍ୱୟ ଅଶ୍ରୁ ସଜଳ ହୋଇ ଆସିଥାଏ । ଅଧିକ ପ୍ରଶଂସା ଲଦି ଦେଇ ଆଚାର୍ଯ୍ୟେ ପଶ୍ଚାତାପ କଲେ । ନିଷ୍ପାପର ଭାବରେ କାର୍ଯ୍ୟ କରି ମୁଁ କି ପୁରସ୍କାର ପାଇଲି, ଜାଣି ପାରିଲି ନାହିଁ ।

+ + + +

ଯଥାଶୀଘ୍ର ନିମାପଡ଼ାର ମୋହ ତୁଟାଇ, ବହୁ ସ୍ମୃତିବିଜଡ଼ିତ ଘଟଣାବଳୀକୁ ପାଥେୟ କରି ମୋତେ ନିଶ୍ଚୟ ଯିବାକୁ ହେବ । ଏହାହିଁ ଥିଲା ମୋ ପାଇଁ ଏକ ଯନ୍ତ୍ରଣାଜର୍ଜରିତ ନିଷ୍ଠୁର ସତ୍ୟ । ଦାରୁଣ ମର୍ମବେଦନା ମୋତେ ଅସ୍ଥିର କରିବାରେ ଲାଗିଲା ।

ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହେଲା । ବିଦାୟ-ଲଗ୍ନର କରୁଣ ଦୃଶ୍ୟକୁ ମୁଁ ଏଯାଏ ପାସୋରି ପାରିନାହିଁ । ଗତାନୁଗତିକ ବିଦାୟ ସମ୍ବର୍ଦ୍ଧନା ସଭା; ଉପାୟନ ପ୍ରଦାନର ମୁଁ ଆଦୌ ପକ୍ଷପାତି ନଥିଲି । ତଥାପି ସେସବୁ ଯଥାରୀତି ହୋଇଥିଲା । ପାହାଚ ଅତିକ୍ରମ କରି ଫାଟକ ଯାଏ ଯିବାପାଇଁ ପାଦ ଚଳିଲା ନାହିଁ । ସଞ୍ଚିତ ସମସ୍ତ ଧୈର୍ଯ୍ୟ ପ୍ରବଳ ପ୍ରବାହ ସମ୍ମୁଖରେ ତୃଣଖିଏ ପରି ନିମିଷକ ମଧ୍ୟରେ ଭାସିଗଲା । ଅଧିକ ବିଳମ୍ବ ଅଧିକ ବିଷାଦ ଆଣିବ । ତେଣୁ ଶିକ୍ଷକମାନଙ୍କୁ ମୋର ସମ୍ମାନ ଜଣାଇ ଆଗେଇ ଆସିଲି । ମୋ ସହିତ କେତେକ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତି ଭିଲିଗ୍ରାମ ଓ ବିଷ୍ଣୁପୁରରୁ ଆସିଥିବା ସହୃଦୟ ବ୍ୟକ୍ତିମାନେ ମୋ ସହିତ ଅଗ୍ରସର ହେବାରେ ଲାଗିଲେ । ପଛକୁ ଚାହିଁବାର ସାହସ ହେଉନଥାଏ । ବ୍ୟାଙ୍କ୍ ପାଖରେ ଦେଖିଲି ମୋ ପଛେ ପଛେ ଶିକ୍ଷକମାନେ ଆସିବା ସହିତ ପ୍ରାୟ ଦୁଇଶହ ପର୍ଯ୍ୟନ୍ତ ଛାତ୍ରଛାତ୍ରୀ ମୋତେ ବିଦାୟ ଦେବା ପାଇଁ ନୀରବରେ ଅନୁଗମନ କରୁଛନ୍ତି । ସମସ୍ତଙ୍କ ପ୍ରାଣରେ ଗଭୀର ନୀରବତା ଓ ମୁଖମଣ୍ଡଳରେ ବିଷାଦର କଳା ଛାଇ । ଏହି ସରଳ ନିଷ୍ପାପ ଫୁଲ ପରି କୋମଳ କଳିକାଗୁଡ଼ିକର ନିତ୍ୟ-ହର୍ଷ ଉଲ୍ଲସିତ ବଦନ – ମୋ ବିଦାୟ ହିଁ ଏହାର ଏକମାତ୍ର କାରଣ ଭାବି ମୁଁ ସ୍ତମ୍ଭୀଭୂତ ହୋଇ ଉଠୁଥାଏ ।

ଏତେଗୁଡ଼ିଏ ପିଲାଙ୍କୁ କେହି ଏପରି ଦୁଃଖ ପ୍ରକାଶ କରିବାକୁ ବାଧ୍ୟ କରି ନଥିଲା । ତେବେ ଏହା ଅତୀତରେ ମୁଁ ସେମାନଙ୍କ ସହିତ ଅତିବାହିତ କରିଥିବା ସୁଖମୟ ହସଖୁସିଭରା ମୁହୂର୍ତ୍ତଗୁଡ଼ିକର ଅନୁସ୍ମରଣରେ ସେମାନଙ୍କ ହୃଦୟରୁ ବିଷାଦର ସ୍ରୋତ ସ୍ୱତଃ ପ୍ରକଟିତ ହେଉଛି । କୁନି କୁନି ପିଲାମାନଙ୍କର ଏପରି ଅନୁଭବକୁ ମୁଁ ପ୍ରଥମ କରି ଉପଲବ୍ଧି କରିଥିଲି ।

ସ୍କୁଲଠାରୁ ବଜାର ଦେଇ ଦୋଳବେଦୀ ଛକଯାଏ ଯିବାହିଁ ଶିକ୍ଷକମାନେ ଆଗରୁ ସ୍ଥିର କରିଥାନ୍ତି । ସେଠାରେ ଆମେ ସମସ୍ତେ ପହଞ୍ଚିଗଲୁ । ତାହାହିଁ ଥିଲା ମୋ ପ୍ରିୟ ଛାତ୍ରଛାତ୍ରୀ ଓ ଶିକ୍ଷକମାନଙ୍କ ମଧ୍ୟରେ ଏକ ଲକ୍ଷ୍ମଣ ରେଖା । ହଠାତ୍ ସମସ୍ତେ ଛିଡ଼ା ହୋଇଗଲେ । ସବୁରି ପ୍ରାଣ ବେଦନା-ବିଧୁର । କେହି କାହା ଆଡ଼କୁ ମଥା ଟେକି ଅନାଉନାହାନ୍ତି । ଛୋଟ ଛୋଟ ପିଲାମାନଙ୍କ ଏଡ଼େ ଦରଦୀ ଓ ସମ୍ବେଦନଶୀଳ ହୋଇ ଉଠନ୍ତି, ଏ କଥା ମୁଁ ପ୍ରଥମଥର ପାଇଁ ଅନୁଭବ କରିଥିଲି । ସେମାନଙ୍କର ଅନାବିଳ ଶ୍ରଦ୍ଧା ମୋତେ ଆମୋଦିତ କରି ପକାଉଥିଲା, ଏହିପରି ଭାବୁଥିବା ବେଳେ ମୋର ଅମାନିଆ ଆଖି ଦୁଇଟି କୌଣସି ବାଧା ମାନୁଥିଲେ ।

ଆଉ ଅଧିକ ବିଳମ୍ବ ସହ୍ୟ କରିହେବନାହିଁ ଜାଣି ମୁଁ ପିଲାମାନଙ୍କ ମଝିକୁ ଚାଲି ଆସିଲି । କାହାକୁ କୋଳାଗ୍ରତ, କାହାର ମୁଣ୍ଡ ସାଉଁଳିବା, କାହା ପିଠି ଆଉଁଶିବା, ଉପଦେଶରେ ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା ନୀରବରେ ପ୍ରକାଶ କରିଥିଲି । ମୋର ସ୍ପର୍ଶ ସେମାନଙ୍କୁ ଅଧିକ ବ୍ୟଥାତୁର କରିବାରେ ଲାଗିଲ । ଆଉ ଅଧିକ ଅପେକ୍ଷା କରିବା ସମ୍ଭବପର ନୁହେଁ ଭାବି ମୋର ବନ୍ଧୁ ସହକର୍ମୀମାନଙ୍କୁ ପ୍ରଣାମ ଜଣାଇ ସାଇକେଲଟି ଉପରକୁ ଉଠିଗଲି । ଗାଁରୁ ଆସିଥିବା ଦୁଇଜଣ ସାଙ୍ଗ ମୋ ସହିତ ମଧ୍ୟ ସେମାନଙ୍କ ସାଇକେଲକୁ ଗତିଶୀଳ କରି ଦେଇଥିଲେ । ପଛରେ ପଡ଼ିରହିଲା ନିମାପଡ଼ାରେ ମୋର ସୁଦୀର୍ଘ ଚତୁର୍ଦ୍ଦଶ ବର୍ଷର ସୁଖ-ଦୁଃଖ ଭରା ଅନେକ ଅଭୁଲା ସ୍ମୃତି ଓ ମୋର ଅତି ଆପଣାର, ଛାତ୍ରଛାତ୍ରୀମାନଙ୍କର ସ୍ନେହ, ଶ୍ରଦ୍ଧା ଓ ଭକ୍ତିର ଆଲେଖ୍ୟ ।

## ନିଜ ଘରେ ଆତ୍ମସମୀକ୍ଷା

ମୋ ବଦଳି ସଂବାଦରେ ଆମ ପରିବାରର ସମସ୍ତେ ବେଶ୍ ସୁଖୀ ଥିଲେ ଓ ପହଞ୍ଚିବା ପରେ ମଧ୍ୟ ତାହା ହିଁ ଉପଲବ୍ଧି କଲି । ମାନସିକ ବ୍ୟଥାଜର୍ଜରିତ ହେଉଥିଲେ ମଧ୍ୟ ମୁଁ ସମସ୍ତଙ୍କ ମେଳରେ ବେଶ୍ ଆନନ୍ଦିତ ଥିବାର ଛଳନା କରିଥିଲି । ବାସ୍ତବରେ ମୋର ସେ ପ୍ରକାର ଅଭିନୟ କେବଳ ନିଛକ ଔପଚାରିକତା ଥିଲା ।

ଦୁଇଦିନ ଘରେ ରହିଥିବା ଭିତରେ ମୁଁ ମୋର ଆତ୍ମ-ସମୀକ୍ଷା କଲି । ଚାକିରୀର ପ୍ରଥମ ଦୁଇବର୍ଷ ମୁଁ କର୍ତ୍ତବ୍ୟରେ ଅବହେଳା କରି ଘୋର ଅପରାଧ କରିଛି । ସେଇ ପାପର ପ୍ରାୟଶ୍ଚିତ ପାଇଁ ଦୀର୍ଘ ଚଉଦ ବର୍ଷ ନିଜକୁ, ପରିବାରକୁ, ଏବଂ ଗ୍ରାମକୁ ପାସୋରି ଦେଇ ଅକ୍ଳାନ୍ତ ପରିଶ୍ରମ କରି ବହୁ ସୁନାମ, ଅଜସ୍ର ପ୍ରଶଂସା ଅର୍ଜନ କରିଛି । ତଥାପି କ'ଣ ମୋର ସେ ପାପ ମୋ ଠାରୁ ଦୂର ହୋଇନାହିଁ ? ତା ହେଲେ ଏହାର ପରିସମାପ୍ତି କ'ଣ ଆଉ ସମ୍ଭବ ନୁହେଁ ? ଏହିପରି ଭାବିଭାବି ମୁଁ ଥଇକୂଳ ପାଉନଥିଲି ।

ଆଜି ନିମାପଡ଼ାରୁ ଫେରିବାର ତୃତୀୟ ଦିବସ । ବାଲକାଟି ଯିବାର ଦିନ । ଗୋଡ଼ ଆଗକୁ ପଡୁନଥାଏ । ମନରେ ଅନେକ ନିରାଶା ଓ ହତୋତ୍ସାହ । ବାଲକାଟିରେ ଉ.ପ୍ରା. ବିଦ୍ୟାଳୟ ଥିଲା । ଉପଯୁକ୍ତ ଶିକ୍ଷକଙ୍କ ଅଦମ୍ୟ ତଥା ଅକ୍ଳାନ୍ତ ପରିଶ୍ରମ ଉ.ପ୍ରା.ଟିକୁ ହଠାତ୍ ନି.ପ୍ରା.ରେ ପରିଣତ କରି ପକାଇଥିବା କଥା ପ୍ରାୟ ସମସ୍ତେ ଜାଣନ୍ତି । ଗୋଟାଏ ଫୁଟା ଡଙ୍ଗାକୁ ନେଇ ମୋର ଅତୀତର ସମସ୍ତ ସୁନାମକୁ ସଲିଳ ସମାଧୀ ଦେବାର ବାରବେଳା ଉପସ୍ଥିତ ହୋଇ ଆସୁଛି ଜାଣି ମୁଁ ନିଜକୁ ନିତାନ୍ତ ଅସହାୟ ମନେକଲି ।

ବାଲକାଟିରେ ମୋତେ ବାରଟା ପୂର୍ବରୁ ଉପସ୍ଥିତ ହେବାକୁ ପଡ଼ିବ । ସାଇକେଲରେ ମାତ୍ର ଅଧ ଘଣ୍ଟାକର ବାଟ । ଖାଇ ସାରିଛି । ଏଥର ଅଗ୍ରସର ହେବା କଥା, ମାତ୍ର ପୁଞ୍ଜିଭୂତ ଅସହାୟତା ମୋତେ ଅଥୟ କରିବାରେ ଲାଗିଲା । ଖଟ ଉପରେ ଶୋଇ ପଡ଼ି କେବଳ ମା ମଙ୍ଗଳାଙ୍କୁ ଡାକୁଥାଏ । ବୃଥା ଭାବନାରେ ଆନନ୍ଦ ମିଳେ ନାହିଁ ଭାବି ଅଗ୍ରସର ହେଲି ।

## ବାଲକାଟି ନି.ପ୍ରା. ସ୍କୁଲରେ ଯୋଗଦାନ

ଆଗରୁ ଯାହାସବୁ ଶୁଣିଥିଲି, ତାହା ପର୍ଯ୍ୟାପ୍ତ ନଥିଲା । ଯେଉଁ ଆଶାରେ ମୀନାର ଗଢ଼ିବାକୁ ମନେ ମନେ ନିଜକୁ ପ୍ରସ୍ତୁତ କରୁଥିଲି, ତାହା ହଠାତ୍ ଭୂମିକମ୍ପରେ ଭୂପତିତ ହୋଇ ଧ୍ୱଂସ ଖାଇଗଲା । ସ୍କୁଲରେ ୨ ୟ ଶିକ୍ଷକ (ଉ.ପ୍ରା. ପାଶ୍) ଧର୍ମାନନ୍ଦ ଦାସ ଉପସ୍ଥିତ ଥିଲେ । ଚାର୍ଜ ନେବାରେ ଦେଖିଲି, ରେକର୍ଡ଼ କହିଲେ ପ୍ରସ୍ଥାନ ଖଣ୍ଡିଏ, ଖଣ୍ଡିଏ ଶିକ୍ଷକ ଉପସ୍ଥାନ ଓ ଅନ୍ୟଟି ପ୍ରବେଶିକା (Admission Register) ଥିଲା । ସେ ଦିନ ମାତ୍ର ୨୦-୨୨ଟି ଛାତ୍ର ଉପସ୍ଥିତ ଥିଲେ । ହାଜିରାରେ ମୋଟ ତିନିଶ୍ରେଣୀରେ ୩୯ ଜଣ ପିଲାଙ୍କ ନାମ ଅଛି । ଗୋଟିଏ ଲମ୍ବା ହଲ୍‌ରେ ସବୁଶ୍ରେଣୀ ପିଲା ଏକାଠି ବସି ପାଠ ପଢ଼ନ୍ତି । ହଲ୍‌ଟି ମି.ଇ.ସ୍କୁଲର ଥିଲା ।

ଜିଲାବୋର୍ଡ୍‌ରୁ ମିଳିଥିବା ୧୮୦୦ ଟଙ୍କାରେ ନିର୍ମିତ କୋଠା ଘର ବଖରାଟିରେ ମି.ଇ.ସ୍କୁଲ ୭ମ ଶ୍ରେଣୀ ଚାଲିଥାଏ । ପ୍ରାଇମେରୀ ହେଉଥିବା ହଲ୍‌କୁ ଲାଗିଥିବା କୋଠରୀରେ ମି.ଇ. ୬ଷ୍ଠ ଶ୍ରେଣୀ । ତା ପାଖକୁ ଜଣେ ଶିକ୍ଷକ ରହିବା ପାଇଁ ଛୋଟ ବଖରାଏ ଘର ଏବଂ ଶେଷରେ ମି.ଇ.ର ଅଫିସ ଗୃହ । ଧର୍ମାନନ୍ଦଙ୍କ ଠାରୁ ବୁଝିଲି, ମି.ଇ. ସ୍କୁଲ ମଧ୍ୟ ରୁଗ୍‌ଣ । ଏଥିରେ ଭାବିଲି ଏଠାରେ ସବୁ ନାହିଁ ନାହିଁରେ କିପରି ଅନୁଷ୍ଠାନ ଦୁଇଟି ଚାଲୁଛି ?

ମୁଁ ଆସିବା ଖବର ପାଇଁ ମୋର ମି.ଇ.ସ୍କୁଲର ପୂଜ୍ୟଗୁରୁ ଗୋପୀନାଥ ନାୟକ କ୍ଲାସ୍ ଛାଡ଼ି ମୋ ନିକଟକୁ ଧାଇଁ ଆସିଲେ । ମୁଁ ପ୍ରଣିପାତ ପୂର୍ବ ଦଣ୍ଡାୟମାନ ରହିବାରୁ ମୋତେ ଯୋର୍ କରି ବସାଇ ଦେଲେ ଓ କହିଲେ, – "ତୁମ ଆସିବା ସମ୍ବାଦରେ ଆମ ଶିକ୍ଷକମାନେ ବହୁତ ଆଶ୍ୱସ୍ତ । ନିମାପଡ଼ାରେ ତୁମେ ଯେଉଁ ପ୍ରଶଂସନୀୟ କାର୍ଯ୍ୟ କରିଛ, ତାକୁ ଆଖି ଆଗରେ ରଖି ସତ୍ୟପ୍ରିୟ ବାବୁ ତୁମକୁ ଏଠାକୁ ଟାଣି ଆଣିଛନ୍ତି । ତୁମେ ହିଁ ତାଙ୍କ ସମ୍ଭାବନାକୁ ସାକାର କରିବ ।'' ମୁଁ ମୋର ଏକାନ୍ତ ଅସହାୟତା ବର୍ଣ୍ଣନା କରିବା ପରେ ସେ ମୋର ଶିକ୍ଷକ ଭାବରେ ବହୁ ଉପଦେଶ ଦେଇ କହିଲେ:– "ଘରେ ନପଶୁ ଚାଳ ମୁଣ୍ଡରେ ବଜାଇ ମୁଣ୍ଡ ଖଣ୍ଡିଆକର ନାହିଁ । ଅନେକ କିଛି କରିପାରିବ, ଏପରି ଚିନ୍ତା କରି ଆଗେଇ ଚାଲ । ଆମେ ସମସ୍ତେ ତୁମକୁ ନିୟମିତ ସାହାଯ୍ୟ କରିବୁ । ମୁଁ ତୁମର ଗୁରୁ ଓ ତୁମେ ମୋର ସେଇ ପ୍ରିୟଛାତ୍ର । ମନେରଖ : – ସବୁ ପ୍ରଦୋଷର ପ୍ରଭାତ ଅଛି, ସବୁ ଅସହାୟତାର ଅବଲମ୍ବ ଅଛି ଓ ସବୁ ଅନ୍ୱେଷଣର ଅନ୍ତ ମଧ୍ୟ ଅଛି । ଚରୈବତି ଚରୈବତି । ଏହି ମନ୍ତ୍ରରେ ଦୀକ୍ଷିତ ହୁଅ ।''

ମାତ୍ର ଦୁଇତିନି ଘଣ୍ଟା ସେଠାରେ ବିତାଇ ଅତ୍ୟନ୍ତ ବିମର୍ଷ ଚିତ୍ତନେଇ ଘରକୁ ଆସିଲି । ତହିଁ ଆରଦିନ ଯଥା ସମୟରେ ପହଞ୍ଚିଲି । ଉପସ୍ଥାନ ଯଥାପୂର୍ବଂ । ଏହି ସମୟ ମି.ଇ. ସ୍କୁଲ ହେଡ୍‌ମାଷ୍ଟର କୁଂଜ ବିହାରୀ ମହାନ୍ତି, ସେକେଣ୍ଡ ମାଷ୍ଟର ବ୍ରଜ କିଶୋର ନାୟକ ଓ ମୋର ଗୁରୁ ଗୋପୀନାଥ ସାର୍ ମୋ ପାଖକୁ ଆସି ମୋତେ ଅଫିସ ଘରକୁ ଡାକି ନେଲେ । ସମସ୍ତଙ୍କ ତୁଣ୍ଡରେ ସେଇ ଗୋଟିଏ କଥା, – "ଏଇ ରୁଗ୍‌ଣ ନି.ପ୍ରାକୁ ତୁମେ ସୁସ୍ଥ ସବଳ କରିବାକୁ ପ୍ରସ୍ତୁତ ହୁଅ । ଆମେ ସମସ୍ତେ ତୁମ ପଛରେ ଅଛୁ । ଭାଙ୍ଗି ପଡ଼ିବାର ପ୍ରଶ୍ନ ନାହିଁ । ଭଲ ପ୍ରାଇମେରୀ ସ୍କୁଲ ଅଭାବ ହିଁ ଆମକୁ ପଙ୍ଗୁ କରି ସାରିଲାଣି । ପିଲା ପାଇବା କେଉଁଠୁ ? ଆମେ ସମସ୍ତେ କରଣ ଓ ଅତି ନିକଟ ସଂପର୍କୀୟ । ତେଣୁ ତୁମକୁ ସାହାଯ୍ୟ କରି ପରୋକ୍ଷରେ ଆମେ ଉପକୃତ ହେବୁ ।''

ଆଲୋଚନାରୁ ଜାଣିଲି ବାଲକାଟି ଏକ ପ୍ରସିଦ୍ଧ ଗ୍ରାମ ହେଲେ ମଧ୍ୟ ଏହା ରେଭିନ୍ୟୁ ଭିଲେଜ୍ ନୁହେଁ । ନକ୍ସାରେ ବାଲକାଟି ନାମରେ ଗୋଟିଏ ବିନ୍ଦୁ ମଧ୍ୟ ନାହିଁ। କେଉଁ ବିଶେଷ କାରଣରୁ ପ୍ରତାପରୁଦ୍ରଙ୍କ ଦ୍ୱାରା ସ୍ଥାପିତ ପ୍ରତାପଶାସନର ନାମ ବାଲକାଟି ଗର୍ଭରେ ଲୀନ ହୋଇ ଯାଇଛି ? ବାଲକାଟି ଓଡ଼ିଶାରେ ଏକ ଜନ-ବହୁଳ ଗ୍ରାମରୂପେ ସୁପରିଚିତ । ଏହି ଗ୍ରାମର ୧୦-୧୫ଟି ସାହି ଅଛି ଓ କେବଳ ବାଲକାଟି (ପ୍ରତାପଶାସନ)ର ଜନସଂଖ୍ୟା ଗୋଟିଏ ଗ୍ରାମ ପଞ୍ଚାୟତ ଗଠନ ପାଇଁ ପର୍ଯ୍ୟାପ୍ତ। ଉଦ୍ୟମ କଲେ ଏହି ଗ୍ରାମରେ ୪/୫ଟି ନି.ପ୍ରା. ଓ ଗୋଟିଏ ଉ.ପ୍ରା. ପାଇଁ ପିଲା ଯଥେଷ୍ଟ ମିଳିବେ । ମାତ୍ର ଅଧିବାସୀମାନେ ଅତ୍ୟନ୍ତ ଅଶିକ୍ଷିତ । ପ୍ରତ୍ୟେକେ କିଛି ନା କିଛି ବ୍ୟବସାୟ କରିବାରେ ବ୍ୟସ୍ତ । କଂସା ବାସନ ପ୍ରସ୍ତୁତି ଏହି ଗ୍ରାମର ମୁଖ୍ୟ କୁଟୀର ଶିଳ୍ପ । ତେଲୀ, ଥୋଡ଼ିଆ, କଂସାରୀ, ଶଙ୍ଖାରୀ, ରଙ୍ଗିଣୀ ଓ ଥଟାରୀ ବ୍ୟବସାୟୀମାନେ ହାଟୁଆ ରୂପେ ପରିଚିତ ।

୫/୭ ଦିନପରେ ଗ୍ରାମର ପ୍ରତ୍ୟେକ ସାହିର ନାମ ଟିପି ରଖିଲି । ମି.ଇ. ଓ ନି.ପ୍ରାର ଶିକ୍ଷକ ସମସ୍ତେ ସ୍ଥାନୀୟ । ତଥାପି ମଧ୍ୟ ଉଭୟ ଅନୁଷ୍ଠାନ ଅବକ୍ଷୟ-ମୁଖୀ କାହିଁକି ? ଏହାର ଉତ୍ତରରେ ଏତିକି ଜାଣିଲି, ଏ ଗ୍ରାମର ମକଦ୍ଦମ ସାହିଟି ବେଶ୍ ଶିକ୍ଷିତ । ଏଠାର କରଣଙ୍କ ମଧ୍ୟରୁ ଅଧିକାଂଶ ଡାକ୍ତର, ଓକିଲ, ଗଡ଼ଜାତର ଦେଓ୍ୱାନ ଆଦି ଅତି ସମ୍ମାନିତ ପଦ ପଦବୀରେ ଅଧିଷ୍ଠିତ । ନିଜର ଜମିଦାରୀ ମକଦ୍ଦମୀ ଥିବାରୁ ଓ ଅନ୍ତରଙ୍ଗ, ମରିଚପୁର ହରିସପୁର ଆଦି ଦୂରବର୍ତ୍ତୀ ସ୍ଥାନ ସହ ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରେ ଗଣ୍ଡା ଗଣ୍ଡା ଖମାର ଏଇ ମକଦ୍ଦମ ମାନଙ୍କର ଅଛି ଓ ଥୋକେ ଏଇ ବିପୁଳ ପରିମାଣର ଚାଷଜମି ଓ ଜମିଦାରୀର ଖଜଣା, ଟିକସ ଆଦି ଆଦାୟ କରି ଖମାର ଅଞ୍ଚଳର ପ୍ରଜାମାନଙ୍କର ପ୍ରଭୁହିସାବରେ ସମ୍ମାନ ଓ କ୍ଷମତାର ସହିତ ସୁଖମୟ ଜୀବନ ଯାପନ କରୁଥାନ୍ତି। ମାତ୍ର ଏଇ ମକଦ୍ଦମସାହିଟିକୁ ଛାଡ଼ିଦେଲେ ଅନ୍ୟ କୌଣସି ସାହିରେ ଜଣେ ମି.ଇ. ପାଶ୍ କରିଥିବା ଶିକ୍ଷିତ ବ୍ୟକ୍ତି ମୁଁ ଖୋଜି ପାଇନଥିଲି । କିନ୍ତୁ ପରିସଂଖ୍ୟାନରୁ ଅବଗତ ହେଲି, ଏ ଅଞ୍ଚଳରେ ମା ଲକ୍ଷ୍ମୀଦେବୀ ଏପରି ପ୍ରତିପତ୍ତିଶାଳିନୀ ଥିଲେ ଯେ ଦେବୀ ସରସ୍ୱତୀ ଘର ଭିତରତ ଦୂର, ଦ୍ୱାର ମୁହଁ ପର୍ଯ୍ୟନ୍ତ ଯିବାକୁ ସାହସ କରୁନଥିଲେ ।

ମୁଁ ଧୈର୍ଯ୍ୟର ସହିତ ଅଧ୍ୟାପନା କରିବାରେ ମନ ଦେଲି । ପ୍ରତିଦିନ ୪ଟା ପରେ ଧର୍ମାନନ୍ଦ ଓ ଗୋପୀନାଥ ସାର୍‌ଙ୍କୁ ସାଥୀକରି ମୁଁ ଗୋଟିଏ ଦୁଇଟି ସାହି କେବଳ ଗ୍ରାମବାସୀଙ୍କ ସହିତ ପରିଚିତ ହେବା ପାଇଁ ଯାଉଥିଲି । ରଥିଜମାକୁ ଛାଡ଼ି ଅନ୍ୟ ସମସ୍ତ ସାହି ସଂପର୍କରେ ମୋର ମୋଟାମୋଟି ଧାରଣା ହେଲା । କେଉଁ ସାହିରେ

ପଢ଼ିବା ବୟସର କେତେପିଲା ଅଛନ୍ତି, ତା'ର ଏକ ସ୍ଥୂଳ ହିସାବ କରି ଆଣୁଥାଏ । ସାଥିରେ ଦୁଇଜଣ ଶିକ୍ଷକ ଯାଇଥାନ୍ତି ଓ ସେମାନେ ପ୍ରତି ସାହିରେ ସୁପରିଚିତ ଥିଲେ । ତେଣୁ ମୋତେ ଚିହ୍ନାଇବାରେ କିଛି ଅସୁବିଧା ହୋଇ ନଥିଲା ।

ମୁଁ ସ୍କୁଲରେ ଯୋଗ ଦେବାର ୮-୧୦ ଦିନ ପରେ ରଥିଜମା ଗ୍ରାମର ୨/୩ ଜଣ ଗ୍ରାମବାସୀ ଆମ ସ୍କୁଲକୁ ଆସି ବଗୁଲି ପଣ୍ଡିତଙ୍କୁ ଖୋଜିଲେ । ମୁଁ ସବୁକଥା ବୁଝାଇ ଦେଲି । ପଣ୍ଡିତଙ୍କ ବଦଳୀ କଥା ଶୁଣି ଜଣେ ଖୁବ୍ ଦୁଃଖିତ ହୋଇ କହିଲେ, "– ମାଷ୍ଟର ବାବୁ, ଆମେ ଅସୁବିଧାରେ ପଡ଼ିଗଲୁ । କଅଣ କରିବୁ ? ଏଠିକି ଆସି ଆମେ ଆମର ସବୁ କାମ କରାଇ ନେଉଥିଲୁ । ଭାରି ସୁବିଧା ହେଉଥିଲା ।'' ପଚାରି ବୁଝିଲି ଚିଠି ଲେଖା, ଏମ୍.ଓ. ଫର୍ମ ପୂରଣ, ରେଜିଷ୍ଟ୍ରି ଚିଠି, ଏମ୍.ଓ. ଫର୍ମରେ ସାକ୍ଷୀ ପଡ଼ିବା, ଓ ବିଭିନ୍ନ ଦରଖାସ୍ତ ଲେଖାଇବା କାମ ଜଗୁଲି ପଣ୍ଡିତେ ( ପୂର୍ବତନ ହେଡ୍‌ପଣ୍ଡିତ) କରୁଥିଲେ । ମୁଁ ରଥିଜମା ଲୋକମାନଙ୍କ ସହିତ ପରିଚିତ ହେବାକୁ ଇଚ୍ଛା କରିଥିଲେ ମଧ୍ୟ ଯାଇ ପାରି ନଥିଲି । ଏଇ ଚିଠିଲେଖା ଆଦି ମାଧ୍ୟମରେ କିଛି ଲୋକଙ୍କ ସହିତ ସମ୍ପର୍କଶୀଳ ଉଦ୍ଦେଶ୍ୟରେ କହିଲି, "– ମୁଁ ସେସବୁ କାମ କରିଦେବି । ଆପଣମାନେ ଯେପରି ଆସୁଥିଲେ, ସେପରି ଆସନ୍ତୁ । କିଛି ଅସୁବିଧା ହେବନାହିଁ ।'' ଆସିଥିବା ଦୁଇବ୍ୟକ୍ତି ପଚାରିଲେ, " ଆପଣ ସେ ପାଠ ସବୁ ଜାଣନ୍ତି ?'' ହସକୁ ଚାପିରଖି କହିଲି, "– ମୁଁ ଉତ୍ତମରୂପେ ଜାଣେ ।'' ଜଣେ କହିଲେ, " – କାଲି ମୁଁ ଆସିବି । ଖଣ୍ଡିଏ କାର୍ଡ଼ରେ ଦି ଚାରିପଦ ଲେଖି ଦେବେ ।'' ମୁଁ ସମ୍ମତି ଦେଲି ଓ ସେ ଦୁହେଁ ଚାଲି ଯାଇଥିଲେ ।

ରଥିଜମା ଲୋକମାନଙ୍କର ସମୟଜ୍ଞାନ ନଥାଏ । କାମ ସରିଲେ ଚିଠିପତ୍ର କଥା ମନେ ପଡ଼େ । ମୋର ଅନ୍ତର୍ନିହିତ ଏକ ବାସନା ପୂରଣ ପାଇଁ ମୁଁ ସେମାନଙ୍କୁ ସମୟ ସଚେତନ କରାଇବାକୁ ପ୍ରଥମେ ଇଚ୍ଛା କରୁନଥିଲି । ଆଜି ୩ କିମ୍ବା ୪ ଜଣ ଆସିଥିଲେ । ଚିଠି ସବୁ ଲେଖି ଦେଇଦେବା ପରେ ଜଣ ଜଣ କରି ଚାରି ପଇସା, ଲଫାଫା ଦିଅଣା – ଏଇ ହିସାବରେ ପଇସା ଥୋଇ ଦେବାରୁ ମୁଁ ଆଶ୍ଚର୍ଯ୍ୟ ହେଲି । ମୋର ବିସ୍ମୟକୁ ଦୂର କରି ଜଣେ କହିଲେ, "– ଏଇ ଦରରେ ଆମେ ଆଗରୁ ମାଷ୍ଟ୍ରଙ୍କୁ ଦେଇ ଆସୁଥିଲୁ । ମନିଅଡ଼ର ଫର୍ମ ପୂରଣ ଦଶ ପଇସା, ମନି ଅର୍ଡ଼ରରେ ସାକ୍ଷୀ ପଡ଼ିବା ଅଣାଏ ଓ ଦରଖାସ୍ତ ଲେଖା ଆଠଣାରୁ ଟଙ୍କାଏ ପଡ଼ିଥାଏ । ପଇସା ଫେରାଇ ଦେଇ କହିଲି, "– ଠିକଣା ବା ଚିଠିଟିଏ ଲେଖି ପଇସା ନେବାକୁ ମୁଁ ଜମା ପସନ୍ଦ କରି ପାରୁନାହିଁ । ତୁମେମାନେ କେହି କିଛି ପାଠ ପଢ଼ିଛ କି ?'' ଉତ୍ତର ନକାରାତ୍ମକ ଜାଣି ମଧ୍ୟ ମୁଁ ଏହା ପଚାରିଥିଲି । ପିଲାମାନଙ୍କୁ ପାଠ

ପଢ଼ାଉଛକି ? ଏହାର ଉତ୍ତର ମଧ୍ୟ ସଂପୂର୍ଣ୍ଣ ସକାରାତ୍ମକ ନଥିଲା । ଉତ୍ତର ମିଳିଲା:- "ହାଟୁଆ ଛୁଆ କି ପାଠ ପଢ଼ିବେ ବାବୁ । ସେକଥା ମାହାନ୍ତି, ବାମ୍ଭଣ ପିଲାଙ୍କୁ ପାଏ । ଖାଲି ଟିକିଏ ହିସାବ ଜାଣିଗଲେ ଦସିଆ ଧରି ଚାଲିବେ ବେପାରକୁ । ପିଲାଦିନରୁ ତାଙ୍କୁ ସବୁ ବେପାର କରିବାର କାଇଦା ଶିଖିବାକୁ ପଡ଼ିଥାଏ । ଥୋକେ କଂସା ପିତଳ ବାସନ ଗଢ଼ାଶାଳରେ ତ ଆଉ ଥୋକେ ଯିବେ ଦଣ୍ଡିବଟକରା ଧରି । ହାଟରୁ କିଣି ହାଟରେ ବିକି ଭଲ ଦି ପଇସା ରୋଜଗାର କରନ୍ତି । ପ୍ରତିଦିନ କଞ୍ଚା ପଇସା ମୁହଁରେ ଲାଗିବାରୁ ପାଠକୁ କେହି ପଚାରନ୍ତି ନାହିଁ । ବାପମାନେ ତାଙ୍କ ପୁଅମାନଙ୍କୁ ବେପାରର କାଇଦା ଶିଖାଇଥାନ୍ତି ।'' ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଏ ଅଞ୍ଚଳ ଲୋକଙ୍କର ହାବଭାବ ଓ ଅଦ୍‌ଭୁତ ଖିଆଲ ଦେଖି । ବେପାରର କାଇଦା କଥାଟା ମୋତେ ଅବୁଝା ଲାଗିଲା । ପଚାରିଲି ମାତ୍ର କେହି କିଛି କହିଲେ ନାହିଁ । କେବଳ କହିଲେ, "ବେଳ ହୋଇଗଲାଣି, ଆଉଦିନେ ଆସି କହିବୁ ।''

ପ୍ରାୟ ୫/୬ ଦିନ ଏପରି ବେଳ ଅବେଳରେ ତାଙ୍କ କାମ ପାଇଁ ଆସନ୍ତି । ମୁଁ ସେମାନଙ୍କୁ କୌଣସି ବିରକ୍ତି ଭାବ ବା ରୁକ୍ଷ ବ୍ୟବହାର ନକରି ହସି ହସି ସେମାନଙ୍କର କାମ କରିଦିଏ ।

କ୍ରମେ ଅବସ୍ଥା ସୀମା ଅତିକ୍ରମ କଲା । ଧୀରେ ଧୀରେ ଅନେକ ଲୋକ ଆସିବାକୁ ଲାଗିଲେ । ମୁଁ ସେମାନଙ୍କ ସହିତ ମଧୁର ଆଳାପ କରି କହିଲି, "- ଆପଣମାନେ କିଛି ମନେକରିବେ ନାହିଁ । ସକାଳୁ ଦିନ ୯ଟା ଯାଏ ମୁଁ ଆପଣମାନଙ୍କ କାମ କରିବି । ସ୍କୁଲ ସମୟରେ ଏ ସବୁ କଲେ ପିଲାମାନଙ୍କର ପଢ଼ାରେ ଖିଲାପ ହେଉଛି ।'' ସେମାନେ ସେଦିନର କାମ କରିନେଇ ଯାଇଥିଲେ । ଏହାପରେ ସେମାନଙ୍କର ଆସିବା ସମୟ ବଦଳାଇ ଦେଲେ ।

କିଛିଦିନ ପରେ ମୋର ଅନେକ ଲୋକଙ୍କ ସହିତ ପରିଚୟ ଓ ସଂପର୍କ ସ୍ଥାପିତ ହୋଇଗଲା । ବିନା ପଇସାରେ କାମଟି ହୋଇ ଯାଉଥିବାରୁ ସେମାନେ ବେଶ୍ ଖୁସି ହେବା ସହିତ ମୋତେ ଓଲା ମାଷ୍ଟର ବୋଲି ଗାଆଁରେ କହିଥିବା କଥା ମୁଁ ବହୁଦିନ ପରେ ଶୁଣିଲି । ସେଥିପାଇଁ ମୁଁ ବ୍ୟସ୍ତ ବା ବିବ୍ରତ ନହୋଇ ରଥିଜମାର ଚାହାଳୀ ସଂଖ୍ୟା, ପିଲା ସଂଖ୍ୟା, ଚାହାଳୀକୁ ନଯାଇ ବାହାରେ ବୁଲୁଥିବା ପିଲାଙ୍କର ଏକ ସ୍ଥୁଳ ହିସାବ ସଂଗ୍ରହ କରିପାରିଥିଲି ।

ଦ୍ୱିତୀୟ ଶିକ୍ଷକ ଧର୍ମାନନ୍ଦ ମୋ ଠାରୁ ବୟସରେ ବହୁତ ବଡ଼ ହେଲେ ମଧ୍ୟ ମୋତେ କାଶୀଭାଇ ବୋଲି ଡକନ୍ତି । ମୁଁ ପ୍ରଧାନ ଶିକ୍ଷକ ରୂପେ ତାଙ୍କଠାରୁ ଏପରି

ସମ୍ମାନ ପାଇଥାଏ । ସେ ଖୁବ୍ ପରିଶ୍ରମୀ ଓ ସରଳ ବ୍ୟକ୍ତି ଥିଲେ ।

ଦିନେ ଧର୍ମାନନ୍ଦଙ୍କୁ ପଚାରିଲି; – ରଥିଜମାର ଏ ଲୋକମାନେ ପ୍ରାୟତଃ ଅଶିକ୍ଷିତ, ଏପରିକି ଅକ୍ଷର ପରିଚୟର ଜ୍ଞାନ ନାହିଁ । ପଚାରିବାରେ କହିଲେ, "– ବେପାର ଭଲ – ଦୁନିଆ ଭଲ । ପାଠପଢ଼ି ହାଟୁଆ ଛୁଆ ହାକିମ ହେବା ସପନର କଥା । ଏହିପରି ଏକ ବଦ୍ଧମୂଳ ଧାରଣା ସେମାନଙ୍କର ପୁରୁଷାନୁକ୍ରମେ ଗଢ଼ି ଉଠିଛି । ଆପଣ ମୂଳରୁ ଏକ ଭୂଲ୍ କରି ବସିଲେ । ମାଗଣାରେ ତାଙ୍କ କାମ କରିଦେବାରେ ସେମାନେ ଖୁବ୍ ଖୁସି ଓ ଆପଣଙ୍କୁ ଓଲା ମାଷ୍ଟ୍ର ବୋଲି କହିଲେଣି । ଆପଣ ଦର ବଢ଼ାଇ ଦେଇଥିଲେ ମଧ୍ୟ ସେମାନେ ଦେବାକୁ ଆଦୌ ଦ୍ୱିଧା କରି ନଥାନ୍ତେ ।

କଥାରେ ଅଛି : – କଂସାରୀ ଜାତି, ମାଗଣା ମିଳିଲେ କିଣନ୍ତି ହାତୀ ।
ଶୁଝିଲେ ଶୁଝିବ ପୁଅର ନାତି ।''

ତେଣୁ ସେମାନେ ଭଲ ସୁଯୋଗଟିଏ ପାଇ ହାତଛଡ଼ା କରିବେ କାହିଁକି ? ଆଉ ଗୋଟିଏ କଥା ଶୁଣନ୍ତୁ - ଆପଣ ଦି ଦି ଥର ତାଙ୍କୁ ବେପାରୀ କାଇଦା କଅଣ ବୋଲି ପଚାରିବା ମୁଁ ଶୁଣିଛି । ମାତ୍ର ସେମାନେ ବାହାନା କରି କଥାଟିକୁ ଏଡ଼ାଇ ଦେଇଛନ୍ତି । ଏ ସଂପର୍କରେ ମଧ୍ୟ ଏକ ଢଗ ଅଛି । ଯାହାକୁ ଏମାନେ ସଗର୍ବ ଉଚ୍ଚାରଣ କରନ୍ତି । ଢଗଟି ହେଲା -

"କିଣିବ ଦଶ, ବିକିବ ଦଶ
ଲାଭ ଗଲୁଥିବ ଫଅସ୍ ଫସ୍ ।''

ଏହା ଯେକୌଣସି ସାଧାରଣ ଲୋକଙ୍କୁ ଆଶ୍ଚର୍ଯ୍ୟ ଲାଗିବ । ଦଶରେ କିଣି ଦଶରେ ବିକିଲେ ଲାଭ କିପରି ହେବ ପଚାରିବାରେ ସେ କହିଲେ, "– ଏହା ସେମାନଙ୍କର ନିତିଦିନିଆଁ ଅଭ୍ୟାସ । ଏହା ଓଜନରେ ଏକ ଯାଦୁ ବା କୌଶଳ । ଖାଣ୍ଟି ଓଡ଼ିଆରେ କହିଲେ ତୁରନ୍ତ ଠକାମି ବ୍ୟତୀତ ଆଉକିଛି ନୁହେଁ । ଜିନିଷ ଚାଷୀଠାରୁ କିଣିଲେ ଓଜନ ଦଣ୍ଡକୁ ହାତମୁଠାରେ ଅତ୍ୟନ୍ତ କୌଶଳରେ ଚାପି ଦିଆଯାଏ , କିମ୍ବା ପଲାର ତଳପଟେ ବାମ ଗୋଡ଼ର ବୁଢ଼ା ଆଙ୍ଗୁଠିକୁ ଅତ୍ୟନ୍ତ ସତର୍କତାର ସହିତ ଏପରି ଠେଲି ଦେଇ ରଖି ଦିଆଯାଏ, ଯେପରିକି ପଲା ତଳକୁ ଆସି ସମାନ ହୁଏ ନାହିଁ । ଫଳରେ ସେରକ ଜାଗାରେ ପାଞ୍ଚପା ଜିନିଷ ନିଆଯାଇ ସେରକର ହିସାବ କରାଯାଏ । ବିକିଲା ବେଳେ ପୁରୁଣା ବଟକରା ବ୍ୟବହାର କରିବା ସହିତ ଉପରୋକ୍ତ କିଣିବା ବେଳର କୌଶଳ ପ୍ରୟୋଗ କରି ସେରକର ଜିନିଷକୁ କମ୍ କରି ସେରକର ପଇସା

ନିଆଯାଏ । ଏହାହିଁ ବ୍ୟବସାୟିକ କାଇଦା । ୧୦-୧୨ ବର୍ଷ ବୟସରୁ ପିଲାମାନଙ୍କୁ ଏ ଅସାଧୁ ଆଚରଣରେ ତାଲିମ ଦିଆଯାଇଥାଏ ।''

ବଡ଼ ଆଶ୍ଚର୍ଯ୍ୟ ଲାଗିଲା, – ଏ ଅଞ୍ଚଳର ଚାଲିଚଳଣ ଓ ହାବଭାବ ବିଷୟରେ ଅବଗତ ହୋଇ ।

ଭାବିଲି, ସବୁକିଛିକୁ ଆପଣାର କରି ଆଗେଇବାକୁ ହେବ । ରଥିଜମାର ଲୋକ ପୂର୍ବପରି ଆସୁଥାନ୍ତି । ବେଳେ ବେଳେ ଅସମୟରେ ଆସୁଥିଲେ ମଧ୍ୟ ମୁଁ ସେମାନଙ୍କୁ ଫେରାଇ ନଦେଇ ଅପେକ୍ଷା କରିବାକୁ କହିଥାଏ । ଏତେବେଳକୁ ପାଖ ସାହି ମାନଙ୍କରୁ କେତୋଟି ପୁଅ ଝିଅ ସ୍କୁଲକୁ ଆଣିବାରେ ମୁଁ କୃତକାର୍ଯ୍ୟ ହୋଇଥିଲି । କାହାରି ନାମ ଲେଖା ହୋଇନଥାଏ, ମାତ୍ର ସମସ୍ତେ ନିୟମିତ ପାଠ ପଢୁଥାନ୍ତି । ଛାତ୍ର ସଂଖ୍ୟା ବଢ଼ିଯିବାରୁ ମୋର ମନରେ କିଛି ପରିମାଣରେ ସନ୍ତୋଷ ବୃଦ୍ଧି ପାଇଥିଲା । ଶ୍ରେଣୀ ଗୃହ ପୂରି ଉଠିଥିବାରୁ ଶିକ୍ଷାଦାନରେ ଆଗ୍ରହ ଆପେ ଆପେ ସୃଷ୍ଟି ହୋଇ ଯାଇଥିଲା ।

୩-୪ ମାସ ପରେ ୩ୟ ଶ୍ରେଣୀରେ ୨ଟି ପିଲାଙ୍କ ଉପରେ ମୋର ଆଗ୍ରହ ବୃଦ୍ଧି ପାଇଲା ଓ ସେ ଦୁହିଁଙ୍କୁ ମୁଁ ସ୍ୱତନ୍ତ୍ର ଭାବରେ ଦେଖିଲି । ପ୍ରାୟ ତୃତୀୟର ପରୀକ୍ଷା ପୂର୍ବରୁ (ଡିସେମ୍ବର-ଜାନୁଆରୀ ମାସ) ମୁଁ ତାଙ୍କୁ ବାରମ୍ବାର ବିଭିନ୍ନ ପରୀକ୍ଷା କରି - ସୋମନାଥ ମହାନ୍ତି, ପି. ଉଦ୍ରନାଥ ମହାନ୍ତି, ଘର: ବାସୁଦେବ ସାହିକୁ ବୃତ୍ତିପାଇଁ ନିର୍ବାଚିତ କଲି । ଦୃଢ଼ ବିଶ୍ୱାସ ହେଲ. ଏ ପିଲା ବୃତ୍ତି ପରୀକ୍ଷା ପାଇଁ ଉପଯୁକ୍ତ ହେବ । ବହୁତ ସମୟ ଥାଏ ନିର୍ବାଚନ ପରୀକ୍ଷା । ମୋର ଉଦ୍ୟମ ମଧ୍ୟ ଅବ୍ୟାହତ ଥାଏ । ପିଲାଟିକୁ ସକାଳୁ ସ୍କୁଲକୁ ଆଣି ସ୍ୱତନ୍ତ୍ର ଧ୍ୟାନ ଦେବାର ବ୍ୟବସ୍ଥା କଲି । ବର୍ତ୍ତମାନ ମୁଁ ମକଦ୍ଦମ ସାହି ମୋ ଭଉଣୀ ଘରେ ଅସ୍ଥାୟୀ ଭାବରେ ରହିଥିବାରୁ ସକାଳୁ ଆସି ସ୍କୁଲ ଗୃହରେ ସୋମନାଥଙ୍କୁ ଯଥାରୀତି ସାହାଯ୍ୟ କରିଥାଏ । ୯.୩୦ ରେ ପୁଣି ମକଦ୍ଦମ ସାହି ଖାଇବାକୁ ଯାଇ ସ୍କୁଲ ସମୟ ପୂର୍ବରୁ ଚାଲିଆସେ । ମୁଁ ନିୟମିତ ସ୍କୁଲକୁ ଆସୁଥିବା ଜାଣି ରଥିଜମାର କିଛିଲୋକ ସକାଳୁ ଆସିଲେ । ରଥିଜମାରୁ ବହୁ ସଂଖ୍ୟକ ଛାତ୍ରଛାତ୍ରୀଙ୍କୁ ସ୍କୁଲକୁ ଆଣିବା ଲକ୍ଷ୍ୟରେ ସେମାନଙ୍କ କାମ କରି ଦେଉଥାଏ ।

ମୋର ପ୍ରଥମ କାମ ହେଲା – ଛାତ୍ରଛାତ୍ରୀ ସଂଖ୍ୟାବୃଦ୍ଧି । ମୁଁ ସବୁବେଳେ ସେଇ ଦିଗରେ ଲକ୍ଷ୍ୟରଖି ଆଗେଇ ଥାଏ । ମୋ ଭଉଣୀ ଘର ସ୍କୁଲଠାରୁ କିଲୋମିଟର ଦୂର ହେବ । ଭଉଣୀର ଛୋଟ ପୁଅଟି ଖୁବ୍ ଭଲ ପଢୁଥାଏ । ତାକୁ

ଆଣି ପାଖରେ ରଖି ପଢ଼ାଇଲେ ସେ ନିଶ୍ଚୟ ବୃତ୍ତି ପାଇବ ଏ ବିଷୟରେ ମୁଁ ନିଃସନ୍ଦେହ ଥାଏ । ସେ ନିଶ୍ଚୟ ବୃତ୍ତି ପାଇବ ଏ ବିଷୟରେ ମୁଁ ନିଃସନ୍ଦେହ ଥାଏ । ବୟସ ମାତ୍ର ସାତବର୍ଷ । ନାନୀ ପାଖରୁ ଛାଡ଼ିବାକୁ ରାଜି ହେବ ନାହିଁ, କଅଣ କରିବି ? ବଡ଼ ଭଣଜାକୁ କହିଲି । ସେ କହିଲା, " – ଜଟି (ବିଜୟ) ପାଖରେ ରହି ପଢ଼ିବ ।'' ତହିଁ ଆରଦିନ ଗୋଟାଏ ଖଟ, ମଶାରୀ, ଶେଯ, ତକିଆ ଆଦି ସବୁ ପହଞ୍ଚିଗଲା । ବିଜୟକୁ ମୁଁ ଆଣିବା ବେଳେ ନାନୀ କାନ୍ଦିଥିଲା । ମାତ୍ର ବଡ଼ ଭଣଜା ନାନୀକୁ ବୁଝାଇଦେଲା ।

ସୋମନାଥ ମହାନ୍ତି ପରେ ବିଜୟାନନ୍ଦ ମହାନ୍ତି (ମୋ ଭଣଜା) ବୃତ୍ତି ପାଇଲା । ନାନୀ ଭାରି ଖୁସି ହୋଇ ମୋତେ ଗୋଟାଏ ସୁନାମୁଦି ପିନ୍ଧେଇ ଦେଇଥିଲା । ମୁଁ ସେଇଟି ଏ ପର୍ଯ୍ୟନ୍ତ ସାଇତି ରଖିଛି, ଯହିଁରେ ହିନ୍ଦୀରେ ମୋ ନାଁ ମଧ୍ୟ ଲେଖା ହୋଇଛି । ଏହା ମୋର ଏବେବି କୃତିତ୍ୱର ଏକ ସ୍ମାରକୀ ।

୩ୟ ଶ୍ରେଣୀର ଏକ ଛାତ୍ରକୁ ଛାତ୍ରାବାସର ଶୃଙ୍ଖଳାରେ ଚଳାଇବା କଷ୍ଟକର ନୁହେଁ, ବରଂ ଅସମ୍ଭବ । କିଛିଦିନ ପରେ ଆମ ସ୍କୁଲଠାରୁ ୪ କି.ମି. ଦୂର ସିଙ୍ଗିରି ଶାସନର ପିଲାଟିଏ (ବଂଶୀଧର ମିଶ୍ର) ଆମ ସ୍କୁଲକୁ ଆସି ତୃତୀୟ ଶ୍ରେଣୀରେ ନାମ ଲେଖାଇ ହଷ୍ଟେଲରେ ରହିଲା ।

କିଛିଦିନ ପରେ ଦେଖିଲି ବଂଶୀ ମଧ୍ୟ ପ୍ରତିଭାସମ୍ପନ୍ନ ପିଲାଟିଏ । ବିକାଶ ପାଇଁ ଗ୍ରାମ ସଙ୍ଗିରି ଉପଯୁକ୍ତ ନଥିଲା । ମୁଁ ବଂଶୀକୁ ଆଗେଇ ନେଇ ପୁଣି ବୃତ୍ତିପାଇଁ ନିର୍ବାଚିତ କରାଇଲି ଏବଂ ସେ ମଧ୍ୟ ବୃତ୍ତି ଲାଭ କରି ମୋର, ସ୍କୁଲର ଓ ତାଙ୍କ ଅଞ୍ଚଳରେ ସୁନାମ ବଢ଼ାଇ ଥିଲା ।

କ୍ରମେ ଅବସ୍ଥା ଅସମ୍ଭାଳ ହେଲା । ବାଲକାଟି ଠାରୁ ୩/୪ କି.ମି. ଦୂରର ଅଭିଭାବକମାନେ ନିଜ ଗାଁ ସ୍କୁଲ ଛାଡ଼ି ମୋ ପାଖକୁ ପିଲାମାନଙ୍କୁ ଆଣି ପଢ଼ାଇବା ପ୍ରକ୍ରିୟା ବଢ଼ିବାରେ ଲାଗିଲା । ସ୍କୁଲରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା କ୍ରମାଗତ ଭାବରେ ବୃଦ୍ଧି ପାଇବାରୁ ଶ୍ରେଣୀ ଗୃହଟିଏ ବଢ଼ାଇବାର ଆବଶ୍ୟକତା ଜରୁରୀ ହୋଇ ପଡ଼ିଲା । ମୋ ଗୁରୁ ମି.ଇ. ସ୍କୁଲର ଶିକ୍ଷକ ଆଉ ବଡ଼କରି ବଖରାଟିଏ ଘର ବଢ଼ାଇବା ଦିଗରେ ମୋତେ ସାହସ ଦେଇଥିଲେ । ମୁଁ ସେ କାର୍ଯ୍ୟଟି ମଧ୍ୟ ସମ୍ପନ୍ନ କରିଦେଲି ।

ସ୍କୁଲର ଦାୟିତ୍ୱ, ହଷ୍ଟେଲ୍‌ର ଦାୟିତ୍ୱ ସହିତ କିଛି ଦୁଧଖିଆ ଛୁଆଙ୍କୁ ଛାତ୍ରାବାସରେ ରଖିବା ଦାୟିତ୍ୱରେ ମୁଁ ଅଣନିଃଶ୍ୱାସୀ ହୋଇଯାଉଥିଲେ ମଧ୍ୟ ଖୁବ୍ ଆନନ୍ଦ

ଅନୁଭବ କରୁଥିଲି । ଛୋଟ ଛୋଟ ପିଲାଙ୍କୁ ଯଥେଷ୍ଟ ସ୍ନେହ ଆଦର କରି ମୁଁ ସେମାନଙ୍କ ମନରୁ ନିଜ ଘରକଥା ଭୁଲାଇ ଦେଉଥିଲି ସତ, ମାତ୍ର ତା ସହିତ ମୋ ଘରକଥା ମଧ୍ୟ ଭାବିବାକୁ ସମୟ ପାଉନଥିଲି ।

ମୁଁ ନିମାପଡ଼ାରୁ ଆସିବା ମାତ୍ରେ ତତ୍ରତ୍ୟ ପ୍ରଧାନ ଶିକ୍ଷକ କିଛି କାଳ ଚାକିରୀ କରି ଇସ୍ତଫା ଦେଇଦେଲେ । ନିର୍ଯ୍ୟାତିତ, ଦଳିତ ଗୁରୁକୁଳର କଲ୍ୟାଣ ସାଧନର ଦୃଢ଼ବ୍ରତ ନେଇ ସେ ପୁରୀ ଜହ୍ନିମୁଣ୍ଡିଆଠାରେ ଏମାର ମଠରୁ ଅତି ଛୋଟ ଘରଟିଏ ନେଇ ଜିଲା ସଂଘ ଅଫିସ ଖୋଲିବା ପରେ ଏକ ଆବେଗପୂର୍ଣ୍ଣ ପତ୍ରରେ ସବୁକଥା ଜଣାଇ ପୁରୀ ଡାକିଥିଲେ । କିଛିଦିନ ପରେ ସେ ନିଜେ ଓ ସଭାପତି କୁଳମଣି ଆଚାର୍ଯ୍ୟଙ୍କ ସହ ମୋ ସ୍କୁଲରେ ହଠାତ୍ ଉପସ୍ଥିତ ହୋଇ (ବାଲକାଟି + ବାଲିଅନ୍ତା) ଅବିଭକ୍ତ ବାଲିଅନ୍ତା ସର୍କଲର ସେକ୍ରେଟରୀ ଦାୟିତ୍ୱ ଜବରଦସ୍ତ ମୋ ଉପରେ ନ୍ୟସ୍ତ କରିଥିଲେ । ଫଳରେ ପୁଣି ଏକ ନୂତନ ଦାୟିତ୍ୱ ମୋତେ ଗ୍ରହଣ କରିବାକୁ ପଡ଼ିଥିଲା । ପରେ ପରେ କଟକରେ ନି.ଉ.ପ୍ରା.ଶି. ଫେଡ଼େରେସନ ଗଠିତ ହେବା ପରେ ମୋତେ ପୁରୀଜିଲାର ଫେଡ଼େରେସନର ସଭ୍ୟ ରୂପେ ନିର୍ବାଚିତ କରି ଦିଆଗଲା । ମୋର ମୂଳ ଲକ୍ଷ୍ୟ ସ୍କୁଲର ଉନ୍ନତି ଥିଲେ ମଧ୍ୟ ଦାୟିତ୍ୱଗୁଡ଼ିକ ନେବାକୁ ମୁଁ ଏକପ୍ରକାର ବାଧ୍ୟ ହୋଇଥିଲି ।

ଫେଡ଼େରେସନର ସର୍ବପ୍ରଥମ ଅଧିବେଶନ କଟକ ଡଗରପଡ଼ାସ୍ଥ ଅନାଥାଶ୍ରମରେ ଅନୁଷ୍ଠିତ ହେବାର ଚିଠି ପାଇ ମୁଁ ଘୋର ଚିନ୍ତିତ ହୋଇ ପଡ଼ିଲି । କଟକର ଭୂଗୋଳ ଜାଣିଛି ମାତ୍ର ଏଇ ସହରଟିକୁ ମୁଁ ଥରଟିଏ ମାତ୍ର ଦେଖିନାହିଁ । କିପରି ଯାଇ ପହଞ୍ଚିବି, ମୋତେ ଭାରି ଭୟ ଲାଗିଲା । ବାଲକାଟିର ଜଣେ ଲୋକଙ୍କ ସହାୟତାରେ ମୁଁ ପ୍ରଥମଥର ପାଇଁ କଟକ ଦେଖିଲି ।

ମିଟିଂରେ ଲୋକନାଥ ନନ୍ଦ ମୋ ସହିତ ପରିଚିତ ହେବାପରେ ତାଙ୍କ ଡଗରପଡ଼ା ଉ.ପ୍ରା. ରେ ରାତ୍ରି ଯାପନ ଓ ଦୀର୍ଘ ଆଲୋଚନାର ସଙ୍କେତ ଦେଇ ମୋତେ ଘୋର ସନ୍ଦେହର ଘେର ଭିତରକୁ ଟାଣି ନେଇଥିଲେ ।

ମିଟିଂ ଶେଷରେ ମୋତେ ସାଥିରେ ନେଇ ସେ ଦିନ ରାତିରେ ଦୁହେଁ ସ୍କୁଲ ଘରେ ରହିଲୁ । ପ୍ରଧାନ ଆଲୋଚ୍ୟ ବିଷୟ ଥିଲା - ଆମେ ଦୁହେଁ ମିଳିତ ଭାବରେ ପ୍ରାଇମେରୀ ଛାତ୍ରମାନଙ୍କ ପାଇଁ ପାଠ୍ୟ-ପୁସ୍ତକ ଲେଖିବା । ବହି ଛାପି ସବ୍‌ମିଟ୍ କରିବା ପାଇଁ ସେ ଓଡ଼ିଶା ପବ୍ଲିଶିଂ ହାଉସ୍‌ର ପ୍ରୋପ୍ରାଇଟର ସତ୍ୟ ନାରାୟଣ ମିଶ୍ରଙ୍କୁ ଜବାବ ଦେଇଥିବା କଥା ଶୁଣି କହିଲି, "ଭାଇନା, ଆମ ଆଡ଼େ ଗୋଟାଏ ଢଗ ମାଇପେ

ବୋଲନ୍ତି, – ପୁଅ ନାହିଁ ପୁଅ ପେଟରେ, ପୁଅର ବାପ ଖଡୁ ଗଢ଼ୋଉଛି ବନମାଳୀପୁର ହାଟରେ । ମୋ କଥାରେ ଦବି ନଯାଇ ସେ କହିଲେ, "– ମୁଁ ଆଚାର୍ଯ୍ୟଙ୍କ ଠାରୁ ତୁମ ବିଷୟରେ ସବିଶେଷ ଜାଣିଛି । ଭୀମର କେତେ ବଳ କୁନ୍ତୀ ନଜାଣିଥିଲେ ବକାସୁରକୁ ହତ୍ୟା କରିବାର ଦୁଃସାହସ କରିନଥାନ୍ତେ । ମୁଁ ଥରେ ଏ ଦିଗରେ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଛି । ଏଥରକ ଆମେ ନିଶ୍ଚୟ ସଫଳତାର ସ୍ୱାଦ ଚାଖିବା ।''

କିଛି ତ କହିପାରୁ ନଥାଏ । ପ୍ରଥମ ଦେଖାରୁ ଏତେ ଆନ୍ତରିକତା, ଏପରି ଅଖଣ୍ଡ ଆସ୍ଥା ଓ ପୂର୍ଣ୍ଣ ବିଶ୍ୱାସ ଦେଖି ମୁଁ କିଛି କହି ପାରିଲି ନାହିଁ । ତାପରେ କହିଲେ, "– ଭୟର କାରଣ ନାହିଁ । ତୁମେ ବିଭିନ୍ନ ବିଷୟ ଉପରେ ଲେଖାମାନ ଲେଖି ପଠାଅ । ମୁଁ ଏଠାରେ ଅଧ୍ୟାପକ ଶ୍ରୀଧର ଦାସ, ନିରଂଜନ ଶତପଥୀ, ବୈଦ୍ୟନାଥ ମିଶ୍ର ଓ ଆଉ ଅନେକଙ୍କୁ ପାଣ୍ଡୁଲିପି ଦେଖାଇ ସଂଶୋଧନ କରିବି । ଏଥିପାଇଁ ତୁମକୁ ନିକିମା କରିବି ନାହିଁ । କଥା ହେଲା, ୩ୟ ଶ୍ରେଣୀ ପାଇଁ ସାହିତ୍ୟ ବହିଟିଏ ପ୍ରଥମେ ଲେଖି ଦାଖଲ କରାଯିବ ।'' ଅଧିକ ଆଲୋଚନା ବା ଯୁକ୍ତି ତର୍କକୁ ପ୍ରଶ୍ରୟ ନଦେଇ ସେ ବିଷୟସୂଚୀଟିଏ ଦେଇ କହିଲେ, "ଏଇଟିକୁ ନେଇ ଗୋଟିଏ ଗୋଟିଏ ପ୍ରବନ୍ଧ'' ଓ କେଉଁ କେଉଁ ବିଷୟରେ କବିତା ଲେଖାଯିବ ତାହା ମଧ୍ୟ ସୂଚାଇ ଦେଲେ ।

ସକାଳୁ ଡଗରପଡ଼ାରୁ ଗୌରୀଶଙ୍କର ପାର୍କକୁ ଆସିବାକୁ ଏକ ବାଟ ବତାଇ ଦେଇ କହିଲେ, "୧୫ ରୁ ୨୦ ଦିନ ଭିତରେ ପାଣ୍ଡୁଲିପି ଧରି ଆସିବୁ । ମୁଁ ଅପେକ୍ଷା କଲି । ମୋତେ copy ଦେଇ ତୁ ପୁଣି ଆଜି ପରି ସକାଳୁ ଚାଲିଯିବୁ ।'' ପ୍ରଥମେ 'ଆପଣ' (ମିଟିଂରେ) ତାପରେ ଡଗରପଡ଼ାରେ 'ତୁମେ' ପୁଣି ସକାଳକୁ ପୂରା ନିଜର ସାନଭାଇ ପରି 'ତୁ' ବୋଲି ସମ୍ବୋଧନ କରିବାରେ ମୁଁ ଅତିଶୟ ପ୍ରୀତି ଅନୁଭବ କରିଥିଲି । ଭାବିଲି, ଘନିଷ୍ଠ ଆନ୍ତରିକତା ଓ ସ୍ନେହଶ୍ରଦ୍ଧା ବଢ଼ିଗଲେ ଏହାହିଁ ସମୁଚିତ ସମ୍ବୋଧନ ।

ବାଲକାଟିରେ ପହଞ୍ଚିବା ପରେ ଭାବିଲି ଏ ତ ଦାୟିତ୍ୱ ଉପରେ ଦାୟିତ୍ୱ । ବୋଝ ଉପରେ ନଳିତା ବିଡ଼ା ପରି ମାଡ଼ିବସିଛି । ଯାହା ମା ଠାକୁରାଣୀ କରିବେ । ମୋତେ ସବୁବେଳେ ସମୟ ଅଭାବ । ଲୋକନାଥ ବାବୁଙ୍କ ଅଜବ ଚିନ୍ତାକୁ ପୁଣି ସମ୍ମାନ ଦେବାକୁ ହେବ । ମୁଁ ରାତିରେ ସବୁ କାମ ସାରି ଘଣ୍ଟାଏ ପୁଣି ସାଢ଼େ ଚାରି ବା ପାଞ୍ଚଟାରୁ ଉଠି କିଛି ସମୟ ଲେଖୁଥାଏ । ସମୁଦାୟ ବିଷୟଗୁଡ଼ିକୁ କବିତା ସହିତ ଲେଖିବାକୁ ମୋତେ ପ୍ରାୟ ୧୫ / ୨୦ ଦିନ ଲାଗିଗଲା । ମଝିରେ ଦୁଇଥର

ଅଗ୍ରଗତି ସଂପର୍କୀୟ ବିବରଣୀ ଜଣାଇବା ପାଇଁ ଲୋକନାଥ ବାବୁ ଯୋକ ପରି ଲାଗିଥାନ୍ତି ।

ପାଣ୍ଡୁଲିପି ନେଇ କଟକ ଗଲି । ରାତିରେ ଦୁହେଁ ବସି ପାଣ୍ଡୁଲିପିଟିକୁ ଆମୂଳାନ୍ତ ପଢ଼ିଲୁ । ସକାଳୁ ମୁଁ ଚାଲିଆସିଲି । ଭାଇନା ସେ ପାଣ୍ଡୁଲିପିକୁ ନେଇ ଜଣକ ପରେ ଆଉଜଣଙ୍କୁ ଏହିପରି ୪/ ୫ ଜଣଙ୍କୁ ଦେଖାଇ ସଂଶୋଧନ କରାଉଥାନ୍ତି। ପବ୍ଲିଶର୍ ସତ୍ୟ ନାରାୟଣ ମିଶ୍ର ବାରମ୍ବାର ପାଣ୍ଡୁଲିପି ପାଇଁ ଖବର ଦେଉଥାନ୍ତି । ସଂଶୋଧିତ ପାଣ୍ଡୁଲିପିଟି ସେ ଓଡ଼ିଶା ପବ୍ଲିଶିଂ ହାଉସକୁ ହସ୍ତାନ୍ତର କରିଦେଲେ । ସତ୍ୟ ବାବୁ ବହିଟିକୁ ଛବି ଓ ପ୍ରଚ୍ଛଦ ପଟରେ ବେଶ୍ ଲୋଭନୀୟ କରି ଛାପିଦେଲେ । ଯଥା ସମୟରେ ସବ୍‌ମିଟ୍ ମଧ୍ୟ ହୋଇଗଲା।

ଏହା ଭିତରେ କିଛିଦିନ ବିତିଯାଇଥାଏ । ବହି ମଂଜୁର ହେବ, ଏ ଧାରଣା ମୁଁ ମନରୁ ଭୁଲିଯାଇ ମୋ ଲକ୍ଷ୍ୟରେ ଆଗେଇ ଥାଏ । ହଠାତ୍ ଗୋଟାଏ ଟେଲିଗ୍ରାମ ପାଇଲି – Kasi, your Kalika is approved । ପ୍ରଥମେ ମୁଁ ବିଶ୍ୱାସ କରି ପାରିଲି ନାହିଁ । କିଛି ସମୟ ଚିନ୍ତାକଲା ପରେ ଜାଣିଲି ବହିର ନାମ "ଜାତୀୟ ସାହିତ୍ୟ କଳିକା'' ଦିଆ ଯାଇଥିଲା । ସେହିଦିନ ମୋ ହର୍ଷ, ଉଲ୍ଲାସ ଆଉ ଆନନ୍ଦ ଅବର୍ଣ୍ଣନୀୟ ଥିଲା ।

ପରେ ପରେ କାର୍ଡ଼ଟିଏ ପାଇଲି – "କାଶୀ, ତୋ ବହି ମଂଜୁର ହେବା ଏକ ଐତିହାସିକ ଘଟଣା । ଏ ପର୍ଯ୍ୟନ୍ତ ଓଡ଼ିଶାର ବରପୁତ୍ରମାନେ ପାଠ୍ୟପୁସ୍ତକ ଲେଖୁଥିଲେ। ଅତି ଅଳ୍ପ ଯୋଗ୍ୟତାବିଶିଷ୍ଟ ପ୍ରାଥମିକ ଶିକ୍ଷକଙ୍କ ପୁସ୍ତକ ସରକାରୀ ମଂଜୁରୀ ପାଇବା ଏକ ଅଭିନବ ପ୍ରଚେଷ୍ଟା । ତୋ'ର ମଙ୍ଗଳକାମନା କରି ରହିଲି।''

ମୁଁ ସେହି ଦିନହିଁ ଉତ୍ତରରେ ଲେଖିଲି, " – ସେ'ତ ମୋ ବହି ନୁହେ। ଆମ ଦୁହିଙ୍କ ନାମ ପାଣ୍ଡୁଲିପିରେ ଥିଲା । ମୋ ବିଚାରରେ ଆପଣହିଁ ପୁସ୍ତକଟିର ସ୍ରଷ୍ଟା। ମୁଁ ଦେବକୀ ମାତ୍ର । ଆପଣ ଯଶୋଦା ମାଆଙ୍କ ଭୂମିକାରେ ଅବତୀର୍ଣ୍ଣ ହୋଇ ଯେଉଁ ଆଦର୍ଶ ଦେଖାଇ ଅଛନ୍ତି ସେଥିପାଇଁ ମୁଁ ଧନ୍ୟ ହୋଇଗଲି ।''

ବୋଧହୁଏ ଏହା ୫୨-୫୩ ମସିହାର କଥା । ସେତେବେଳେ ଗୋଟିଏ ଗୋଟିଏ ଶ୍ରେଣୀପାଇଁ ସଂଖ୍ୟାଧିକ ସାହିତ୍ୟ ଓ ଗଣିତ ବହି ମଂଜୁର ହେଉଥିଲା। ଶିକ୍ଷକମାନେ ନିଜ ପସନ୍ଦ ଅନୁସାରେ ପୁସ୍ତକ ନିର୍ବାଚନ କରୁଥିଲେ। ଆମ ପୁସ୍ତକ ସହିତ କାଳିନ୍ଦୀବାବୁ, ନୀଳକଣ୍ଠ ଦାସ, ରାମକୃଷ୍ଣ ନନ୍ଦ, ଗୋଦାବରୀଶ ମିଶ୍ର ଆଦି ...

୭ ଜଣଙ୍କ ବହି ୩ୟ ଶ୍ରେଣୀ ସାହିତ୍ୟ ବହି ରୂପେ ମଂଜୁରୀ ପ୍ରାପ୍ତ ହୋଇଥାଏ ।

ଆମ ବହିଟି ମଂଜୁର ହେବାପରେ ପବ୍ଲିଶର୍ ଲୋକନାଥ ଭାଇନାଙ୍କୁ ଗୁଡ଼ିଏ ଫ୍ରି କପିଦେଇ ଏଗୁଡ଼ିକ ଶିକ୍ଷକମାନଙ୍କ ମଧ୍ୟରେ ବାଣ୍ଟି ଦେବାକୁ କହିଲେ। କାରଣ ଲୋକନାଥ ବାବୁ ନି.ଉ.ପ୍ରା.ଶି. ଫେଡ଼େରେସନର ସାଧାରଣ ସଂପାଦକ ଓ ଅତ୍ୟନ୍ତ ଲୋକପ୍ରିୟ ଶିକ୍ଷକ ନେତା । ମୁଁ ପୁରୀ ଜିଲା ସଂଘର ଜଣେ ଜଣାଶୁଣା ସଭ୍ୟ । ଆମ ଜରିଆରେ ବହିର ପ୍ରଚାର କରି ପବ୍ଲିଶରଙ୍କର ଅନ୍ୟ ପ୍ରତିଷ୍ଠିତ ଲେଖକମାନଙ୍କ ବହିଠାରୁ ଅଧିକ ବିକ୍ରି କରିବାର ଉଦ୍ଦେଶ୍ୟ ଆଉ ଅଛପା ରହିଲାନି ନାହିଁ । ଲୋକନାଥ ବାବୁ ମୋତେ ଡକାଇ ୪୦ /୫୦ ଖଣ୍ଡ ବହି ଦେଇ ପୁରୀ ଜିଲ୍ଲାରେ ବହିଟିର ବହୁଳ ପ୍ରଚାର ପାଇଁ କହିଲେ ।

ସତ କହିବାକୁ ଗଲେ ମୁଁ ପୁରୀ ଜିଲାର ପ୍ରାୟ ସବୁ ସର୍କଲ ସଂପାଦକ ଓ ସ.ଇ.ମାନଙ୍କୁ ବହି ଓ ଅନୁରୋଧ ପତ୍ର ଦେଇଥିଲେ ମଧ୍ୟ ଲୋକନାଥ ବାବୁ ପ୍ରାୟ ସମଗ୍ର ଓଡ଼ିଶାରେ ବହିଟିକୁ ଚଳାଇ ଦେବାର ଉଦ୍ୟମ କରିଥିଲେ । ଏବଂ ଅନେକାଂଶରେ ସଫଳ ହୋଇଥିଲେ ମଧ୍ୟ ।

ପରବର୍ତ୍ତୀ ବର୍ଷର ଦଶହରାକୁ ପବ୍ଲିଶର ମୋତେ ଏକ ସ୍ୱତନ୍ତ୍ର ଚିଠିରେ ଡକାଇଲେ । ମୁଁ ବାଙ୍କା ବଜାରସ୍ଥ ତାଙ୍କ ଅନୁଷ୍ଠାନରେ ପହଞ୍ଚିଲା ବେଳକୁ ଭାଇନା ଆଗରୁ ଉପସ୍ଥିତ ଅଛନ୍ତି । ସତ୍ୟ ବାବୁ ଆମକୁ ଭବ୍ୟ ସମ୍ବର୍ଦ୍ଧନା, ଜଳଖିଆ ଓ ଚାହା ଆଦି ଦେବା ପରେ ଗୋଟିଏ ପ୍ୟାକେଟ ମୋ ହାତକୁ ବଢ଼ାଇ ଦେଲେ । ସେଥିରେ ଟଙ୍କା ଥିବା ମୁଁ ଜାଣି ପାରିଲି ଓ ପୂରା ପାକେଟଟି ଭାଇନାଙ୍କୁ ବଢ଼ାଇ ଦେଲି । ସେ ବିରକ୍ତ ହୋଇ କହିଲେ ତୁ ଗଣିକରି କେତେ ଅଛି କହ ।'' ବାଧ୍ୟ ହୋଇ ଗଣିଲି ଓ ମୋଟ ୪୨୦୦ ଟଙ୍କା ସେଥିରେ ଥିଲା । ସମୁଦାୟ ଟଙ୍କା ତାଙ୍କୁ ବଢ଼ାଇ ଦେବାରେ ସେ ଠିକ୍ ୨୧୦୦ ଟଙ୍କା ମୋ ପକେଟ୍‌ରେ ପୂରାଇ ଦେଲେ। ବର୍ଷକୁ ୭/୮ ଶହ ଟଙ୍କା ଦରମା ପାଉଥିବା ବ୍ୟକ୍ତି ଯଦି ଏକକାଳୀନ ୨୧୦୦ ଟଙ୍କା ପାଏ, ତା ମନରେ କେଉଁ ପରି ଶାନ୍ତି, ସନ୍ତୋଷ ଓ ଆନନ୍ଦ ଆସିଥାଏ, ମୁଁ ତାହା ପ୍ରଥମ ଥର ପାଇଁ ଅନୁଭବ କରିଥିଲି ।

'ତିନିପଇସା ତହୁଁପାଇ, ଆହୁରି ବେଣା ଉପାଡ଼ଇ' ଏ ଉକ୍ତିଟି ତ୍ରିନାଥ ମେଳା ପୁସ୍ତକରେ ଅଛି । ଲୋକନାଥ ବାବୁ ଗୋଟିଏ ବିଷୟ ସୂଚୀସମ୍ବଳିତ ଚିଠା ମୋ ହାତକୁ ବଢ଼ାଇ ଦେଇ କହିଲେ, " – ଶୀଘ୍ର ନିର୍ବାଚିତ ବିଷୟମାନଙ୍କ ଉପରେ

ଦ୍ୱିତୀୟ ଶ୍ରେଣୀ ଉପଯୋଗୀ ଭାଷାରେ ପାଣ୍ଡୁଲିପି ପ୍ରସ୍ତୁତ କରିବୁ ।'' ମୁଁ ସେତିକି ବେଳେ କହିଲି, " – ଭାଇନା ସେଇ ତିନିପଇସା ଯଥେଷ୍ଟ । ଆଉ ଅଧିକ ବେଣା ଉପାଡ଼ନ୍ତୁ ନାହିଁ।'' ସେ ଏତେ ବିରକ୍ତ ହୋଇଗଲେ ଯେ ସେ ସବୁ ବର୍ଣ୍ଣନା କରିବା ସମ୍ଭବ ନୁହେଁ। ଆନ୍ତରିକତା ଖୁବ୍ ବଢ଼ିଯାଇଥାଏ । ମୁଁ କିଛି କହିବାକୁ ଆରମ୍ଭ କରିବା ମାତ୍ରେ ସେ ରାଗିଯାଉଥାନ୍ତି । ଶେଷକୁ କହିଲେ, "ତୁ କେବଳ ମୋ କଥା ହିଁ ମାନିବୁ । ପ୍ରତିବାଦ କଲେ ତୋ ସହିତ କଥାଭାଷା ବନ୍ଦ ।'' ଭାରି ଅଡୁଆ ଲାଗିଲା । ଏତିକି ବେଳେ ମୁଁ ୨ୟ ୩ୟ ଶ୍ରେଣୀ ପାଇଁ କ୍ଲାସ୍‌ରେ ପଢ଼ାଇବାକୁ କେତେଗୁଡ଼ିଏ ଗଳ୍ପ ଲେଖିଥିଲି । ତାହା ନନ୍ଦଙ୍କ ପାଖରେ ଥିଲା । ସେଥିରୁ କିଛି ଗଳ୍ପ ନିର୍ବାଚନ କରି ପାଠ୍ୟ ପୁସ୍ତକରେ ଦେବାପାଇଁ ନନ୍ଦଙ୍କୁ ଦେଇଥିଲି । ସେ ସେଇ ଦଶହରା ଦିନ ଉକ୍ତ ପାଣ୍ଡୁଲିପିଟି ସତ୍ୟବାବୁଙ୍କୁ ଦେଇ କହିଲେ, – "ଏଇଟି ପନ୍ଦର ଦିନ ଭିତରେ ଛାପିଦେବେ । ଲେଖକ କାଶୀନାଥ ନାୟକ ବୋଲି କେବଳ ଲେଖାଯିବ। କାଶୀ ମୋ କାମ କରି ଆସିବା ବେଳକୁ ତା'ର ଏ ବହି ସାଙ୍ଗରେ ନେଇଯିବ ।'' ଏପରି ଗଭୀର ଆନ୍ତରିକତା ମୋତେ ମୁଗ୍ଧ କରି ପକାଇଥିଲା । ମୁଁ ନୀରବ ସମ୍ମତି ଜଣାଇ ଫେରି ଆସିଥିଲି ।

ଯଥା ସମୟରେ ଦ୍ୱିତୀୟ ଶ୍ରେଣୀ ପାଇଁ ବହିଟିର ପାଣ୍ଡୁଲିପି ବୋଧହୁଏ ୨୦/୨୨ ଦିନ ପରେ ନେଇ କରି ଗଲି । ନନ୍ଦେ ବାଲୁ ବଜାରକୁ ଆଗରୁ ଆସିଥିଲେ। ତାଙ୍କ ହାତକୁ ପାଣ୍ଡୁଲିପିଟି ବଢ଼ାଇ ଦେଲି । ଏତିକି ବେଳେ ସତ୍ୟବାବୁ 'ଗଳ୍ପ ଲହରୀ' ପୁସ୍ତକଟିରୁ ୨୦ କପିର ଏକ ପାକେଟ୍ ମୋତେ ଦେଇଥିଲେ ।

ଯଥା ସମୟରେ ଆମର ୨ୟ ଶ୍ରେଣୀ 'ସାହିତ୍ୟ କଳିକା'ଟି ମଧ୍ୟ ମଂଜୁରୀ ଲାଭ କଲା । ମୁଁ ସ୍ମରଣ କରିଥିଲି "ଭାଗ୍ୟ ହୋଇଥିଲେ ରୁଚି ଅନକୂଳ...।'' ଲାଗ୍ ଲାଗ୍ ଦୁଇଟି ସାହିତ୍ୟ ବହି ମଂଜୁରୀ ଲାଭ କରିବାରେ ପ୍ରାୟ ସମସ୍ତ ପବ୍ଲିଶର ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସର୍ବପ୍ରଥମେ କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍‌ର ଅନନ୍ତ ବାବୁ ମୋତେ କିଛି ଲେଖା ଦେବାପାଇଁ ଅନୁରୋଧ କରିବାରେ ମୁଁ ତାଙ୍କୁ ନି.ପ୍ରା. ବୃତ୍ତି ପରୀକ୍ଷାର ଏକ ପ୍ରଶ୍ନୋତ୍ତର ଦେଇଥିଲି । ସେ ତାକୁ ଛାପିଥିଲେ।

ପରେ ପରେ ଅନ୍ୟ ପବ୍ଲିଶରମାନେ ମୋତେ ସାକ୍ଷାତ କରି ନିଜ ନିଜର ଅଭିଳାଷ ଜଣାଇଥିଲେ । ବହି ଲେଖା ସହିତ ଆମର ବହି ଚଳାଇବାରେ ଥିବା ବିଶେଷ ସୁବିଧାକୁ ଉପଯୋଗ କରି ଅଧିକ ବିକ୍ରି ଆଶା ହିଁ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

## ସହକାରୀ ସବ୍-ଇନ୍ସପେକ୍ଟର

ଖୁବ୍ ସମ୍ଭବ ୧୯୫୫ ମସିହାରେ ପୁରୀ ଜିଲାରେ ୧୩ ଜଣ ଶିକ୍ଷକଙ୍କୁ ସହକାରୀ ସବ୍-ଇନ୍ସପେକ୍ଟର ରୂପେ ନିଯୁକ୍ତ କରିବା ପାଇଁ ବ୍ୟବସ୍ଥା ହେଲା । ସେତେବେଳର ଡି.ଆଇ.ଥିଲେ ସୟଦ୍ ଅବଦୁଲ ଓ୍ୟାହେଦ୍ ବାବୁ । ମୁଁ ଏହି ପରୀକ୍ଷା ଦେବା ପାଇଁ ଯାଇ ଥିଲି । ଡ଼ି.ଆଇ. ଅଫିସ୍‌ରେ ପରୀକ୍ଷା ହେଲା । ମାସକ ମଧ୍ୟରେ ଜଣା ପଡ଼ିଲା, ୧ମ ରଘୁନାଥ ପଟ୍ଟନାୟକ, ୨ୟ ନରହରି ମହାପାତ୍ର, ୩ୟ କାଶୀନାଥ ନାୟକ ଓ ୪ର୍ଥ ଗିରିଧାରୀ ଶ୍ରୀଚନ୍ଦନ ଓ ଅନ୍ୟ ୮ ଜଣ ନିର୍ବାଚିତ ହୋଇଛନ୍ତି । ମୁଁ ବେଶ୍ ଆନନ୍ଦିତ ହୋଇଥିଲି । ମାତ୍ର ବାଲକାଟିର ପରିକଳ୍ପନା ମୋର ବାସ୍ତବରୂପ ନେଇ ନଥିବାରୁ ଦୋଦୁଲ୍ୟମାନ ଅବସ୍ଥାରେ ଥିଲି ।

ସମ୍ବାଦଟି ଚାରିଆଡ଼େ ପ୍ରଚାରିତ ହୋଇଗଲା । ପ୍ରଥମ ବିରୋଧ କରିଥିଲା ମୋ ବଡ଼ ଭଉଣୀ । କାରଣ ତା ପୁଅକୁ ମୁଁ ପାଖରେ ରଖି ପଢ଼ାଉଥାଏ ଓ ସେ ୪ନି.ପ୍ରା.ବୃତ୍ତି ମଧ୍ୟ ପାଇଥାଏ ।

ଦ୍ୱିତୀୟ ବିରୋଧ କରିଥିଲେ ସତ୍ୟପ୍ରିୟ ମହାନ୍ତି । ସେ କହିଲେ, "ଏ କଥା ସତ୍ୟ ଯେ ଏକ ସରକାରୀ ଚାକିରୀ ତୁମକୁ ଯୋଗ୍ୟତା ଭିତ୍ତିରେ ମିଳିଛି । ତାକୁ ଉପେକ୍ଷା କରିବା ଠିକ୍ ନୁହେ । ମାତ୍ର ମୋର ପରାମର୍ଶ ତୁମେ ଏଇଠାରେ ରହି ମୋ ଉଦ୍ଦେଶ୍ୟ ପୂରଣ କର । ଯଥେଷ୍ଟ କିଛି କରିପାରିଛ । ଏହାକୁ ପୂର୍ଣ୍ଣାଙ୍ଗ କରିଦିଅ । କଷ୍ଟ ହେଲେ ମଧ୍ୟ ନିଜକୁ ପ୍ରସ୍ତୁତ କର । ଚତୁର୍ଥରେ ବନ୍ଧୁ ଗ୍ରାମବାସୀ ମଧ୍ୟ ମୋତେ ଅନ୍ୟତ୍ର ନଯିବା ପାଇଁ ଅନୁରୋଧ କରିଥିଲେ ।

ବହୁଚିନ୍ତା ପରେ ଦେଖିଲି, – ବାସ୍ତବରେ ମୁଁ ବାଲକାଟି ଅଞ୍ଚଳରେ ଲକ୍ଷ୍ମୀଙ୍କ ସହିତ ସରସ୍ୱତୀଙ୍କୁ ମଧ୍ୟ ସମ୍ମାନ ଓ ଆଦର ଦେବି । ଉକ୍ତ ପ୍ରଚେଷ୍ଟା ମୋର ଆଶାତୀତ ସଫଳତା ଲାଭ କରୁଛି । ପୁନଶ୍ଚ ମୁଁ ଯଦି ସହକାରୀ ସ.ଇ. ପଦ ମର୍ଯ୍ୟାଦାକୁ ଗ୍ରହଣ କରିନିଏ, ଲୋକନାଥ ବାବୁ ସବୁଠାରୁ ବେଶୀ ଦୁଃଖିତ ହେବେ । ଅଧିକ ପୁସ୍ତକ ପ୍ରଣୟନ କରିବାରେ ବାଧା ସୃଷ୍ଟି ହେବ । ଦୁଇବର୍ଷ ଭିତରେ ଆମେ ଜଣକେ ପ୍ରଥମଥର ୨୧୦୦+ଦ୍ୱିତୀୟ ବର୍ଷ ୩୫୦୦ ଏପରି ୫୬୦୦ ପାଇଥିବା ସହିତ ଆଗକୁ ଏପ୍ରକାର ଆୟର ଉଜ୍ଜ୍ୱଳ ସମ୍ଭାବନାକୁ ଉପେକ୍ଷା କରିବାକୁ ଇଛା ହେଲା ନାହିଁ । ମୁଁ ଡ଼ି.ଆଇ. ଓ୍ୟାହେଦ ବାବୁଙ୍କୁ ମୋ ଅସାମର୍ଥ୍ୟ ଜଣାଇ ଦେଲି । ଫଳରେ ୧୩ ସ୍ଥାନରେ ଅପେକ୍ଷାରେ waiting list ଥିବା କ୍ଷେତ୍ର ମୋହନ ମହାନ୍ତି ଏ ସୁଯୋଗ ମନକୁ ମନ ପାଇ ଯାଇଥିଲେ ।

ଉଲ୍ଲେଖନୀୟ ଯେ ମୋର ତ୍ୟାଗ କ୍ଷେତ୍ରମୋହନ ବାବୁ କିଛିବର୍ଷ ପରେ ଆମ ସର୍କଲ ସ.ଇ. ହୋଇ ଆସିଲେ ଓ ମୋ ସ୍କୁଲ ପରିଦର୍ଶନ କରିଥିଲେ । କଥାଟି ଖରାପ ଲାଗିଥିଲା ସତ; ମାତ୍ର କ୍ଷେତ୍ରମୋହନ ବାବୁ ମୋ ପ୍ରତି ଅତି ଉତ୍ତମ ବ୍ୟବହାର ପ୍ରଦର୍ଶନ କରିଥିଲେ ।

ଏଥି ମଧ୍ୟରେ ଲୋକନାଥ ବାବୁ ୨ୟ ୩ୟ ଶ୍ରେଣୀ ପାଇଁ ଇତିହାସ ଓ ଭୂଗୋଳ ବହି ଦୁଇଟି ଲେଖି ପାଣ୍ଡୁଲିପି ଦୁଇଟି ମୋତେ ଦେଖିବା ପାଇଁ ଦେଇଥିଲେ । ମୁଁ ତାକୁ ଉତ୍ତମରୂପେ ଦେଖି ଆବଶ୍ୟକ ପରିବର୍ତ୍ତନ କରି ପଠାଇଲି ଓ ତାହା ମଂଜୁରୀ ହେବା ଆବଶ୍ୟକ ନଥିଲା । ପବ୍ଲିଶିଂ ହାଉସ ଏ ବହି ଦୁଇଟି ଛାପିଥିଲେ ଓ ଏହା ମଧ୍ୟ ବେଶ୍ ବିକ୍ରି ହୋଇଥିଲା । ଏହି ୪ ଗୋଟି ବହିର ରୟାଲଟି ପରିମାଣ ଉପରେ ଲୋକନାଥ ବାବୁ ଅସନ୍ତୋଷ ପ୍ରକାଶ କରିଥିଲେ ।

ଇତି ମଧ୍ୟରେ ଦାସ୍-ବ୍ରଦର୍ସ ନାମରେ ଏକ ନୂତନ ପ୍ରକାଶକ ସଂସ୍ଥା ବାଲୁ ବଜାରରେ ତାଙ୍କର ପ୍ରତିଷ୍ଠାନ ଆରମ୍ଭ କଲେ । ସେ ହଠାତ୍ ମୋ ପଛରେ ଲାଗିଗଲେ । ତାଙ୍କର ମେନେଜର ରୂପେ ଆସିଥିଲେ ଗୋବିନ୍ଦ ଚରଣ ପାତ୍ର । ପରେ ଏହି ପାତ୍ର ବାବୁ ଓଡ଼ିଶା ବୁକ୍ ଷ୍ଟୋର୍ ନାମରେ ଏକ ସ୍ୱତନ୍ତ୍ର ପ୍ରକାଶନ ସଂସ୍ଥା ଖୋଲିଥିଲେ । ପ୍ରଥମେ ସେ ମୋତେ ୫ମ ଶ୍ରେଣୀର ବୃତ୍ତି ପରୀକ୍ଷା ପ୍ରଶ୍ନୋତ୍ତର ଲେଖିବା ପାଇଁ ଅନୁରୋଧ କରିଥିଲେ । ଯଥା ସମୟରେ ମୁଁ ଉକ୍ତ ପୁସ୍ତକ ( ସାହିତ୍ୟ, ଗଣିତ ଆଦି ଅଲଗା ଅଲଗା ଭାବରେ ଦେଇଥିଲି ଓ ତାହା ଦାସ-ବ୍ରଦର୍ସର ସର୍ବପ୍ରଥମ ପ୍ରକାଶନ ଥିଲା, ଦାସ ବ୍ରଦର୍ସର ପୂର୍ବରୁ ବ୍ରହ୍ମପୁର ଓ ସମ୍ବଲପୁରରେ ଦୋକାନ ଥିଲା । କଟକରେ ନୂଆ କରି ଆରମ୍ଭ କରି ସେ ତିନି ବିଭିନ୍ନ ଜିଲାରେ ଏକମାତ୍ର ମୋର ପ୍ରଶ୍ନୋତ୍ତର ବହି ଏକ ପ୍ରଚଳନ ପାଇଁ ଲାଗିପଡ଼ିଥିଲେ । ନିଜେ ପ୍ରୋପ୍ରାଇଟର ପୂର୍ଣ୍ଣଚନ୍ଦ୍ର ଦାସ ମୋତେ ବାରମ୍ବାର ପ୍ରଲୋଭିତ କରିବାରେ ଲାଗିଥାନ୍ତି । କଟକ ଆସିଲେ ତାଙ୍କ ନିଜ ଘରକୁ ନେଇ ଖାଇବାକୁ ଦିଅନ୍ତି । କ୍ରମେ ଆତ୍ମୀୟତା ବଢ଼ି ବଢ଼ି ଚାଲିଲା । ମୁଁ ତାଙ୍କ ଅନୁରୋଧକୁ ଉପେକ୍ଷା କରି ପାରିଲି ନାହିଁ । ସେହି ସମୟକୁ "ଜାତୀୟ ସାହିତ୍ୟ କଳିକା'ର ସମୟ ପୂରି ଯାଇଥିଲା । ପବ୍ଲିଶିଂ ହାଉସ୍ ପୁଣିଥରେ ୨ୟ ୩ୟ ଶ୍ରେଣୀର ସାହିତ୍ୟ ସବ୍‌ମିଟ୍ କରିବା ପାଇଁ ବାରମ୍ବାର ଅନୁରୋଧ କଲେ । ମାତ୍ର ମୁଁ ଦାସ ବ୍ରଦର୍ସଙ୍କ ସହିତ ଚୁକ୍ତିବଦ୍ଧ ଥିବାରୁ ତାଙ୍କୁ ମନା କରି ଦେଇଥିଲି । ଦାସବ୍ରଦର୍ସଙ୍କୁ ମୁଁ ୨ୟ ଓ ୩ୟ ଶ୍ରେଣୀପାଇଁ 'ସୁନ୍ଦରପାଠ' ନାମକ ଦୁଇଟି ଓ ଅତିରିକ୍ତ ସାହିତ୍ୟ ହିସାବରେ 'ପୁରାଣ ଗଳ୍ପ ଲହରୀ' ଏପରି ଚାରିଗୋଟି ପାଣ୍ଡୁଲିପି ଦେଲି । ଏ ସବୁ ବହିରେ ଲୋକନାଥ ବାବୁ ତାଙ୍କ ଟ୍ରେନିଂ ସ୍କୁଲର ଗୁରୁ ବାଇରୋଇ ଗ୍ରାମର ଭଗବାନ

ନନ୍ଦଙ୍କ ନାମ ଦେବା ପାଇଁ ପ୍ରସ୍ତାବ ଦେଲେ । ଭଗବାନ ନନ୍ଦଙ୍କର ଜ୍ଞାନ ଓ ଅଭିଜ୍ଞତା ବହୁତ ସତ; ମାତ୍ର ୨ୟ ୩ୟ ଶ୍ରେଣୀ ପାଇଁ ଭାଷା ଉପଯୁକ୍ତ ହେଉ ନଥାଏ । ସେ ଲେଖି ମୋତେ କିଛି ଲେଖା ଦିଅନ୍ତି ଓ ମୁଁ ତାକୁ ଉତ୍ତମ ରୂପେ ପଢ଼ି ଆଉଥରେ ଲେଖେ । ମୋ ଲେଖା ଦେଖିବା ପରେ ସେ ଲୋକନାଥ ନନ୍ଦଙ୍କ ଉପସ୍ଥିତିରେ କହିଲେ, "– ବାସ୍ତବିକ୍ ଛୋଟପିଲାଙ୍କ ପାଇଁ ବହି ଲେଖିବା ବହୁତ କଷ୍ଟ । ସେ ଯାହାହେଉ, ଦାସବ୍ରଦର୍ସ ଏକକାଳୀନ ଏହି ୪ଟି ଯାକ ବହି ଛପାଇ ଦାଖଲ କରିଦେଲେ । ଆଶ୍ଚର୍ଯ୍ୟର କଥା ଉକ୍ତ ବର୍ଷ ଏ ଚାରୋଟି ଯାକ ବହି ମଂଜୁର ହୋଇ ଯିବାର ସମ୍ବାଦ ପାଇ ଭଗବାନ ନିଜେ ବାଲକାଟି ଆସି ମୋତେ ଜୁଣ୍ଣାଇ ପକାଇଥିଲେ । ବାସ୍ତବିକ ଏ ପ୍ରକାର ଅସମ୍ଭବ ସଫଳତାରେ ମୁଁ ମଧ୍ୟ ଆତ୍ମହରା ହୋଇ ଉଠିଥିଲି ।

ବର୍ଷ ପୂରିବା ପରେ ଦାସ-ବ୍ରଦର୍ସ ମୋତେ ଏଗ୍ରିମେଣ୍ଟ ସାଇନ୍ କରିବା ପାଇଁ ଠିକ୍ ଦଶହରା ଦିନକୁ ଡକାଇଲେ । ଭଗବାନବାବୁ ମଧ୍ୟ ଆସିଥିଲେ । ଏଗ୍ରିମେଣ୍ଟ୍ କାମ ସରିବା ପରେ ପୂର୍ଣ୍ଣ ବାବୁ ମୋତେ ୬୫୦୦ ଟଙ୍କା ଦେଇ କହିଲେ, "ଆସନ୍ତା ମାସରେ ଅବଶିଷ୍ଟ ୧୫୦୦ ଟଙ୍କା ଦେଇଦେବେ ।'' ଲୋକନାଥ ବାବୁ ଉପସ୍ଥିତ ଥିଲେ । ମୋତେ ବହୁତ ଖରାପ ଲାଗୁଥାଏ । ମୁଁ ଭଗବାନ ନନ୍ଦଙ୍କୁ ସବୁ ଟଙ୍କା ଦେଇ କହିଲି, - "ଆପଣ ମୋର ମଧ୍ୟ ଗୁରୁ । ଏ ଟଙ୍କା ଆପଣ ବାଣ୍ଟି ଦିଅନ୍ତୁ । ମୁଁ ଆଦୌ ଆପତ୍ତି କରିବି ନାହିଁ । ପ୍ରଥମେ ଖୁବ୍ ଅପ୍ରତିଭ ହେଲେ ମଧ୍ୟ ଭଗବାନ ବାବୁ ମୋତେ ୪୦୦୦ ଓ ସେ ନିଜେ ୨୫୦୦ ରଖିଥିଲେ । ଲୋକନାଥ ବାବୁ କହିଲେ, "ନାଁ କାଶୀକୁ ୧୦୦୦ ଟଙ୍କା ଦିଅନ୍ତୁ । ଅବଶିଷ୍ଟ ଅର୍ଥକୁ ଦୁହେଁ ସମାନ ବାଣ୍ଟି ନିଅନ୍ତୁ ।'' ମୋ ମନ ବହୁତ ଖରାପ ହେଲା । ଲୋକନାଥ ବାବୁ ଏହାର ସ୍ରଷ୍ଟା, ଦିଗ୍‌ଦର୍ଶକ ତେଣୁ ମୁଁ କହିଲି, "ଭାଇନାଙ୍କୁ ୧୦୦୦ ଟଙ୍କା ଦେଇ ଅବଶିଷ୍ଟ ଟଙ୍କାକୁ ଆମେ ସମାନ ବାଣ୍ଟି ନେବୁ । ଭଗବାନ ବାବୁ ଯୋର୍ କରି ଲୋକନାଥ ବାବୁଙ୍କୁ ୧୦୦୦ ଟଙ୍କା ଧରାଇ ଦେଇଥିଲେ ।

ଏକକାଳୀନ ୪ ଖଣ୍ଡ ପାଠ୍ୟ-ପୁସ୍ତକ ମଂଜରୀ ଲାଭ କରିଥିବାରେ ଦାସବ୍ରଦର୍ସ ଅତ୍ୟନ୍ତ ଉତ୍ସାହିତ ହୋଇ ଉଠିଥିଲେ । ଏହାହିଁ ଥିଲା ତାଙ୍କ ପ୍ରତିଷ୍ଠାନର ସର୍ବପ୍ରଥମ ସରକାରୀ ମଂଜୁରୀ ପ୍ରାପ୍ତ ପୁସ୍ତକ ।

ଏହାପରେ ପୂର୍ଣ୍ଣବାବୁ ମୋତେ ୨ୟ ୩ୟ ଶ୍ରେଣୀର ଗଣିତ ବହି ଦିଖଣ୍ଡ ଲେଖିବା ପାଇଁ ବାରମ୍ବାର ଅନୁରୋଧ କରିବାରେ ଲାଗିଲେ । ମୁଁ ବାଧ୍ୟ ହୋଇ କହିଲି, "– ମୋର ସେ ଦିଗରେ ଆଦୌ ଆଗ୍ରହ ନାହିଁ ।''

ଭାବିଲି ପୂର୍ଣ୍ଣବାବୁ ନୀରବ ହୋଇଗଲେ । ମାତ୍ର ସେ ତୁଳସୀପୁର ଉ.ପ୍ରା.ର ପ୍ରଧାନ ଶିକ୍ଷକ ପ୍ରହଲ୍ଲାଦ ପରିଡ଼ାଙ୍କୁ ଉକ୍ତ ଗଣିତ ବହିର ଦାୟିତ୍ୱ ଦେଲେ । ପ୍ରହଲ୍ଲାଦ ବାବୁ କହିଲେ, "ମୁଁ କିଛି ଜାଣେ ନାହିଁ । କେବେ ବି ବହି ଲେଖା କଥା ସ୍ୱପ୍ନରେ ଭାବିନାହିଁ ।'' ପୂର୍ଣ୍ଣବାବୁଙ୍କ ଅନୁରୋଧରେ ସ୍ୱୀକୃତ ହେଲେ । ବହି ଦୁଇଟି ଲେଖିଲେ ମଧ୍ୟ । ବର୍ତ୍ତମାନର ବିଶିଷ୍ଟ କଥାକାର ଓ ଔପନ୍ୟାସିକ ବିଭୂତି ପଟ୍ଟନାୟକ, ସେତେବେଳେ କଲେଜ ଛାତ୍ର । "ଚୋପାଏ ସିନ୍ଦୁର ଦିପଟ ଶଙ୍ଖା'' ଉପନ୍ୟାସଟି ଛାପିବାପାଇଁ ଦାସବ୍ରଦର୍ସଙ୍କୁ ଦେଉଥାନ୍ତି । ବାରମ୍ବାର ଦାସବ୍ରଦର୍ସକୁ ଆସୁଥିବା ଯୋଗୁ ମୋ ସହିତ ତାଙ୍କର ଆତ୍ମୀୟତା ସୃଷ୍ଟି ହୋଇ ସାରିଥାଏ । ପହଲି ପରିଡ଼ା ବିଭୂତି ବାବୁଙ୍କର ଦାଦା ବୋଲି ସେ ମୋତେ କହିଲେ ଓ ଦାଦା ଏବଂ ଆପଣ ମିଶି ଗଣିତ ବହି ଦୁଇଟି ସବ୍‌ମିଟ୍ କରିବା ପାଇଁ ଅନୁରୋଧ କଲେ । ମୁଁ ହଁ କହିଥିଲି । ପହଲିବାବୁ ୧୫ ଦିନ ଭିତରେ ଦୁଇଟି ଯାକ ପାଣ୍ଡୁଲିପି ମୋତେ ଦେଇ କହିଲେ - "ଏ ଦିଗରେ ମୁଁ ଛାତ୍ର । ଆପଣ ମୋର ଗୁରୁ । କିପରି କଅଣ କରାଯିବ ଏଥର କରନ୍ତୁ ।'' ତାଙ୍କ ଆଗ୍ରହ ଓ ବିଭୂତି ବାବୁଙ୍କ ସଂପର୍କକୁ ମନେ ପକାଇ ମୁଁ ପାଣ୍ଡୁଲିପି ଦୁଇଟି ନେଲି । ସେତେବେଳେ ୩ୟରୁ ସପ୍ତମ ପର୍ଯ୍ୟନ୍ତ ଗଣିତ ପୁସ୍ତକ କେବଳ ରହମତ୍ ଅଲ୍ଲିଙ୍କର ଚାଲୁଥିଲା ଓ ସମଗ୍ର ଓଡ଼ିଶାରେ ଅପ୍ରତିଦ୍ୱନ୍ଦୀ ବହିର ମାନ୍ୟତା ମଧ୍ୟ ଲାଭ କରିଥିଲା । ଶତ୍ରୁଘ୍ନ ନାଥ, ନୃସିଂହ ବେହୁରା ଓ ଆଉ କେତେଜଣଙ୍କର ଗଣିତ ବହି ମଂଜୁର ହୋଇଥିଲେ ମଧ୍ୟ କେହି ରହମତ୍ ବାବୁଙ୍କ ସମକକ୍ଷ ହୋଇ ପାରିନଥିଲେ । ମୁଁ ପ୍ରହ୍ଲାଦ ବାବୁଙ୍କ କପି ଦୁଇଟି ପ୍ରଥମେ ନୃସିଂହ ଚରଣ ବେହୁରାଙ୍କୁ ଦେଖାଇ ପରେ ଖୋର୍ଦ୍ଧା ହାଇସ୍କୁଲର ସୁପ୍ରତିଷ୍ଠିତ ଗଣିତ ଶିକ୍ଷକ ରହମତ୍ ବାବୁଙ୍କ ନିକଟକୁ ଏକ ଛୁଟି ଦିନରେ ଯାଇ ପହଞ୍ଚିଲି । ସେ ଅତ୍ୟନ୍ତ ଉଦାର ହୃଦୟରେ ପାଣ୍ଡୁଲିପି ଦୁଇଟିକୁ ଦେଖି ଅନେକ ପରିବର୍ତ୍ତନର ସୂଚନା ପାଣ୍ଡୁଲିପିରେ ଲେଖିଦେଲେ । ମୋର ନୃସିଂହ ବାବୁ ଓ ରହମତ୍ ବାବୁଙ୍କ ସହିତ ଉତ୍ତମ ପରିଚୟ ଥିଲା ।

ଏଥର ବହି ଦୁଇଟିକୁ ମୁଁ ନିଜେ ଭଲ ଅକ୍ଷରରେ ଉତାରି ଦାସବ୍ରଦର୍ସରେ ଦେଲି । ଏତିକି କହିଲେ ଯଥେଷ୍ଟ ହେବ ଯେ କଟକର ସମସ୍ତ ପୁସ୍ତକ ପ୍ରକାଶକ ମୋତେ ବାରମ୍ବାର ଅନୁରୋଧ କରିଥିଲେ । ମୁଁ ସେମାନଙ୍କର ପ୍ରତିଷ୍ଠାନ ଓ ନିଜ ନାମ ମାତ୍ର ଉଲ୍ଲେଖ କରୁଛି । ପ୍ରାୟ ସମସ୍ତଙ୍କୁ ମୁଁ text ଏବଂ non-text ବହି ଦେଇଛି । ସମସ୍ତେ ଯଥା ସମ୍ଭବ ରୟାଲିଟି ମଧ୍ୟ ଦେଇଛନ୍ତି । ସବୁ ବହିରେ ନହେଲେ ମଧ୍ୟ ଅନେକ ବହିରେ ମୁଁ ଲୋକନାଥ ନନ୍ଦ ଓ ଗୁରୁ ଭଗବାନ ନନ୍ଦଙ୍କ ନାମ ଦେଇଛି । ରୟାଲିଟି ମଧ୍ୟ । ଭଗବାନବାବୁ ମୋ ନିଜ ଘରେ ଗୋବିନ୍ଦପୁରରେ ରହି ସବୁ ବହି

ଲେଖାରେ ପ୍ରଭୂତ ସାହାଯ୍ୟ କରିଥିଲେ ।

**ପ୍ରତିଷ୍ଠାନ ଓ ପ୍ରକାଶକଙ୍କ ନାମ**

୧. ଓଡ଼ିଶା ପବ୍ଲିଶିଂ ହାଉସ - ସତ୍ୟ ନାରାୟଣ ମିଶ୍ର
୨. ଦାସ-ବ୍ରଦର୍ସ - ପୂର୍ଣ୍ଣଚନ୍ଦ୍ର ଦାସ
୩. କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର - ଅନନ୍ତ ମିଶ୍ର
୪. କଟକ ପବ୍ଲିଶିଂ ହାଉସ - ଉମାଚରଣ ମହାନ୍ତି
୫. ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ - ଭିକାରୀଚରଣ ଦାସ
୬. ଗ୍ରନ୍ଥ ମନ୍ଦିର - ଶ୍ରୀଧର ମହାପାତ୍ର
୭. କଟକ ଟ୍ରେଡ଼ିଂ କମ୍ପାନୀ - ଆକୁଳି ମିଶ୍ର
୮. ଭାରତ ପବ୍ଲିଶିଂ ହାଉସ - ଶଙ୍କର ମିଶ୍ର
୯. ଓଡ଼ିଶା ବୁକ୍ ଷ୍ଟୋର- ଗୋବିନ୍ଦ ଚରଣ ପାତ୍ର
୧୦. ସାଥୀ ମହଲ - ରାଧାଶ୍ୟାମ ମହାନ୍ତି
୧୧. ସାଥୀ ନିକେତନ - ରାମଚନ୍ଦ୍ର ମହାନ୍ତି
୧୨. ଦାଶରଥୀ ପୁସ୍ତକାଳୟ - ଅରକ୍ଷିତ ଦାସ

ପାଠ୍ୟପୁସ୍ତକ ଜାତୀୟ କରଣ ହୋଇ ଯିବା ପରେ ମୁଁ ୩ୟ ଶ୍ରେଣୀର ସାହିତ୍ୟ ବହି ସବ୍‌ମିଟ କରିଥିଲି । ମାତ୍ର ବହି ନୁହେଁ - ମାତ୍ର ଦୁଇଟି ବା ତିନୋଟି ବିଷୟ ଗ୍ରହଣ କରାଯାଇ ସେ ବାବଦରେ ଯାହା ପାରିଶ୍ରମିକ ଦିଆଗଲା, ତାହା ଥିଲା ଅତି ନଗଣ୍ୟ । ତେଣୁ ପାଠ୍ୟ ପୁସ୍ତକ ଛାଡ଼ି ଶିଶୁ ସାହିତ୍ୟ ଲେଖିବାରେ ମନ ଦେଲି । ଏଥିରେ ମୁଁ ଦାଶରଥୀ ପୁସ୍ତକାଳୟ, ଫ୍ରେଣ୍ଡସ୍ ପବ୍ଲିସର୍ସ, ସତ୍ୟନାରାୟଣ ପ୍ରେସ୍(ବସନ୍ତ ପବ୍ଲିକେଶନ) ଓ ଆଉ କେତେଜଣଙ୍କୁ ବହି ଦେଇଥିଲେ ମଧ୍ୟ ବସନ୍ତ ପବ୍ଲିକେଶନଙ୍କ ବ୍ୟତୀତ ମୋତେ କେହି କିଛି ବି ଦେଇ ନାହାନ୍ତି । ଏଣୁ ଏବେ ମୁଁ ଯାହାସବୁ ସାହିତ୍ୟ ଓ ବୟସ୍କମାନଙ୍କ ପାଇଁ ଲେଖୁଥିବା ପୁସ୍ତକଗୁଡ଼ିକ ନିଜସ୍ୱ ବ୍ୟୟରେ ମୁଦ୍ରିତ କରୁଛି ଏବଂ ସେଗୁଡ଼ିକ ପ୍ରିୟଜନ, ବିଶିଷ୍ଟ ବ୍ୟକ୍ତି ଓ ବିଭିନ୍ନ ସ୍କୁଲ କଲେଜ ଲାଇବ୍ରେରୀକୁ ଦାନ କରିଦେଉଛି ।

ଏ ପର୍ଯ୍ୟନ୍ତ ମୁଁ କେବଳ ମୋର ବହି ଲେଖା ଓ ଆୟ ସଂପର୍କରେ ଅନେକ କଥା ଲେଖି ସାରିଲିଣି । ମାତ୍ର ଯାହା କିଛି ତାହା ଅତି ସଂକ୍ଷିପ୍ତ ଅଟେ । ଯେ କେହି ମୋର ଏ କାର୍ଯ୍ୟରେ ନିଶ୍ଚୟ ସନ୍ଦୀହାନ ହେବା ସ୍ୱଭାବିକ ଯେ ମୁଁ ମୋ ମୂଳ

ଲକ୍ଷ୍ୟରୁ ସଂପୂର୍ଣ୍ଣ ବିଚ୍ୟୁତ ହୋଇ ଆୟ ବୃଦ୍ଧିରେ ନିଜକୁ ଉତ୍ସର୍ଗ କରିଥିଲି । ମାତ୍ର ଏପରି ଭାବନା ସଂପୂର୍ଣ୍ଣ ଅମୂଳକ ଥିଲା । ଭଗବାନ ନନ୍ଦ ଅବସର ନେଇଥିବାରୁ ସେ ମୋ ପାଖରେ ମାସ ମାସ ଧରି ରହୁଥିଲେ । ମୁଁ କେବଳ ତାଙ୍କ ଲେଖାଗୁଡ଼ିକୁ ଯଥା ସମ୍ଭବ ପରିବର୍ତ୍ତନ କରି ଆଉ ଥରେ ଲେଖିବାକୁ ଦେଇ ଦେଉଥିଲି । ମୋର ସ୍କୁଲ ସଂଗଠନ ବା ସ୍କୁଲ ସଂପର୍କୀୟ ଯାବତୀୟ ପ୍ରଚେଷ୍ଟା ଅବ୍ୟାହତ ଥିଲା ।

## ପୁରସ୍କାର ବିତରଣ ଉତ୍ସବ

ଆମ ସ୍କୁଲଟି ମି.ଇ. ସ୍କୁଲ ସହିତ ଗୋଟିଏ ହତାରେ ଥାଏ । ୭/୮ ବର୍ଷ ନିରବଚ୍ଛିନ୍ନ ଭାବରେ କାମ କରି ଆମର ଛାତ୍ରସଂଖ୍ୟା ତଥା ଶିକ୍ଷକ ସଂଖ୍ୟା ବଢ଼ି ଯାଇଥାଏ । ମୁଁ ଏଇ ଛୋଟ ପିଲାଙ୍କୁ ନେଇ ଏକ ପୁରସ୍କାର ବିତରଣୀ ଉତ୍ସବ କରିବା ପାଇଁ ସ୍ଥିର କଲି । ମାତ୍ର ଅନ୍ୟମାନେ ଏପରିକି ମି.ଇ.ସ୍କୁଲର ଶିକ୍ଷକମାନେ ଏହାକୁ ପସନ୍ଦ କରିନଥିଲେ ମଧ୍ୟ ମୋତେ ହତୋତ୍ସାହିତ କରିନଥିଲେ । ମୋ ଶିକ୍ଷକମାନେ ଏହାକୁ ପ୍ରକାରାନ୍ତରେ ବିରୋଧ କରୁଥିଲେ । ମୁଁ ଠିକ୍ ଏହିପରି ଏକ କଳ୍ପନାର ବଶବର୍ତ୍ତୀ ହୋଇ ନିମାପଡ଼ାରେ ଏକ ପୁରସ୍କାର ବିତରଣୀ ଉତ୍ସବ କରିବା ପାଇଁ ବହୁ ବାଧାବିଘ୍ନ, ଥଟ୍ଟା ଓ ଉପହାସର ସମ୍ମୁଖୀନ ହୋଇଥିଲେ ମଧ୍ୟ ଏକ ସର୍ବାଙ୍ଗସୁନ୍ଦର ଉଚ୍ଚପ୍ରଶଂସିତ ଉତ୍ସବ କରିବାରେ ସାଫଲ୍ୟ ଲାଭ କରିଥିଲି । ଓଡ଼ିଶାର ତତ୍‌କାଳୀନ ପ୍ରଧାନ (ମୁଖ୍ୟ) ମନ୍ତ୍ରୀ ପାରଳା ମହାରାଜଙ୍କୁ ସଭାପତିରୂପେ ଆଣି ପାରିଥିଲି । ନିନ୍ଦୁକ, ଥଟ୍ଟା କରୁଥିବା ବ୍ୟକ୍ତିମାନେ ସମସ୍ୱରରେ ମୋ କାର୍ଯ୍ୟର ଖୋଲାଖୋଲି ପ୍ରଶଂସା କରିବାରେ ଶତମୁଖ ହୋଇ ଉଠିଥିଲେ । ହତା ମଧ୍ୟରେ ମି.ଇ.ସ୍କୁଲର ଶିକ୍ଷକ ପର୍ଶୁରାମ ବାବୁ ଏକ ସୁଦୃଶ୍ୟ ମଣ୍ଡପ ପ୍ରସ୍ତୁତ କଲେ । ଆମ ବିଦ୍ୟାଳୟର ଜଣେ ଶିକ୍ଷକ କେତୋଟି ପିଲାଙ୍କୁ ଗୀତ ଓ ଅଭିନୟ ଶିଖାଇଲେ । ସ୍ଥାନୀୟ ବହୁ ଯୁବକ ଅତ୍ୟନ୍ତ ଆଗ୍ରହରେ ମୋତେ ସାହାଯ୍ୟ କଲେ । ବିଭିନ୍ନ ଖେଳ ଖେଳାଇ ସେଥିରୁ କେତେକ ପିଲାଙ୍କୁ ପୁରସ୍କାର ଦେବା ସ୍ଥିର ହେଲା ।

ପୁରୀ ଜିଲା ବୋର୍ଡ଼ର ଅଧ୍ୟକ୍ଷ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କୁ ସଭାପତି ହେବା ପାଇଁ ଅନୁରୋଧ କଲି ଓ ସେ ସମ୍ମତିପ୍ରଦାନ କଲେ । ଆହ୍ୱାନ ସଙ୍ଗୀତ ଦରଡ଼ାର ଶିକ୍ଷକ ଭୋଳିବାବୁ ଲେଖି ଏଠାକୁ ଆସି ଦୁଇଟି ପିଲାଙ୍କୁ ଶିଖାଇଲେ । ସର୍କଲର ସମସ୍ତ ଶିକ୍ଷକଙ୍କୁ ନିମନ୍ତ୍ରଣ କରିଥିଲି ଓ ଅନେକେ ଉପସ୍ଥିତ ହୋଇଥିଲେ ।

ନିର୍ଦ୍ଦିଷ୍ଟ ଦିନରେ ସଭାପତି ଆସିଲେ । ସବୁକାର୍ଯ୍ୟ ଯଥାରୀତି ଚାଲିଲା । ପିଲାମାନେ ମାଲ୍ୟାର୍ପଣ କରିବା ପରେ ମୁଁ ମୋ ହାତରେ ସୂତାର ଏକ ମାଳ ସଭାପତିଙ୍କୁ

ନିଜେ ପିନ୍ଧାଇଥିଲି । ପିଲାମାନଙ୍କ ଆବୃତ୍ତି ଅଭିନୟ ଆଦି ଦେଖି ସଭାପତି ତାଙ୍କ ଭାଷଣରେ ଉଚ୍ଚ ପ୍ରଶଂସା କରିଥିଲେ । ମୁଁ ବାର୍ଷିକ ବିବରଣୀରେ ଅଭାବ ଅସୁବିଧା ସଂପର୍କରେ ବଖରାଏ ଘର ନିତାନ୍ତ ଆବଶ୍ୟକ ବୋଲି ଉଲ୍ଲେଖ କରିଥିଲି ଓ ସଭାପତି ସେ ସଂପର୍କରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଅତି ଉଚ୍ଚକୋଟୀର ସଭାଟିଏ ହୋଇଥିବାରୁ ମୁଁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲି । ଉତ୍ସବର ଯାବତୀୟ ଖର୍ଚ୍ଚ ଓ ପୁରସ୍କାର ଦ୍ରବ୍ୟ କ୍ରୟ ଆଦି ପାଇଁ ଅର୍ଥ ମୁଁ ସଂଗ୍ରହ କରିସାରିଥାଏ । ନିଜ ଉଦ୍ୟମରେ ସଫଳ ହୋଇଥିବାରୁ ମୁଁ ଅନ୍ୟମାନଙ୍କୁ କହିଥିଲି, ଛୋଟପିଲା କହି ଯାହାକୁ ଉପହାସ କରାଯାଉଥିଲା ସେମାନଙ୍କ କୃତିତ୍ୱ ଦେଖି ନିଶ୍ଚୟ ଆତ୍ମ ପ୍ରତ୍ୟୟ ଆସିଥିବ । ଦୃଢ଼ ମନୋବଳ ଆନ୍ତରିକ ଉଦ୍ୟମ କେବେ ବିଫଳ ହୁଏ ନାହିଁ, ଏହାହିଁ ପ୍ରମାଣିତ ହୋଇଥିଲା । ନି.ପ୍ରା. ବିଦ୍ୟାଳୟରେ ପୁରସ୍କାର ବିତରଣୀ ଉତ୍ସବ ଏ ଅଞ୍ଚଳ ପାଇଁ ଏକ ଅଭିନବ ପରିକଳ୍ପନା ଥିଲା ।

## ଅଖିଳ ଭାରତ ଦିଲ୍ଲୀ ଅଧିବେଶନ ପାଇଁ ଡ଼େଲିଗେଟ୍ ୧୯୬୧

ଆଗରୁ କହିଛି, ମୁଁ ପୁରୀଜିଲା ଶିକ୍ଷକ ସଂଘର ଏକ ପ୍ରମୁଖ ସଦସ୍ୟ ମାନ୍ୟତା ପାଇ ସାରିଥାଏ । ହଠାତ୍ ୧୯୬୧ ମସିହାରେ ଦିଲ୍ଲୀଠାରେ ଅଲ୍ ଇଣ୍ଡିଆ ପ୍ରା. ଶି. ଫେଡ଼େରେସନ୍‌ର ଅଧିବେଶନକୁ ମୋତେ ଡେଲିଗେଟ୍ ରୂପେ ନିର୍ବାଚିତ କରାଗଲା ।

ଓଡ଼ିଶାରୁ ନିର୍ବାଚିତ ପ୍ରତିନିଧିମାନେ ଏକ ସ୍ୱତନ୍ତ୍ର ଟ୍ରେନ୍‌ରେ ଯାଇ ଦିଲ୍ଲୀର ମାରଓ୍ୱାଡ଼ି ଧର୍ମଶାଳାରେ ରହିଲୁ । ଜାନୁଆରୀ ମାସର ଶୀତ ଦିଲ୍ଲୀରେ କିପରି ଅନୁଭୂତ ହୁଏ ମୁଁ ପ୍ରଥମ କରି ଅନୁଭବ କରିଥିଲି । ଅଧିବେଶନରେ ଆମ ଡ଼େଲିଗେଟମାନଙ୍କର ବିଶେଷ କିଛି କାର୍ଯ୍ୟ ନଥାଏ । ସେହି ସୁଯୋଗରେ ଆମେ ମିଳିତ ଭାବରେ ବସ୍ ରିଜର୍ଭ କରି ଆଗ୍ରା, ମଥୁରା, ବୃନ୍ଦାବନ ସହିତ ଫତେପୁର ସିକ୍ରି ପର୍ଯ୍ୟନ୍ତ ବୁଲି ଆସିଥିଲୁ । ଦିଲ୍ଲୀସ୍ଥିତ ସମସ୍ତ ଦର୍ଶନୀୟ ସ୍ଥାନ ମଧ୍ୟ ଦେଖିଥିଲୁ । ୪ର୍ଥ ଦିନ ରାଷ୍ଟ୍ରପତି ଭବନ ଓ ମୋଗଲ ଗାର୍ଡ଼େନ୍ ଦେଖିବା ପାଇଁ ଯାଇଥିଲୁ । ମାତ୍ର ଆମକଥା ଛାଡ଼, ଆମ ସାଂସଦ ମଧ୍ୟ ଅକୃତକାର୍ଯ୍ୟ ହେଲେ । ଅନୁମତି ମିଳିପାରିଲା ନାହିଁ । ଜଣେ ମଣିଷ ରହୁଥିବା ସ୍ଥାନକୁ ଦେଖିବା ପାଇଁ ଏତେ ଚେଷ୍ଟା ସତ୍ତ୍ୱେ ଅନୁମତି ନମିଳିବାର ଦୁଃଖ ମୋତେ ଅତ୍ୟନ୍ତ ବ୍ୟଥିତ କରିଥିଲା । ଆଉ ସମୟ ନଥିଲା । ଆମେ ପଞ୍ଚମ ଦିନ ପ୍ରତ୍ୟାବର୍ତ୍ତନ କରିଥିଲୁ । ସବୁ ସୁଖ ମଧ୍ୟରେ ରାଷ୍ଟ୍ରପତି ଭବନ ଦେଖି ନପାରିବାର ଦୁଃଖ ଅଭୁଲା ହୋଇ ରହିଗଲା ।

## ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତି

୧୯୬୨ ମସିହାଟି ଜୀବନର ସର୍ବଶ୍ରେଷ୍ଠ ହର୍ଷ ଉଲ୍ଲାସ ସମୟର ସ୍ମରଣୀୟ ବର୍ଷ । ମୋ ମାନସ ପଟରେ ଏ ପର୍ଯ୍ୟନ୍ତ ଚିର-ଜାଗ୍ରତ ହୋଇ ରହିଅଛି । ଭାରତ ସରକାର ବିଭିନ୍ନ ରାଜ୍ୟର ଶିକ୍ଷକମାନଙ୍କୁ ଏକ ବିଶିଷ୍ଟ ସମ୍ମାନରେ ସମ୍ମାନିତ କରିବା ପାଇଁ ଏହି ପୁରସ୍କାରର ପରିକଳ୍ପନା କରିଥିଲେ । ଓଡ଼ିଶାରୁ ସର୍ବପ୍ରଥମେ ମୋର ଅତିପ୍ରିୟ ସହ-ଲେଖକ ଲୋକନାଥ ନନ୍ଦ ଏହି ସୌଭାଗ୍ୟର ଅଧିକାରୀ ହୋଇଥିଲେ । ଉକ୍ତ ବର୍ଷ ମୁଁ ମଧ୍ୟ ପରୀକ୍ଷା ଦେଇ ଅକୃତକାର୍ଯ୍ୟ ହୋଇଥିଲେ ମଧ୍ୟ ଲୋକନାଥ ଭାଇନାଙ୍କ ସାଫଲ୍ୟ ମୋତେ ସାତିଶୟ ଆନନ୍ଦିତ କରି ପକାଇଥିଲା । ତତ୍ ପରବର୍ଷ ମୁଁ ପୁଣି ଉକ୍ତ ପରୀକ୍ଷା ଦେବା ପାଇଁ ଖୋର୍ଦ୍ଧା ଟ୍ରେନିଂ ସ୍କୁଲକୁ ଗଲି । ଖୋର୍ଦ୍ଧା ହାଇସ୍କୁଲ ହେଡ୍‌ମାଷ୍ଟର ଟ୍ରେନିଂ ସ୍କୁଲ ହେଡ୍‌ମାଷ୍ଟର ଏବଂ ଜିଲା ଇନ୍ସପେକ୍ଟରଙ୍କ ଉପସ୍ଥିତିରେ ମୌଖିକ ପ୍ରଶ୍ନୋତ୍ତର ଅନେକ ଥିଲା । ମାତ୍ର ଗୋଟିଏ ଛପା ପ୍ରଶ୍ନାବଳୀ ସମ୍ବଳିତ ନାନା ପ୍ରଶ୍ନର ଲିଖିତ ଉତ୍ତର ହିଁ ପ୍ରାର୍ଥୀମାନଙ୍କର ଭାଗ୍ୟ ନିର୍ଣ୍ଣାୟକ ଥିଲା । ଏହା ପୂରଣ କରି ଦେବା ପାଇଁ ବୋଧେ ୩/୪ ଘଣ୍ଟା ସମୟ ଦିଆ ଯାଇଥିଲା ।

ଅବିଭକ୍ତ ପୁରୀ ଜିଲାରୁ ଯେତେଜଣ ଶିକ୍ଷକ ଉପସ୍ଥିତ ଥିଲେ, ସମସ୍ତେ ଯଥା ସମୟରେ ଉତ୍ତର କାଗଜ ଦେଇଥିଲୁ । ସର୍ବ ଶେଷରେ ମୁଁ ଏକମାତ୍ର ନିର୍ବାଚିତ ହେବାର ଘୋଷଣା କରାଗଲା । ଏହି କ୍ରମରେ ଓଡ଼ିଶାର ପ୍ରତ୍ୟେକ ଜିଲାରୁ ଜଣେ ଲେଖାଏଁ ବଛାଯିବେ । ସମୁଦାୟ ନିର୍ବାଚିତ ଶିକ୍ଷକମାନଙ୍କ ମଧ୍ୟରୁ ମାତ୍ର ଜଣଙ୍କୁ ଡ଼ି.ପି.ଆଇ. ମହୋଦୟ ଦିଲ୍ଲୀ ଯିବା ପାଇଁ ଆଦେଶ ଦେବେ । ମୁଁ ଖୋର୍ଦ୍ଧାରେ ଲିଖିତ ପରୀକ୍ଷା ଦେବା ପରେ ଆଉ ଆସି ନପାରି ରାତିରେ ଟ୍ରେନିଂ ସ୍କୁଲରେ ରହିଗଲି । ପ୍ରଥମେ ପ୍ରଦେଶ ମଧ୍ୟରୁ କେବଳ ଜଣେ ମାତ୍ର ପ୍ରାଥମିକ ଶିକ୍ଷକଙ୍କୁ ବଛା ଯାଉଥିଲା । ପରେ ଏ ନିୟମ ବଦଳାଯାଇ ପ୍ରାଥମିକ ସ୍ତରରୁ ଏକାଧିକ ଏବଂ ଆହୁରି ପଛରେ ମି.ଇ ଓ ହାଇସ୍କୁଲ ଶିକ୍ଷକମାନଙ୍କୁ ମଧ୍ୟ ଉକ୍ତ ସୁଯୋଗ ଦିଆଗଲା ।

## ପୁରସ୍କାର ଗ୍ରହଣ ପାଇଁ ଦିଲ୍ଲୀଯାତ୍ରା

ଦିଲ୍ଲୀ ଯିବାର ଦୁଇଦିନ ପୂର୍ବରୁ ମୁଁ ଆମ ଶିକ୍ଷାମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କୁ ସାକ୍ଷାତ କରିବାକୁ ଗଲି । କହିବା ବାହୁଲ୍ୟ ଯେ ଜିଲା ବୋର୍ଡ଼ ଚେୟାରମେନ୍ ଥିବା ସମୟରେ (୧୯୪୮) ସେ ମୋତେ ଜବରଦସ୍ତ ବଦଳି ଆଦେଶ ଦେଇ ନିମାପଡ଼ାରୁ ବାଲକାଟି ଟାଣି ଆଣିଥିଲେ । ଖାଲି ସେତିକି ନୁହେଁ, ସରକାରୀ ସର୍କଲ ଇନ୍ସପେକ୍ଟରଙ୍କ ପରି ସରକାରୀ ଚାକିରୀ ନକରି ଏଇ ସ୍କୁଲର ଉନ୍ନତିରେ ଲାଗିପଡ଼ ବୋଲି ମଧ୍ୟ ପରାମର୍ଶ ଦେଇଥିଲେ ।

ସେ ଦିନ ମୋତେ ଦେଖୁ ଦେଖୁ ଅତ୍ୟନ୍ତ ଉଲ୍ଲସିତ ହୋଇ କହିଲେ, "- ଆଜି ମୁଁ ବହୁତ ଖୁସି । ବାଲକାଟି, ପୁରୀଜିଲ୍ଲା ଏପରିକି ଓଡ଼ିଶାରେ ତୁମେ ଜଣେ ଉପଯୁକ୍ତ ଆଦର୍ଶ ଶିକ୍ଷକ ସମ୍ମାନ ଲାଭ କରି ପାରିଛ । ସବ୍-ଇନ୍ସପେକ୍ଟର ହୋଇଥିଲେ ଶିକ୍ଷକ ଜୀବନର ସର୍ବଶ୍ରେଷ୍ଠ ପୁରସ୍କାର ଲାଭ ତୁମ ପାଇଁ ସ୍ୱପ୍ନ ହୋଇଥାନ୍ତା । ତୁମକୁ ଦିଲ୍ଲୀର ଯେକୌଣସି ଷ୍ଟେସନରେ ଓହ୍ଲାଇଲେ ମଧ୍ୟ ଗନ୍ତବ୍ୟ ସ୍ଥାନ ହୁମାୟନସ୍ ଟମ୍ବରେ ପହଞ୍ଚାଇ ଦେବାର ସୁବ୍ୟବସ୍ଥା କରାଯାଇଛି । ସେପରିକିଛି ନହୋଇଥିଲେ ମୁଁ ଆମ ଡ଼ି.ପି.ଆର୍.ଓ. ଚନ୍ଦ୍ର ନାୟକଙ୍କୁ ତୁମ ସହିତ ଦିଲ୍ଲୀ ପଠାଇଥାନ୍ତି । ଯାଅ ।'' ନିର୍ଦ୍ଦିଷ୍ଟ ଦିନର ପୂର୍ବଦିନ ମୁଁ ଦିଲ୍ଲୀ ଷ୍ଟେସନରେ ପହଞ୍ଚିଲି । ସେଠାରୁ ହୁମାୟନସ୍ ଟମ୍ବର ରହଣି ସ୍ଥାନକୁ ସରକାରୀ ଗାଡ଼ି ମୋତେ ଓ ଅନ୍ୟ ଜିଲ୍ଲାରୁ ଆସିଥିବା ଶିକ୍ଷକ ଶିକ୍ଷୟତ୍ରୀମାନଙ୍କୁ ନେଇ ଯାଇଥିଲା ।

ରହଣି ସ୍ଥାନରେ ଆମ୍ଭମାନଙ୍କ ପାଇଁ ଅଭାବନୀୟ ଅପୂର୍ବ ବ୍ୟବସ୍ଥାମାନ କରାଯାଇଥିଲା । ଯାହାକୁ ମୁଁ ଏକାନ୍ତୁହେଁ, ଗାଁ ଗହଳର ମାଷ୍ଟ୍ରେ ଭାବରେ ପରିଚିତ ଯେକୌଣସି ଶିକ୍ଷକର କଳ୍ପନାତୀତ ଥିଲା । ପ୍ରତି କୋଠରୀରେ ୩ ଜଣ କରି ଶିକ୍ଷକଙ୍କର ରହିବା ବ୍ୟବସ୍ଥା ସହିତ ସମସ୍ତଙ୍କ ପାଇଁ ଏକ ଅସ୍ଥାୟୀ ଡାକ୍ତରଖାନା ମଧ୍ୟ ଖୋଲା ଯାଇଥିଲା । ପ୍ରତିଦିନ ଲଣ୍ଡ୍ରିବାଲାଟିଏ ଆସି ପୋଷାକ ପତ୍ର ସଫାକରି ଆଣି ଦେଇ ଯାଉଥିଲା । ସ୍ନାନ ପାଇଁ ଦୁଇଟି ପାଇପ୍‌ରୁ ଗରମ ଓ ଥଣ୍ଡା ପାଣିର ବ୍ୟବସ୍ଥା ସାଙ୍ଗକୁ ଭୋଜନ ବ୍ୟବସ୍ଥା ଆହୁରି ଆକର୍ଷଣୀୟ ଥିଲା । ବଡ଼ ବଡ଼ ଟେବୁଲ୍ ଉପରେ ପାତ୍ର ଭରି ହୋଇ ଖାଦ୍ୟଦ୍ରବ୍ୟ ଥୁଆ ହୋଇଥାଏ । ୫/୬ ଶିକ୍ଷକ ଚଉକିରେ ବସି ଟେବୁଲ୍‌ରୁ ପ୍ଲେଟ୍‌କୁ ନେଇ ଖାଇବେ । ପରିବେଷଣ କରିବା ବ୍ୟବସ୍ଥା ନଥିଲା । ପାଖରେ ଠିଆ ହୋଇଥିବା ଯୋଗାଣିଆ ପାତ୍ର ଖାଲି ହେବା ପୂର୍ବରୁ ପୁଣି ସେହି ପ୍ରକାର ଆଣି ଖାଦ୍ୟ ଭର୍ତ୍ତି କରି ଦେଉଥାଏ । ଭୋଜନ ଶେଷରେ ନିଜ ନିଜ କୋଠରୀକୁ ଫେରି ଦେଖୁ ଟେବୁଲ୍ ଉପରେ କମଳା, କଦଳୀ, କଟା ସେଉ ଓ କିଛି ଅଙ୍ଗୁର ଆଦିର ଏକ ଚାଙ୍ଗୁଡ଼ି ରଖା ଯାଇଥାଏ । ସେସବୁର ବର୍ଣ୍ଣନା ବହୁ ସମୟ ଲାଗିବ । ସ୍ଥୂଳତଃ ଏତିକି କହିଲେ ଯଥେଷ୍ଟ ହେବ ଯେ ଜଣେ ସ୍ୱଳ୍ପ ବେତନଭୋଗୀ ଅତି ସାଧାରଣ ଶିକ୍ଷକଙ୍କୁ ଯେଉଁ ସମ୍ମାନର ବ୍ୟବସ୍ଥା କରାଯାଇଥାଏ, ତା ଅକଳ୍ପନୀୟ ଅଟେ ।

## ଆମ ସ୍କୁଲ ଉ.ପ୍ରା.ରେ ପରିଣତ ହେବା

ଖୁବ୍ ସମ୍ଭବ ୬୦-୬୧ ମସିହା ବେଳକୁ ଆମ ନି.ପ୍ରା. ଟି ଉ.ପ୍ରା.ରେ ପରିବର୍ତ୍ତିତ ହୋଇ ମି.ଇ. ସ୍କୁଲରୁ ୪ର୍ଥ ଓ ୫ମ ଶ୍ରେଣୀ ଉଠାଇ ଦିଆଗଲା । ମି.ଇ. ସ୍କୁଲର ୬ଷ୍ଠ ଓ ୭ମ ଶ୍ରେଣୀର ଛାତ୍ର ସଂଖ୍ୟା ଖୁବ୍ ଭଲ ଥିଲା । ଏହାର ଏକମାତ୍ର

କାରଣ - ପ୍ରତିବର୍ଷ ଆମ ୩ୟ ଶ୍ରେଣୀରୁ ବହୁ ଛାତ୍ର ମି.ଇ.ସ୍କୁଲରେ ନାମ ଲେଖାଉଥିଲେ । ଏହି କ୍ରମବର୍ଦ୍ଧିତ ଛାତ୍ର ସଂଖ୍ୟାକୁ ଦେଖି ପଣ୍ଡିତ ଗୋପୀନାଥ ନାୟକ ଆମର ହତା ଭିତରେ ଏକ ହାଇସ୍କୁଲ ସ୍ଥାପନ କରିବାର ପ୍ରସ୍ତାବ ଆଗତ କଲେ । ସବୁ ଶିକ୍ଷକ ଓ ଦୁଇ ସଂପାଦକ ଏଥିରେ ସମ୍ମତି ପ୍ରଦାନ କରିଥିଲେ । ପଣ୍ଡିତ ମହାଶୟ ଏପରି ନିରଳସ ନିଷ୍ଠାପର କର୍ମୀ ଯେ ସେ କିଛି ଆରମ୍ଭ କଲେ ଶେଷ ନକରିବା ଯାଏ ନିଃଶ୍ୱାସ ନିଅନ୍ତି ନାହିଁ । ତାଙ୍କରି ଅଦମ୍ୟ ଓ ଅକ୍ଳାନ୍ତ ପରିଶ୍ରମର ଫଳସ୍ୱରୂପ ବାଳକାଟିରେ ଡାକ୍ତରଖାନା ପ୍ରତିଷ୍ଠିତ ହେଲା ଓ ସେହି ମହାଶୟଙ୍କ ଉଦ୍ୟମର ଫଳଶ୍ରୁତି ରୂପେ ବାଳକାଟିରେ ଏକ ହାଟ ମଧ୍ୟ ଆରମ୍ଭ କରାଯାଇଥିଲା ।

ହାଇସ୍କୁଲ ପାଇଁ ଘର ଓ ଶିକ୍ଷକର ଅପରିହାର୍ଯ୍ୟ ଆବଶ୍ୟକତା ସହିତ ପ୍ରଚୁର ଅର୍ଥର ପ୍ରୟୋଜନୀୟତା ମଧ୍ୟ ଦେଖାଗଲା । ପଣ୍ଡିତ ଗୋପୀନାଥ ନାୟକଙ୍କୁ ଆମେ ଶିକ୍ଷକମାନେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିଥାଉ । ପ୍ରତିଘରୁ ମୁଷ୍ଟି ଭିକ୍ଷା, ବଡ଼ ବଡ଼ ମହାଜନମାନଙ୍କ ଠାରୁ ଆର୍ଥିକ ଅନୁଦାନ ପାଇଁ ଆମ୍ଭେମାନେ ସମ୍ମିଳିତ ଭାବରେ ଉଦ୍ୟମରତ ଥିଲୁ । ସ୍ଥାନୀୟ ପଣସପାଟଣା ଲାଇବ୍ରେରୀର ପ୍ରଶସ୍ତ ଗୃହଟିରେ ଅଷ୍ଟମ ଶ୍ରେଣୀ ଖୋଲାଗଲା । ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ହେଲେ ମହାଦେବ ଦାସ । ୭ମରୁ ଯେତେ ପିଲା ଉତ୍ତୀର୍ଣ୍ଣ ହେଲେ, ସେ ସମସ୍ତ ଛାତ୍ର ୮ମ ଶ୍ରେଣୀରେ ନାମ ଲେଖାଇଲେ । ମାଇନର ସ୍କୁଲ ଶିକ୍ଷକଙ୍କ ସହିତ ମୁଁ ମଧ୍ୟ ଅଷ୍ଟମ ଶ୍ରେଣୀର ସାହିତ୍ୟ ପଢ଼ାଉଥାଏ । ମି.ଇ. ସ୍କୁଲର ଶିକ୍ଷକ ଅନ୍ୟାନ୍ୟ ବିଷୟ ପଢ଼ାଉଥାନ୍ତି ।

ନବମ ଶ୍ରେଣୀପାଇଁ ସ୍ଥାନାଭାବ ହେଲା । ମି.ଇ.ସ୍କୁଲର ଗୋଟିଏ କୋଠରୀକୁ ନେଇ ନବମ ଶ୍ରେଣୀ ପରିଚାଳିତ ହେଲା ।

ଆମ ସ୍କୁଲ ଉ.ପ୍ରା.ରେ ପରିଣତ ହେବା ପରେ ମୁଁ ଦ୍ୱିଗୁଣ ଉତ୍ସାହରେ ଲାଗିପଡ଼ିଲି । ଛାତ୍ରଛାତ୍ରୀଙ୍କ ସଂଖ୍ୟା ବିଶେଷ ବୃଦ୍ଧି ପାଇବାରେ ଲାଗିଲା । ବାଳକାଟିରେ ମା ଲକ୍ଷ୍ମୀଙ୍କ ସହିତ ଦେବୀ ସରସ୍ୱତୀଙ୍କ ସହାବସ୍ଥାନର ଦ୍ୱାର ଉନ୍ମୁକ୍ତ ହେବାରେ ଲାଗିଲା । ହାଇସ୍କୁଲ ହୋଇଯିବା ଫଳରେ ଆମ ଉ.ପ୍ରା. ସ୍କୁଲକୁ ଦୂରବର୍ତ୍ତୀ ସ୍ଥାନରୁ ଛାତ୍ର ଆସିବାରେ ଲାଗିଲେ । ପ୍ରଥମତଃ ଆମ ସ୍କୁଲର ସୁନାମ ଓ ଦ୍ୱିତୀୟତଃ ବଡ଼ଭାଇ ହାଇସ୍କୁଲରେ ପଢ଼ିଲେ ସାନ ଭାଇଟି ତା ସହିତ ଆସିବାକୁ ଅଭିଭାବକମାନେ ସୁବିଧାଜନକ ମନେ କରୁଥିଲେ ।

କ୍ରମେ ଅବସ୍ଥା ଏପରି ହେଲାଯେ ଯେ ଆମ ସ୍କୁଲ ଠାରୁ ଦୂରବର୍ତ୍ତୀ ସତ୍ୟଭାମାପୁର, ହୀରାପୁର, ଧଉଳି, ଉତ୍ତରା, ପୁବା, ପାଟଳୀକୁଦା, ଯାଇନାବାଦ,

ଗୋବିନ୍ଦପୁର, ସିଉଳାର ପିଲାମାନେ ଆସିଲେ । ଖାଲି ସେତିକି ନୁହେ, ବିଶୁନିଆପଡ଼ା, ବାରୁଦଖାନା, ରଣପୁର, କଇକଥା, ବୋଧଖଣ୍ଡି, ରଣପୁର, ମରକଣା –ଏପରିକି ବିଶ୍ୱନାଥପୁର ଓ ଗାରଡ଼ି ପାଞ୍ଚଣରୁ ପିଲାମାନେ ୪ର୍ଥ ୫ମରେ ନାମ ଲେଖାଇଲେ ।

ବର୍ଦ୍ଧିଷ୍ଣ ଛାତ୍ର ସଂଖ୍ୟାକୁ ଆଖି ଆଗରେ ରଖି ମୁଁ ସ୍କୁଲର ଦକ୍ଷିଣ ଦିଗକୁ ଏକ ବଖରା ଘର ବଢ଼ାଇ ଥିଲି । ହାଇସ୍କୁଲଟି ହୋଇଯିବାରୁ ସମସ୍ତେ ସ୍ଥାନାଭାବ ଉପଲବ୍ଧି କଲେ । କାରଣ ୫ମରୁ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ର ସଂଖ୍ୟାହିଁ ମି.ଇ. ଓ ପରେ ହାଇସ୍କୁଲ ଛାତ୍ରସଂଖ୍ୟା ବୃଦ୍ଧିର କାରଣ ହୋଇ ଉଠିଲା ।

## ନିମାପଡ଼ା ଡ଼ାଞ୍ଚାରେ ଛାତ୍ରାବାସର ଚିନ୍ତା

ନିମାପଡ଼ା ଅବସ୍ଥାନ କାଳରେ ମୁଁ ଛାତ୍ରାବାସର ପରିକଳ୍ପନା ଓ ତାହାକୁ ସାଫଲ୍ୟମଣ୍ଡିତ କରିବାର ବିବରଣୀ ପ୍ରଦାନ ପୂର୍ବରୁ କରି ସାରିଛି । ଏବେ ଦୂର ଦୂରାନ୍ତରର ମି.ଇ. ସ୍କୁଲର ଛାତ୍ରାବାସରେ ଆମ ୪ର୍ଥ ୫ମର ବହୁଛାତ୍ରଙ୍କୁ ମୁଁ ହଷ୍ଟେଲ୍‌ରେ ରଖିବା ପାଇଁ ଅଭିଭାବକମାନଙ୍କୁ ପ୍ରଭାବିତ କରି କୃତକାର୍ଯ୍ୟ ମଧ୍ୟ ହେଲି । ଫଳତଃ ହଷ୍ଟେଲ୍‌ର ଛାତ୍ରସଂଖ୍ୟା ୩୦ ରୁ ୪୦ ପର୍ଯ୍ୟନ୍ତ ବଢ଼ିଗଲା ଓ ମୁଁ ତା'ର ପରିଚାଳନା ଦାୟିତ୍ୱ ନେଇ ସଫେଇ ପ୍ରାର୍ଥନା ଆଦି ବହୁ ଆଶ୍ରମ ନିୟମ ପ୍ରଚଳିତ କରିଦେଲି । ମି.ଇ. ଓ ହାଇସ୍କୁଲର ଶିକ୍ଷକ କେତେଜଣ ହଷ୍ଟେଲରେ ରହିବା ଫଳରେ ଛାତ୍ରାବାସଟି ଏକାନ୍ତ ଆକର୍ଷଣୀୟ ହୋଇ ଉଠିଲା । ମୁଁ ୪ର୍ଥ ୫ମର ହଷ୍ଟେଲ୍‌ରେ ରହୁଥିବା ପିଲାମାନଙ୍କର ଅଧ୍ୟୟନ ପାଇଁ ଦୁଇଓଳି (ସକାଳ, ରାତି) ସମୟ ଦେଉଥିଲି । ସ୍ଥୂଳତଃ ମୁଁ ମୋ ନିଜ ଘର କଥା ପ୍ରାୟ ଭୁଲି ଯାଇଥିଲି ।

୫ମ ଶ୍ରେଣୀ ମଧ୍ୟ ସେକ୍ସନ ହେବାରୁ ମୋର ମୁଣ୍ଡବ୍ୟଥା ବଢ଼ିଗଲା । କ୍ୟାମ୍ପସ୍ ଭିତରେ ଆଉ ଅଧିକ କୋଠରୀ ନାହିଁ । ଗୋଟିଏ ଶ୍ରେଣୀରେ ୬୦-୭୦ ପିଲାଙ୍କୁ ବସାଇ ପଢ଼ାଇବା ଅସମ୍ଭବ ହୋଇ ଉଠିଲା । ମୁଁ ଆଗରୁ ନୂଆକରି ବଢ଼ାଇଥିବା ଶ୍ରେଣୀ କୋଠରୀକୁ ପୁଣି ବଢ଼ାଇ ଆଉ ଏକ କୋଠରୀର ମୂଳଦୁଆ ପକାଇବାକୁ ନିଅଁ ଖୋଳିଲି ।

## ବିଶୃଙ୍ଖଳାର ଅୟମାରମ୍ଭ

ଅତୀବ ଦୁଃଖର କଥା, ହାଇସ୍କୁଲ ହେଡ୍‌ମାଷ୍ଟ୍ରେ ମୋର ଏତାଦୃଶ କାର୍ଯ୍ୟକୁ ଆଦୌ ବରଦାସ୍ତ କରି ପାରିନଥିଲେ । ସେ ଗୁଡ଼ିଏ ପିଲାଙ୍କୁ ପଠାଇ ମୁଁ ଖୋଳିଥିବା ନିଅଁକୁ ସଂପୂର୍ଣ୍ଣ ପୋତିଦେଲେ । ମୋ ଉପସ୍ଥିତିରେ ମୁଁ ଖୋଳାଇଥିବା ନିଅଁକୁ

ପୋତା ଯିବା ପରି ଦାରୁଣ ଅପମାନର ଜ୍ୱାଳା ମୁଁ ସହ୍ୟ କରିପାରିଲି ନାହିଁ । ସଙ୍ଗେ ସଙ୍ଗେ ସିଧା ହେଡ୍‌ମାଷ୍ଟର ଅଫିସ୍‌ରେ ପଶି ତାଙ୍କୁ ଏ ଅନ୍ୟାୟର ଦୃଢ଼ ପ୍ରତିବାଦ ଜଣାଇଲି । ହେଡ୍‌ମାଷ୍ଟର କିଛି ଅନ୍ୟାୟ କରିଥିବା ସ୍ୱୀକାର ନକରି କହିଲେ, "ହାଇସ୍କୁଲର ବହୁତ ଘର ଦରକାର । ତେଣୁ ଏ କମ୍ପାଉଣ୍ଡ ଭିତରେ ଆଉ କୌଣସି କାର୍ଯ୍ୟ କାହାକୁ କରିବାକୁ ଦିଆଯିବ ନାହିଁ ।'' ମୁଁ ସଂଯମ ହରାଇ କହିଲି, " – ମହାଶୟ, ଆପଣ ସଂପୂର୍ଣ୍ଣ ଭୁଲିଗଲେଣି ଯେ ଏ ସମୁଦାୟ ପ୍ଲଟ୍‌ଟି ପ୍ରାଇମେରୀ ସ୍କୁଲ ନାମରେ ରେକର୍ଡ଼ଭୁକ୍ତ ଓ ପ୍ରାଇମେରୀ ସ୍କୁଲ ହିଁ ଏଠାରେ ସର୍ବପ୍ରାଚୀନ । ସ୍ଥାନୀୟ ଲୋକଙ୍କର ଶିକ୍ଷାଗତ ଯୋଗ୍ୟତା ବୃଦ୍ଧି ପାଇଁ ଏ compound ଭିତରେ ଆପଣଙ୍କୁ ସ୍ଥାନ ଦିଆଗଲେ ମଧ୍ୟ ବାସ୍ତବ ମାଲିକ ପ୍ରାଇମେରୀ ସ୍କୁଲ, ଏକଥାକୁ କୌଣସି ମତେ ଅସ୍ୱୀକାର କରି ହେବ ନାହିଁ ।'' ମାତ୍ର ହେଡ୍‌ମାଷ୍ଟରଙ୍କ ମନରେ ମୋ ପ୍ରତିବାଦର କୌଣସି ପ୍ରଭାବ ଅନୁଭୂତ ହେଲା ନାହିଁ ।

ମୁଁ ଫେରି ଆସି ଆମ ସଂପାଦକ ଓ କେତେକ ଅଭିଭାବକଙ୍କୁ ଡକାଇଲି । ସମସ୍ତେ ଖୁବ୍ ଉଗ୍ର ମନ୍ତବ୍ୟ ଦେଲେ । ମାତ୍ର ହେଡ୍‌ମାଷ୍ଟରଙ୍କୁ ସାକ୍ଷାତ କରିବାକୁ କେହି ଇଚ୍ଛା କରି ନଥିଲେ ।

ଏହି ସମୟକୁ ହାଇସ୍କୁଲର ସଂପାଦକ ରଘୁନାଥ ନାୟକ (ଆଡ଼ଭୋକେଟ୍) ଦାୟିତ୍ୱ ତ୍ୟାଗ କରିଥିବାରୁ ନିମାଇ ଚରଣ ମହାନ୍ତି ଆଡ଼୍‌ଭୋକେଟ୍ ସଂପାଦକ ଥାଆନ୍ତି । ହାଇସ୍କୁଲ ମେନେଜିଂ କମିଟି ବସିଲା । ମୋତେ ଉକ୍ତ କମିଟିରେ ଉପସ୍ଥିତ ହେବା ପାଇଁ ଚିଠିଟିଏ କରାଯାଇଥିଲା । ମୁଁ ଆଗ୍ରହର ସହିତ ଉପସ୍ଥିତ ହୋଇ କହିଲି; – "ଏଇ ପ୍ରାଇମେରୀ ସ୍କୁଲଟି ମାଇନର ଓ ହାଇସ୍କୁଲର ଜନ୍ମଦାତା । ସମୁଦାୟ ପ୍ଲଟ୍‌ଟିର ମାଲିକାନା କେବଳ ପ୍ରାଇମେରୀ ସ୍କୁଲର । ସମସ୍ତ ତିନିଗୋଟି ଅନୁଷ୍ଠାନ ବାଳକାଟିର ହୋଇଥିବାରୁ ଆମେ ଆଗ୍ରହର ସହିତ ଅଗ୍ରସର ହେଉଥିଲୁ । ମାତ୍ର ଏବେ ସ୍ପଷ୍ଟ ହୋଇଗଲା ଯେ ମରୁଭୂମିର ସାଧୁ ଓ ଓଟ ଉପାଖ୍ୟାନ ପୁନରାବୃତ୍ତି ହେବାକୁ ଉପକ୍ରମ କଲାଣି । ବର୍ତ୍ତମାନ ଘରର ମାଲିକଙ୍କୁ ପଦାକୁ ଯିବାକୁ ପଡ଼ିବ ଓ କେବଳ ଓଟଟି ପାଇଁ ଘର ଛାଡ଼ି ଦେବାକୁ ହେବ । ଧନ୍ୟବାଦ, ମୁଁ ମୋ ଅତୀତ କର୍ମର ପୁରସ୍କାର ପାଇ ହେଡ୍‌ମାଷ୍ଟର ଓ କମିଟିଙ୍କ ନିକଟରେ କୃତଜ୍ଞତା ଜଣାଇବାକୁ ଭାଷା ପାଉନାହିଁ ।''

ସଂପାଦକ ଆଡ଼୍‌ଭୋକେଟ୍ କହିଲେ, " – ଯଥାର୍ଥ କହିଛନ୍ତି । ବାଳକାଟି ଅଞ୍ଚଳରେ ଏହା ଏକମାତ୍ର ପ୍ରାଇମେରୀ ଥିଲା । ଏବେ ନୂଆ ପାଟଣା, ବସନ୍ତ ପେଡ଼ି, ପ୍ରତାପ ଆଦି ୩/୪ଟି ପ୍ରାଇମେରୀ ହୋଇ ଯିବାରୁ ପ୍ରାଇମେରୀ ସ୍କୁଲର ଆବଶ୍ୟକତା

ନାହିଁ କହିଲେ ଚଳେ । ବର୍ତ୍ତମାନ ହାଇସ୍କୁଲ ହିଁ ଜନସାଧାରଣଙ୍କର ଏକମାତ୍ର କାମ୍ୟ । ତେଣୁ ଆମେ ଏଠାରୁ ପ୍ରାଇମେରୀ ସ୍କୁଲକୁ ସଂପୂର୍ଣ୍ଣ ଉଠାଇବାର ବ୍ୟବସ୍ଥା କରିବୁ ।''

ଏତିକି ଶୁଣିବା ମାତ୍ରେ ଭାରସାମ୍ୟ ହରାଇ କହି ଉଠିଲି - "ଆପଣମାନଙ୍କର ଏ ମନ୍ଦଉଦ୍ଦେଶ୍ୟକୁ କଦାପି ସଫଳ ହେବା ପାଇଁ ଦେବି ନାହିଁ । ଶେଷ ପର୍ଯ୍ୟନ୍ତ 'ସତ୍ୟର ଜୟ' ଏହାହିଁ ପ୍ରମାଣିତ କରିବାକୁ ଆପ୍ରାଣ ଚେଷ୍ଟା କରିବି । ପ୍ରାଇମେରୀ ସ୍କୁଲ ହାଇସ୍କୁଲର ଜନ୍ମଦାତା । ପିତାକୁ ପୁତ୍ର ଉପେକ୍ଷା ବା ଅପମାନିତ କରି ପ୍ରଶଂସିତ ହେବାର ନଜିର କୌଣସିଠାରେ ନାହିଁ ।'' କାହାରି ଉତ୍ତର ବା ବ୍ୟଙ୍ଗୋକ୍ତି ଶୁଣିବା ପାଇଁ ମୋର ଧୈର୍ଯ୍ୟ ନଥିଲା । ଚାଲି ଆସିଲି ।

## ମୋକଦ୍ଦମାର ସୂତ୍ରପାତ

ସେଦିନ ମିଟିଂର ଆଲୋଚନା ମୋତେ ଏକାନ୍ତ ଭାବରେ ମର୍ମାହତ କରିଥିଲା । ମୁଁ 'ଶରୀରଂ ବା ପାତୟେତ୍' କୁ ମୂଳମନ୍ତ୍ରକରି ମୋର ବନ୍ଧୁ ଜିଲା ବୋର୍ଡ଼ର ଚେୟାର୍‌ମେନ୍ ପଦ୍ମଚରଣ ସାମନ୍ତ ସିଂହାରଙ୍କୁ ସବୁକଥା ଜଣାଇବା ପରେ ସେ କହିଲେ, " - ତୁମେ ତ ନାଳଟିଏ ଖୋଳି କୁମ୍ଭୀରଙ୍କୁ ଆସିବାର ବାଟ ସଫା କରିଦେଲ । ଏବେ ସମ୍ଭାଳ । ବହୁ ଆଲୋଚନା ପରେ ଭୁବନେଶ୍ୱରରେ ମୋକଦ୍ଦମା ଦାଏର କରିବା ପାଇଁ ସେ ପରାମର୍ଶ ଦେଲେ । ଆମ ସ୍କୁଲ ସଂପାଦକ ହରିବାବୁ ମକଦ୍ଦମା ଦାଏର କଲେ । ପଦ୍ମବାବୁ ଭୁବନେଶ୍ୱର ଏସ୍.ଡ଼ି.ଓ ତହସିଲଦାର ଓ ବାଲିଅନ୍ତା ବି.ଡ଼ି.ଓଙ୍କୁ ଚିଠି କରି ନିଜେ ବାଲକାଟି ଆସିଲେ । ତହସିଲଦାର୍ ମାପଚୁପ କରି ଯଥାର୍ଥ ରିପୋର୍ଟଟିଏ ଦେବାପରେ ଏସ୍.ଡ଼ି.ଓ ଦ୍ୱିଜବାର କାନୁନ୍‌ଗୋ ଏହାର ପରିସମାପ୍ତି ପାଇଁ ଉଦ୍ୟମ କଲେ । ମାତ୍ର ହାଇସ୍କୁଲ କର୍ତ୍ତୃପକ୍ଷ ଯାହାହେଲେ ବି ଜବରଦସ୍ତ ଦଖଲ କରି ଏ ହତାରୁ ପ୍ରାଇମେରୀର ମୂଳୋତ୍ପାଟନ କରିବାକୁ ସ୍ଥିର ସଂକଳ୍ପ ବୋଲି ଜଣାଇ ଦେବାରେ ଦ୍ୱିଜବାବୁ ଅନନ୍ୟୋପାୟ ହୋଇ ସତ୍ୟପ୍ରିୟ ବାବୁଙ୍କ ସହିତ ଆଲୋଚନା କଲେ । ସେତେବେଳକୁ ଆମକୁ ବହୁଲୋକ ସମର୍ଥନ କରୁଥିଲେ । ସାହି ସାହି ଭିତରେ ଗଣ୍ଡଗୋଳ ହୋଇ ପରିଣତି ଖରାପ ଆଡ଼କୁ ଗତି କରିବାର ସମ୍ଭାବନା ଦାନା ବାନ୍ଧିବାରେ ଲାଗିଲା । ଦିନେ ଆମ ଚେୟାର୍‌ମେନ୍ ମୋତେ ଦୃଢ଼ ସ୍ୱରରେ କହିଲେ, " - ହାଇସ୍କୁଲ, ମାଇନର ସ୍କୁଲ ଓ ପ୍ରାଇମେରୀ ସ୍କୁଲକୁ କିପରି ଏହି ଗୋଟିଏ ହତା ମଧ୍ୟରେ ପରିଚାଳିତ ହେବ, ସେକଥା ଚିନ୍ତା କରାଯିବ । ନଚେତ୍ ତିନୋଟି ଯାକ ଅନୁଷ୍ଠାନକୁ ମୂଳପୋଛ କରିବାକୁ ଜନଚେତନା ସୃଷ୍ଟି କରିବାକୁ ମୁଁ ବାଧ୍ୟ ହେବି ।''

ସତ୍ୟପ୍ରିୟ ବାବୁ ଖୁବ୍ ଦୁଃଖିତ ହୋଇ କହିଲେ, " – ଅବସ୍ଥା କ୍ରମେ ଖରାପ ଆଡ଼କୁ ଯାଉଛି । ବର୍ତ୍ତମାନ ଆମକୁ ଭିନ୍ନ ଭାବରେ ଚିନ୍ତା କରିବାକୁ ହେବ । ପ୍ରାଇମେରୀ ହିଁ ଅନ୍ୟ ସବୁ ଅନୁଷ୍ଠାନର ଜନନୀ । ତାକୁ ଉପେକ୍ଷା କରିବା ଅର୍ଥ ନିଜ ଗୋଡ଼ରେ କୁରାଢ଼ୀ ମାରିବା । ହରିବାବୁ କହନ୍ତୁ, କିପରି ଏହାର ସମାଧାନ ହେବ ।'' ହରିବାବୁ ମୋ ଆଡ଼କୁ ଚାହିଁ କହିଲେ, " ସାର୍, କଅଣ ଚିନ୍ତା କରିଛନ୍ତି ଆଗ ତାଙ୍କଠାରୁ ବୁଝିବା ମୋର ଇଚ୍ଛା ।''

ବିଶୃଙ୍ଖଳା ଆରମ୍ଭ ହେବା ପରଠାରୁ ମୁଁ ହାଇସ୍କୁଲଠାରୁ ଦୂରରେ ରହିବାର ନାନା ଉପାୟ ଚିନ୍ତା କରୁଥିଲି । ସବୁଠାରୁ ଉପାଦେୟ ପ୍ରସ୍ତାବଟି ମୁଁ ପ୍ରକାଶ କରି କହିଲି - ମୁଁ ଏହି ଉ.ପ୍ରା. ସ୍କୁଲକୁ ଜିଲାରେ ଏକ ଆଦର୍ଶ ସ୍କୁଲର ମାନ୍ୟତା ଦେଇଛି । ତେଣୁ ମୋର ପ୍ରସ୍ତାବ ବର୍ତ୍ତମାନ ସ୍କୁଲର ଉତ୍ତର ଦିଗରେ ମାଇନର ସ୍କୁଲର ଯେଉଁ ପ୍ରଶସ୍ତ ପଡ଼ିଆଟି ଅଛି ତାକୁ ପ୍ରାଇମେରୀକୁ ଦିଆଯାଉ । ହାଇସ୍କୁଲ ଉ.ପ୍ରା.ର ସମସ୍ତ ଘର ନିଜ ଦଖଲକୁ ନେଇ ଉକ୍ତ ପତିତ ଜମିରେ ଉ.ପ୍ରା.ର ଗୃହନିର୍ମାଣ ପାଇଁ ଆର୍ଥିକ ସହାୟତା ପ୍ରଦାନ କରୁ । ଏପରି ନହେଲେ ମୁଁ ଅନ୍ୟ କୌଣସି ପ୍ରସ୍ତାବରେ ଏକମତ ହେବା ଅବସ୍ଥାରେ ନାହିଁ ।''

ଦ୍ୱିଜବର ବାବୁ ମୋ କଥାକୁ ଖୁବ୍ ଗୁରୁତ୍ୱର ସହିତ ଶୁଣିବା ପରେ କହିଲେ, " - ଏଥିରେ ମୁଁ ମଧ୍ୟ ସଂପୂର୍ଣ୍ଣ ଏକମତ । ତେବେ ଆସନ୍ତୁ, ସ୍ଥାନଟି ଦେଖିବା ପରେ ମୁଁ ମୋ ମତାମତ ଜଣାଇବି ।

ମୁଁ, ହରିବାବୁ ଓ ଏସ୍.ଡ଼ି.ଓ ରାସ୍ତାର ଦକ୍ଷିଣ ପଟ ସ୍ଥାନଟି ଦେଖିବା ପରେ ମୋ ପରିକଳ୍ପନାକୁ ଖୁବ୍ ପସନ୍ଦ କଲେ । ଏହାହିଁ ଏକମାତ୍ର ସୁସମାଧାନର ପନ୍ଥା ବୋଲି କହି ହାଇସ୍କୁଲ କର୍ତ୍ତୃପକ୍ଷଙ୍କ ସହିତ ସ୍ୱତନ୍ତ ଭାବରେ ଆଲୋଚନା କଲେ । ପ୍ରଥମେ ଉକ୍ତସ୍ଥାନ ହାଇସ୍କୁଲର ଖେଳପଡ଼ିଆ ହେବ, ତେଣୁ ତାହା ପ୍ରାଇମେରୀକୁ ଦେଇ ହେବନାହିଁ । ଏକଥା ହେଡ୍ ମାଷ୍ଟର ଦମ୍ଭର ସହିତ କହିବାକୁ ଦ୍ୱିଜବାବୁ ଅସନ୍ତୁଷ୍ଟ ହୋଇ ଫେରିଗଲେ ।

ମଝିରେ କିଛିଦିନ କଟିଗଲା । ମକଦ୍ଦମାର ୨ଟି ତାରିଖ ହୋଇ ଯାଇଥାଏ । ଦ୍ୱିଜବାବୁ ପୁନର୍ବାର ଆସି ସେଇ ପୁରୁଣା କଥାକୁ ଦୋହରାଇ ହେଡ୍‌ମାଷ୍ଟରଙ୍କୁ ଏକପ୍ରକାର ବାଧ୍ୟ କଲେ । ମାତ୍ର ସେଥିରେ ମଧ୍ୟ କିଛି ଫଳ ହେଲା ନାହିଁ । ସେ ପୁଣି ଫେରିଗଲେ ଓ ମକଦ୍ଦମାରେ ଯାହାର ସ୍ୱତ୍ୱ ସାବ୍ୟସ୍ତ ହେବ, ତାହିଁହିଁ କାର୍ଯ୍ୟକାରୀ ହେବ ବୋଲି କହି ଦେଇ ଚାଲିଗଲେ ।

ଆଲୋଚନାର ବିଷୟବସ୍ତୁ ସତ୍ୟପ୍ରିୟ ବାବୁଙ୍କୁ ଜଣାଇ ଏହାର ଆଶୁ ସମାଧାନ ପାଇଁ ଦ୍ୱିଜବାବୁ ସତ୍ୟପ୍ରିୟ ବାବୁଙ୍କୁ ଜଣାଇ ଦେଲେ ।

ବର୍ତ୍ତମାନ ସତ୍ୟପ୍ରିୟବାବୁ ନିଜକୁ ଆଉ ଅନ୍ତରାଳରେ ରଖିବାକୁ ସମର୍ଥ ହୋଇନପାରି ନିଜେ ହାଇସ୍କୁଲ କର୍ମକର୍ତ୍ତାଙ୍କୁ ଡକାଇ ଦ୍ୱିଜବାବୁଙ୍କ ପ୍ରସ୍ତାବ ଗ୍ରହଣ କରିବାକୁ ବାଧ୍ୟ କଲେ । ବହୁ ଯୁକ୍ତିତର୍କ ପରେ ମୁଁ ଦେଇଥିବା ଓ ଏସ୍.ଡ଼ି.ଓ. ତାକୁ ସମର୍ଥନ କରିଥିବା ପ୍ରସ୍ତାବ ଗୃହୀତ ହେଲା । ଦୁଇବର୍ଷ ମଧ୍ୟରେ ପ୍ରାଇମେରୀ ସ୍କୁଲ ନୂତନ ଗୃହ ନିର୍ମାଣ କରି ଉତ୍ତର ପଟକୁ ଚାଲିଯିବ । ଏଥିପାଇଁ ହାଇସ୍କୁଲ କିଛି ଟଙ୍କା ତୁରନ୍ତ ଦେଲେ ପ୍ରାଇମେରୀ ସ୍କୁଲ ଗୃହକାର୍ଯ୍ୟ ଆରମ୍ଭ କରାଯିବା ସ୍ଥିର ହେଲା । ସରପଞ୍ଚ, ବ୍ଲକ୍, ଜିଲ୍ଲା ପରିଷଦରୁ ଆର୍ଥିକ ସହାୟତା ଯୋଗାଡ଼ କରିବା ପାଇଁ ନିଜେ ଦ୍ୱିଜବାବୁ ଦାୟିତ୍ୱ ନେଲେ । ଏ ସଂପର୍କରେ ଏକ ଲେଖାପଢ଼ା ମଧ୍ୟ ଉଭୟ ସ୍କୁଲ କମିଟିଙ୍କ ମଧ୍ୟରେ ସ୍ୱାକ୍ଷରିତ ହୋଇଗଲା ।

ଏହି ନିଷ୍ପତ୍ତିରେ ମୁଁ ଖୁବ୍ ଆତ୍ମସନ୍ତୋଷ ଲାଭ କଲି । ମାତ୍ର ଦୁଃଖର କଥା ହାଇସ୍କୁଲ କର୍ତ୍ତୃପକ୍ଷ ମୋତେ ବାଳକାଟିରୁ ବଦଳି କରିବା ପାଇଁ ବଜ୍ର ଶପଥ ନେବା ଶୁଣି ମୁଁ ଖୁବ୍ ଚିନ୍ତିତ ହୋଇ ପଡ଼ିଲି । ମୁଁ ମୋ ମନୋମତ ନିଷ୍ପତ୍ତି ଲାଭ କରିଥିବାରୁ କିପରି ତୁରନ୍ତ ମୋ ପରିକଳ୍ପନାକୁ ବାସ୍ତବ ରୂପ ଦେବି, ଏଥିପାଇଁ ବହୁଚିନ୍ତା ସହିତ ଯୋଜନା ମଧ୍ୟ କରିବାରେ ଲାଗିଲି । ମୋତେ ରାତିରେ ନିଦ ହେଉନଥାଏ । ଅତିଶୀଘ୍ର ମୁଁ ଗୋଟିଏ ଏଲ୍ ଟାଇପ୍ ର ୮/୧୦ ବଖରା ଘର ଓ ଏକ ଅଫିସ ଘର ନିର୍ମାଣ କରିବା ପାଇଁ କୃତସଂକଳ୍ପ ହେଲି । ଘରଗୁଡ଼ିକ ଅଗ୍ନିନିରୋଧକ ହେବା ମୋର କଳ୍ପନାରେ ଥିଲା ।

ଦିନେ ମୋର ଗୁରୁ ଗୋପୀନାଥ ନାୟକ କଥା ପ୍ରସଙ୍ଗରେ ହସି ହସି କହିଲେ, "ତୁମେ ତ ଯାହା ଚାହୁଁଥିଲ ଠିକ୍ ତାହାହିଁ ହେଲା । ଆଉ ବିଳମ୍ବ କାହିଁକି ? ଶୀଘ୍ର କାର୍ଯ୍ୟାରମ୍ଭରେ ଅଗ୍ରସର ନ ହେଲେ ବହୁ ବିଳମ୍ବ ତଥା ବିଶୃଙ୍ଖଳା ସୃଷ୍ଟି ହେବାର ସମ୍ଭାବନା ଅଧିକ । ତୁରନ୍ତ ଗୃହନିର୍ମାଣ ଦିଗରେ ଧ୍ୟାନ ଦିଅ ।''

ମୁଁ ତତ୍‌କ୍ଷଣାତ୍ ଅନୁରୋଧ କଲି, "- ଆପଣ ମୋର ଗୁରୁ ଓ ପଥ ପ୍ରଦର୍ଶକ । ଏ ଦିଗରେ ମୋତେ ଉପଯୁକ୍ତ ପରାମର୍ଶ ଓ ସହଯୋଗ ପ୍ରଦାନ କରନ୍ତୁ । ମୋର ଅଭିଜ୍ଞତା ନାହିଁ ।''

ସେ କହିଲେ, " – ଆଗ ୨ଟି ଭାଟି ଇଟା ପୋଡ଼ିବାର ବ୍ୟବସ୍ଥା କର ।

ଯେଉଁ ସ୍ଥାନରେ ଘର ହେବ, ତାହାର ଉତ୍ତରପୂର୍ବ କୋଣରୁ ମାଟି ଉଠାଇ ଇଟା ତିଆରି ହେବ । ପଡ଼ିଆରେ ଇଟା ଶୁଖାଇ ପାଖପାଖି ଦୁଇଟି ଭାଟି ଇଟା ପୋଡ଼ାଯିବ । ଏ ଦିଗରେ ମୁଁ ସମସ୍ତ ଦାୟିତ୍ୱ ନେବି । ତୁମେ ମୋ ପରାମର୍ଶ ଅନୁସାରେ ଆଗେଇ ଗଲେ ତୁମ ଉଦ୍ଦେଶ୍ୟ ସାଧନର ପଥ ପ୍ରଶସ୍ତ ହୋଇ ଉଠିବ । ମନେରଖ - ତୁମେ, ତୁମ ଶିକ୍ଷକମାନେ ଏପରିକି ସ୍କୁଲର ବଡ଼ ବଡ଼ ପିଲାମାନେ ସାମୟିକ ସହଯୋଗ କଲେ ଖର୍ଚ୍ଚ ବହୁତ କମିଯିବ । କାଲିଠାରୁ ଏ ଦିଗରେ କାର୍ଯ୍ୟାରମ୍ଭ କରାଯିବ ।'' ପଣ୍ଡିତ ମହାଶୟ ଏକ ନିରଳସ ନିଷ୍ପାପର କର୍ମୀ ।

ଠିକ୍ ତହିଁଆର ଦିନରୁ ହିଁ ଛାଞ୍ଚୁଆ ଆସି ଇଟା ପକାଇଲେ । ସେଇ ପ୍ରଶସ୍ତ ପଡ଼ିଆରେ ଇଟା ଶୁଖାଯାଇ ଭାଟିରେ ଲଦା ହେଲା । ଏହି କାର୍ଯ୍ୟରେ ମୁଁ, ମୋ ଶିକ୍ଷକ ଓ ଛାତ୍ରଛାତ୍ରୀମାନେ ଅକୁଣ୍ଠ ସାହାଯ୍ୟ କରିଥିଲେ । ଇଟାପୋଡ଼ାରେ ସଂଗୃହୀତ ଅର୍ଥବ୍ୟୟିତ ହୋଇଯିବାରୁ କାର୍ଯ୍ୟ ବନ୍ଦ ରଖା ଯାଇଥିଲା ।

## ବି.ଡ଼ି.ଓ.ଙ୍କ ସହିତ ମନୋମାଳିନ୍ୟ :

ପୂର୍ବର ବି.ଡ଼ି.ଓ. ବଦଳି ହୋଇଯିବା ପରେ ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ମିଶ୍ର ନୂତନ ବି.ଡ଼ି.ଓ. ଭାବରେ ବ୍ଲକ୍‌ରେ ଯୋଗଦାନ କଲେ । ଏ ମହାଶୟ ଯୁବକ ଓ କିଛି ନୂଆ କଥା କରି ପ୍ରଶଂସିତ ହେବାରେ ଖୁବ୍ ଆଗ୍ରହୀ ଥିଲେ ।

ଦିନେ ସେ ମୋ ସହିତ ସାକ୍ଷାତ କରି କହିଲେ, "ଆମେ ଏକ ନୂତନ ପଦ୍ଧତି ଅବଲମ୍ବନ କରି ଶିକ୍ଷକମାନଙ୍କୁ ଦରମା ଦେବା । ଗୋଟିଏ କୋଠରୀରେ ଟେବୁଲ୍ ଉପରେ ବିଭିନ୍ନ ମୂଲ୍ୟର ନୋଟ୍ ଓ ରେଜା ପଇସା ରଖି ଦିଆଯିବ । କେହି କିରାଣୀ ବା କର୍ମଚାରୀ ସେଠାରେ ଉପସ୍ଥିତ ରହିବେ ନାହିଁ । ଶିକ୍ଷକମାନଙ୍କର ଦରମା ଖାତାରେ ସ୍ୱାକ୍ଷର କରିବା ପରେ ବହିଟି ଟେବୁଲ ଉପରେ ରହିବ । କ୍ରମାନ୍ୱୟରେ ଶିକ୍ଷକମାନେ ଯାଇ ସେମାନଙ୍କର ପ୍ରାପ୍ୟ ଆଣି ଆସିବେ ।'' ମୁଁ ଏଥିରେ କିୟତ୍ ପରିମାଣରେ ଅସୁବିଧା ଘଟିପାରେ ବୋଲି ଆଶଙ୍କା କରୁଥିଲେ ମଧ୍ୟ ବି.ଡ଼ି.ଓ.ଙ୍କ ପ୍ରସ୍ତାବକୁ ଉଚ୍ଚ ପ୍ରଶଂସା କରି ଥିଲି । କଥା ଥିଲା – ପ୍ରତ୍ୟେକ ଶିକ୍ଷକ care feedingର ରିପୋର୍ଟ ଦାଖଲ କରିବା ପରେ ହିଁ ସେମାନେ ଦରମା ଗ୍ରହଣ କରିବେ ।

ଏହି care feeding ବହୁଦିନରୁ ପ୍ରଚଳିତ ଥିଲା ଓ ଏଥିରେ ଅନେକ ଶିକ୍ଷକ ବଦନାମ ହୋଇଥିବା କଥା ସମସ୍ତେ ଜାଣିଥିଲେ । ମାତ୍ର ଶିକ୍ଷକମାନଙ୍କୁ care feeding କାର୍ଯ୍ୟ ପରିଚାଳନା ପାଇଁ ବାଧ୍ୟ କରାଯାଉଥିଲା । ଏଥିରେ ଗ୍ରାମବାସୀମାନେ ହସ୍ତକ୍ଷେପ କରିବା ସହିତ ଶିକ୍ଷକମାନେ ମଧ୍ୟ ସଂପୂର୍ଣ୍ଣ ନିର୍ଦ୍ଦୋଷ

ନଥିଲେ । ଏହିପରି ଅବସ୍ଥା ବାରମ୍ବାର ଘଟି ସ୍କୁଲକୁ ପୋଲିସ୍ ଆସିବା ସାଧାରଣ କଥା ହୋଇ ଯାଇଥାଏ ।

ମୁଁ କିଛିଦିନ ଏହି ଫିଡ଼ିଂ କାର୍ଯ୍ୟ ପରିଚାଳନା କରିବା ପରେ ବି.ଡ଼ି.ଓ. (ପୂର୍ବବର୍ତ୍ତୀ)ଙ୍କୁ କହିଲି । ବହୁକଷ୍ଟରେ ତତ୍‌କାଳୀନ ବି.ଡ଼ି.ଓ. ସ୍କୁଲ କମିଟି ଚେୟାର୍‌ମେନ୍‌ଙ୍କୁ ଉକ୍ତ ଦାୟିତ୍ୱ ଦେବାକୁ ସମ୍ମତ ହୋଇଥିଲେ । ଆମ ସ୍କୁଲର ଚେୟାରମେନ୍ ଉକ୍ତ ଖାଦ୍ୟ ଓ କ୍ଷୀର ଆଦି ଆଣି ତାଙ୍କ ଦାୟିତ୍ୱରେ ଆମ ପିଲାଙ୍କୁ ବଣ୍ଟନ କରୁଥିଲେ । ମାତ୍ର ସେ ବ୍ଲକ୍ ଅଫିସକୁ ମାସିକ ରିଟର୍ଣ୍ଣ ଦେଉନଥିଲେ । ନୂତନ ବି.ଡ଼ି.ଓ. ଏ ସମ୍ପର୍କରେ ଜାଣି ନଥିବାରୁ ମୋ ଦରମା ବନ୍ଦ କରିଦେଲେ । ରିଟର୍ଣ୍ଣ ନଦେଲେ ଦରମା ଦିଆଯିବ ନାହିଁ ଏହି ନିୟମରେ ମୁଁ ପଡ଼ିଗଲି । ସବୁ ଶିକ୍ଷକ ଦରମା ନେଇ ସାରିଲେଣି । ବି.ଡ଼ି.ଓ. ମୋତେ ପଚାରିବାରୁ ମୁଁ ସମସ୍ତ କଥା କହିଲି ଓ ଚେୟାରମେନ୍ ରିପୋର୍ଟ ଦେବାପାଇଁ ଦାୟୀ ବୋଲି ଜଣାଇଦେଲି । ମାତ୍ର ବି.ଡ଼ି.ଓ କହିଲେ "ଶିକ୍ଷକଙ୍କ ଠାରୁ ଆମେ ରିଟର୍ଣ୍ଣ ପାଇବା କଥା । ଆପଣ ଚେୟାର୍‌ମେନ୍‌ଙ୍କ ଠାରୁ ରିପୋର୍ଟ ଆଣି ବ୍ଲକ୍‌ରେ ଦେବା ପରେ ଆପଣଙ୍କୁ ଦରମା ଦିଆଯିବ ।"

ମୋତେ ବହୁତ ଖରାପ ଲାଗିଲା । ମୁଁ କହି ପକାଇଲି, "ମୁଁ ଯେଉଁ ଦାୟିତ୍ୱ ଗ୍ରହଣ କରିନାହିଁ, ସେଥିପାଇଁ ମୋତେ ଦାୟୀ କରିବା ଏକ ଅସମୀଚୀନ ନିଷ୍ପତ୍ତି ଅଟେ । ଆପଣ ଚେୟାର୍‌ମେନ୍‌ଙ୍କୁ ଜିନିଷ ଦେଇ ମୋଠାରୁ ରସିଦ ବା ରିଟର୍ଣ୍ଣ ଦାବୀ କରିପାରିବେ ନାହିଁ ।" ନୂଆ ବି.ଡ଼ି.ଓ. ରାଗିଯାଇ ମୋତେ କହିଲେ, "ରିଟର୍ଣ୍ଣ ଦେବ ତ ଦରମା ନେବ । ନଚେତ୍ ନାହିଁ ।"

ମୋତେ ଶିକ୍ଷକମାନଙ୍କ ଉପସ୍ଥିତିରେ ଏପରି କଥା କହିବାରେ ମୁଁ ଶିକ୍ଷକମାନଙ୍କୁ ଡାକି କହିଲି, " - ଦେଖନ୍ତୁ, ମୁଁ ବାଳକାଟି ସର୍କଲ ସଂପାଦକ ଏବଂ ପୁରୀ ଜିଲା ସଂଘର ମଧ୍ୟ ଯୁଗ୍ମ ସଂପାଦକ । ମୁଁ ବିନାଦୋଷରେ ଦଣ୍ଡ ଭୋଗୁଛି । ସବୁତ ସମସ୍ତେ ଶୁଣିଲ । ମୁଁ କାହିଁକି ରିଟର୍ଣ୍ଣ ଦେବି ? ବି.ଡ଼ି.ଓ କାହିଁକି ଚେୟାରମେନ୍‌ଙ୍କୁ ରିଟର୍ଣ୍ଣ ପାଇଁ ଚିଠି କରୁନାହାନ୍ତି ? ଅଥଚ ମାସ ମାସ ଧରି ତାଙ୍କୁ care feeding ଦେବାରେ ହେଳା କରିନାହାନ୍ତି ।"

ଶିକ୍ଷକମାନେ ତ ଦରମା ନେଇ ସାରିଥିଲେ । ଏବେ ଦରମା ୱାପସ କରିବା ସମ୍ଭବପର ହେବନାହିଁ ଭାବି କୁଞ୍ଜ କୁଣ୍ଡ, ନବଘନ ପାଣିଗ୍ରାହୀ ଓ ଆଉ ଅନେକ ଶିକ୍ଷକ ସେମାନଙ୍କ ଦରମା ମୋତେ ଦେଇ କହିଲେ, ବି.ଡ଼ି.ଓ. ଆପଣଙ୍କ ଦରମା ନଦେବା ପର୍ଯ୍ୟନ୍ତ ଆମେ ଆଉ ଦରମା ଗ୍ରହଣ କରିବୁ ନାହିଁ । ମୁଁ କାହାରିଠାରୁ ଦରମା ଗ୍ରହଣ

କରିନଥିଲି । ଏ ଅନ୍ୟାୟ ଆଦେଶ ବିରୁଦ୍ଧରେ ଜିଲା ୱାର୍କିଂ କମିଟିରେ ଉପସ୍ଥାପିତ କରିବା ପାଇଁ ଶିକ୍ଷକମାନେ ମୋତେ ବାଧ୍ୟ କଲେ । ମୁଁ ବିଚଳିତ ନହୋଇ କହିଲି ଆପଣ ଚେୟାରମେନ୍‌ଙ୍କୁ ଜଣାନ୍ତୁ, ସେ ତାଙ୍କର ହିସାବ ଆଣି ମୋତେ ଦେବେ ଓ ମୁଁ ତାହା ଆପଣଙ୍କ ପାଖକୁ ପଠାଇଦେବି । ମାତ୍ର ମୁଁ ତାଙ୍କୁ ହିସାବ ମାଗିବା ଠିକ୍ ହେବନାହିଁ ।''

ବି.ଡ଼ି.ଓ ନିଜ ଗୌରବ ରକ୍ଷା କରିବା ଉଦ୍ଦେଶ୍ୟରେ ବ୍ଲକ୍ ଅଫିସକୁ ଫେରିଗଲେ । ତହିଁ ଆର ଦିନ ମୋ ସଂପର୍କରେ ବିଭିନ୍ନ ଲୋକଙ୍କ ଠାରୁ ରିପୋର୍ଟ ସଂଗ୍ରହ କରିବା ପରେ ତାଙ୍କର ମାନସିକ ପରିବର୍ତ୍ତନ ହେଲା ଓ ସେ ଗୋଟିଏ ଚିଠି ସହିତ ମୋ ଦରମା ପଠାଇ ଦେଲେ ଜଣେ କିରାଣୀଙ୍କ ହାତରେ ।

ଚିଠିଟି ପଢ଼ି ମୋର ତାଙ୍କ ପ୍ରତି ସମ୍ମାନ ଓ ମନୋଭାବ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ମୁଁ National Award ପାଇଛି, ବିଭିନ୍ନ ସାମାଜିକ କାର୍ଯ୍ୟ ବାଳକାଟିରେ କରୁଛି, ସର୍ବୋପରି ମୁଁ ପାଠ୍ୟ-ପୁସ୍ତକ ରଚନା କରିଛି ଓ ତହିଁରୁ ୧୨/ ୧୪ ଖଣ୍ଡ approved ହୋଇଥିବା ଜାଣି ସେ ଚିଠିରେ ବହୁ ନମ୍ରତାର ସହିତ ମୋ ପ୍ରତି ଉତ୍ତମ ବ୍ୟବହାର କରିନଥିବାରୁ ଦୁଃଖ ପ୍ରକାଶ କରିଥିଲେ । କହିବା ନିଷ୍ପ୍ରୟୋଜନ ଯେ ଆମ ସର୍କଲର artist ଶରତଚନ୍ଦ୍ର ନାୟକଙ୍କୁ ଡକାଇ ବାଲିଅନ୍ତା ବ୍ଲକ୍‌ର ବିଭିନ୍ନ ବିବରଣୀ ଅଫିସ କାନ୍ଥରେ ଲେଖାଇବା ସହ ମୋ ସଂପର୍କରେ ଅନେକ କଥା ଲେଖାଇଥିଲେ । ବି.ଡ଼ି.ଓଙ୍କ ଏତାଦୃଶ କାର୍ଯ୍ୟରେ ମୁଁ ତାଙ୍କୁ ମୋ ହୃଦୟରେ ଖୁବ୍ ଉଚ୍ଚ ସ୍ଥାନ ଦେଇଥିଲି ।

କିଛିଦିନ ପରେ ରବିବାବୁ ପୁରୀ Temple Office ପରିଚାଳକ ରୂପେ ନିଯୁକ୍ତି ହେଲେ । ମୋତେ ଚିଠି ଦ୍ୱାରା ଡକାଇ ଅନେକ କଥା ଆଲୋଚନା କରିଥିଲେ ।

## ନୂତନ ଗୃହ ନିର୍ମାଣ ପାଇଁ ଅର୍ଥ ବ୍ୟବସ୍ଥା

ମୋ ପରିକଳ୍ପନାକୁ ବାସ୍ତବରୂପ ଦେବା ପାଇଁ ଅନେକ ଟଙ୍କାର ଆବଶ୍ୟକତା ପଡ଼ିବ, ଏକଥା ମୁଁ ବହୁପୂର୍ବରୁ ଜାଣିଥିଲି । ସେଥିପାଇଁ ପ୍ରାୟ ଦୁଇବର୍ଷ ପୂର୍ବରୁ ଆମ ସ୍କୁଲ କମିଟି ଡାକି ୪ର୍ଥ ଓ ୫ମ ଶ୍ରେଣୀ ପିଲାମାନଙ୍କଠାରୁ ମାସିକ ଛପା ରସିଦ ଦେଇ ଟଙ୍କାଟିଏ ଲେଖାଏଁ ଗୃହ ନିର୍ମାଣ ସାହାଯ୍ୟ ଆଦାୟ କରିବା ପାଇଁ ପ୍ରସ୍ତାବଟି ପାଶ୍ କରାଇ ନେଲି । ସେହି ସମୟକୁ ମୋର ୪ର୍ଥ, ୫ମ ଶ୍ରେଣୀ section ହୋଇ

ସାରିଥାଏ । ଛାତ୍ର ସଂଖ୍ୟା ୧୫୦ ରୁ କମ୍ ନଥିଲା । ମୁଁ ଛପା ରସିଦ ଦେଇ ପିଲାଙ୍କଠାରୁ ସାହାଯ୍ୟ ଆଦାୟ କଲି । ଗରିବ ଛାତ୍ରଛାତ୍ରୀ ମାନଙ୍କୁ ଉକ୍ତ ସାହାଯ୍ୟରୁ ଅବ୍ୟାହତି ଦେବା ସହିତ କେତେକଙ୍କୁ ବହି, ଖାତା ଆଦି ସେଇ ପଇସାରୁ ଯୋଗାଇ ଥିଲି । ପ୍ରତି ମାସରେ ଆଦାୟ ହେଉଥିବା ଅର୍ଥ ଏକ ପାସ୍ ବୁକ୍ ଜରିଆରେ ସ୍ଥାନୀୟ ପୋଷ୍ଟ ଅଫିସରେ ଡିପୋଜିଟ୍ କରାଯାଇ ଏକ cash book maintain କରୁଥିଲି ।

ଏପରି ଚାନ୍ଦା ଆଦାୟ କରିବା ପାଇଁ ମୁଁ ବାଲକାଟିର ପ୍ରାୟ ପ୍ରତି ଛାତ୍ରଛାତ୍ରୀଙ୍କ ଘରକୁ ଯାଇଛି । ବାଲକାଟୀ ଅଞ୍ଚଳର ଅଧିକାଂଶ ଗୃହକର୍ତ୍ତା ପ୍ରାୟ ବିଭିନ୍ନ ବ୍ୟବସାୟରେ ବାହାରେ ରହୁଥିବାରୁ ମୁଁ ପିଲାଙ୍କ ମାଆମାନଙ୍କୁ ବୁଝାଇ ମୋ ଲକ୍ଷ୍ୟପୂରଣରେ ପ୍ରୟାସୀ ହେଲି ଓ ମାତ୍ର ଟଙ୍କାଟିଏ ପାଇଁ କେହି କିଛି ଆପତ୍ତି କରିନଥିଲେ । କହିବା ବାହୁଲ୍ୟ ଯେ ୧୯୪୯ ମସିହାରୁ ମୁଁ ଧୀରେ ଧୀରେ ଛାତ୍ରାଭିଭାବକମାନଙ୍କ ସହିତ ନିବିଡ଼ ସଂପର୍କ ରକ୍ଷା ଅବ୍ୟାହତ ରଖିଥିଲି । ଗ୍ରାମବାସୀ ଓ ଛାତ୍ରାଭିଭାବକମାନଙ୍କ ସହିତ ସଂପର୍କଶୀଳ ହେଲେ ବିଦ୍ୟାଳୟ ପାଇଁ ଅନେକ ବିଷୟରେ ଅଯାଚିତ ସାହାଯ୍ୟ ମିଳିଯାଏ । ଏହା ମୁଁ ମୋ ପ୍ରଥମ ଶିକ୍ଷକତା ବେଳୁ ଉତ୍ତମରୂପେ ଉପଲବ୍ଧି କରିଥିଲେ ମଧ୍ୟ ନିମାପଡ଼ା ଉ.ପ୍ରା.ରେ କାର୍ଯ୍ୟ କରିବା ସମୟତକ ଏକ ସଂପର୍କ ସ୍ଥାପନରେ କିଛିଟା ବ୍ୟାଘାତ ସୃଷ୍ଟି ହୋଇଥିଲା । ମାତ୍ର ବାଲକାଟିରେ ଉଦ୍ୟମ କରି ଯଥେଷ୍ଟ ଅଗ୍ରଗତି କରିଥିଲି । କେବଳ ଲକ୍ଷ୍ମୀ ଉପାସକ ଏକ ବିଶେଷ ଜନବହୁଳ ଅଞ୍ଚଳରେ ସରସ୍ୱତୀଙ୍କୁ ସମାନ ମର୍ଯ୍ୟାଦା ଦେଇ ପାରିଥିବାରୁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲି ।

ନୂତନ ଗୃହନିର୍ମାଣ ପାଇଁ ମୁଁ ଗ୍ରାମ ପଞ୍ଚାୟତ, ଜିଲା ପରିଷଦ, ବ୍ଲକ୍, ବଦାନ୍ୟବ୍ୟକ୍ତି ଏବଂ ହାଇସ୍କୁଲଠାରୁ ପାଇବାକୁ ଥିବା ଟଙ୍କାକୁ ବିନିଯୋଗ କରି ଯେଉଁ ନୂତନ ଗୃହଟି ନିର୍ମାଣ କରି ପାରିଲି, ତାହା ରାସ୍ତା ଉପରକୁ ଅତି ସୁନ୍ଦର ଦେଖାଯାଉଥିଲା । ସମୁଦାୟ ଘରଟିର ଛାତ ଅଗ୍ନି-ନିରୋଧକ ଟାଇଲରେ କରାଗଲା । ଏଥିପାଇଁ ମୁଁ ବାରମ୍ବାର ଇପିକଲ୍ ଅଫିସକୁ ଯାଇଛି । ସର୍ବଶେଷରେ ଅନୁଷ୍ଠାନ ପାଇଁ ରିହାତି ଦରରେ ଆବଶ୍ୟକ ପରିମାଣର ଟାଇଲ ଚୌଦ୍ୱାରରୁ ଓ କାଠଗୁଡ଼ିକ କଟକ ମଙ୍ଗଳାବାଗରୁ ଚିରାଇ ଆଣି ଘରର ଶେଣୀ ରୁଅ, କବାଟ, ଚଉକାଠ ସହିତ ଝରକାଗୁଡ଼ିକ ମଧ୍ୟ କରି ପାରିଥିଲି ।

ଘର ସଂପୂର୍ଣ୍ଣ ନହୋଇଥିଲେ ମଧ୍ୟ ୧ମରୁ ୩ୟ ପର୍ଯ୍ୟନ୍ତ ଶ୍ରେଣୀକୁ ନୂତନ-ନିର୍ମିତ ଗୃହରେ ଓ ୪ର୍ଥ ୫ମ ଶ୍ରେଣୀକୁ ପୁରାତନ ଗୃହରେ ପରିଚାଳିତ କରୁଥିଲି । ଶିକ୍ଷକମାନେ ରାସ୍ତା ପାର ହୋଇ ପୁରୁଣା ଗୃହକୁ ଓ ପୁରୁଣା ଗୃହକୁ ନୂତନ ଗୃହକୁ

ବାରମ୍ବାର ଯିବା ଆସିବା କରୁଥିଲେ । ଅଳ୍ପ କିଛିଦିନ ପରେ ଏ ପ୍ରକାର ଅସୁବିଧା ଦୂର ହୋଇ ଯାଇଥିଲା ।

ଗୃହ ନିର୍ମାଣ ପରି ଏକ ଜଟିଳ କାର୍ଯ୍ୟରେ ପୂର୍ଣ୍ଣ ମନୋନିବେଶ କରିଥିବାରୁ ମୁଁ ଶ୍ରେଣୀ ଅଧ୍ୟାପନା ପାଇଁ ପ୍ରାୟ ସମୟ ଦେଇ ପାରୁନଥିଲି । ତଥାପି ମୁଁ ଅଧ୍ୟାପନାରେ ସାମାନ୍ୟତମ ବିଶୃଙ୍ଖଳା ନହେବା ପାଇଁ ଅତ୍ୟନ୍ତ ସଜାଗ ରହିଥିଲି ।

ସେହି ସମୟରୁ ମୋ ସ୍କୁଲ ଶିକ୍ଷକ ଓ ଶିକ୍ଷିକାଙ୍କ ସଂଖ୍ୟା ୮ ଜଣ, ଆଟାଚ ଟିଚର - ୧ ଜଣ, ସ୍କୁଲମଦର ୧ଜଣ, ଏପରି ୧୦ଜଣ ଶିକ୍ଷକ ଶିକ୍ଷୟିତ୍ରୀ, ପ୍ରତ୍ୟହ ନିୟମିତ ଅଧ୍ୟାପନା ଦାୟିତ୍ୱ ଗ୍ରହଣ କରିଥିଲେ ।

## ମୁଁ ଯାହା କଳ୍ପନା କରି ନଥିଲି

ପ୍ରାଇମେରୀର ୪ର୍ଥ ୫ମ ପୂର୍ବପରି ପୁରୁଣା campus ଭିତରେ ଚାଲିଥାଏ । ମୁଁ ପଞ୍ଚମ ଶ୍ରେଣୀର A(section) ପିଲାମାନଙ୍କୁ ଗୋଟିଏ ରୁମ୍‌ରେ ବସାଇ ପଢ଼ାଉଥାଏ । ଖେଳଛୁଟିରେ ହାଇସ୍କୁଲର ଜଣେ ଛାତ୍ର ୫ମ ଶ୍ରେଣୀ ଝରକା ପାଖକୁ ଆସି ମୋତେ ହାତଠାରି ସଙ୍କେତ ଦେଲା । ମୁଁ ତା' ପାଖକୁ ଗଲି । ସେ ମୋତେ ଚୁପ୍‌ଚାପ୍ କରି କହିଲା, " - ଆଜି ପିଲାମାନେ ଛୁଟିପରେ ଆପଣଙ୍କୁ ଅପମାନ ଦେବା ପାଇଁ ଆସିବେ ।'' ଏତିକି କହି ସେ ଅତିଶୀଘ୍ର ଚାଲିଗଲା । ମୁଁ ଆଶ୍ଚର୍ଯ୍ୟ ହେଲି । ଏ କିପରି କଥା ! ପିଲାମାନେ ହାଇସ୍କୁଲରେ ବା କଲେଜରେ ପଢ଼ନ୍ତି, ଜଣେ ଶିକ୍ଷକଙ୍କୁ ଅପମାନ ଦେବାପାଇଁ ଆଗେଇ ଆସିବା ଏକ ଅସମ୍ଭବ କଥା । ମୁଁ ଏ କଥାକୁ ଗୁରୁତ୍ୱ ନଦେଇ ବସି ରହିଲି । ଖେଳଛୁଟି ପରେ ପିଲାମାନେ ଶ୍ରେଣୀ ଗୃହକୁ ଆସିଲେ । ଅଧ୍ୟାପନା କାର୍ଯ୍ୟ ଯଥାରୀତି ଚାଲିଲା । ଛୁଟି ଘଣ୍ଟା ବାଜିଲା । ସବୁ ପିଲାମାନେ ସ୍କୁଲ ଛାଡ଼ିଲେ । ମୁଁ ମୋ ପିଲାଙ୍କୁ ମଧ୍ୟ ଛାଡ଼ିଦେଇ ସ୍କୁଲ ବାରଣ୍ଡାରୁ ତଳକୁ ଓହ୍ଲାଇ ଦେଖିଲି, ହାଇସ୍କୁଲ ବାରଣ୍ଡାରେ ପ୍ରାୟ ୧୫/୨୦ ଜଣ ଛାତ୍ର ଛିଡ଼ା ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ମୋର ପ୍ରଥମ ଶ୍ରେଣୀରୁ ଛାତ୍ର । ମୁଁ ବିରକ୍ତ ହୋଇ କହିଲି, " - ଛୁଟିଘଣ୍ଟା ବାଜିବା ପରେ ତୁମେମାନେ ଏଠାରେ ଏପରି ଛିଡ଼ା ହୋଇଛ କାହିଁକି ?'' ମୋ ସ୍ୱରରେ ଦୃଢ଼ତା ସ୍ପଷ୍ଟ ଓ କର୍କଶ ଥିଲା । କୌଣସି ପିଲା ପାଟି ଫିଟାଇ ନଥିଲେ । ମୁଁ ପୂର୍ବପରି କର୍କଶ ସ୍ୱରରେ କହିଲି, " - କ'ଣ ଗୁରୁ ଦକ୍ଷିଣା ଦେବା ପାଇଁ ସ୍ଥିର ହୋଇଛ ପରା ! ଆଉ ବିଳମ୍ବ କାହିଁକି ? ତୁରନ୍ତ ତଳକୁ ଆସ । ୮ ବର୍ଷ ପାଠ ପଢ଼ାଇ ମୁଁ ତୁମଠାରୁ କିଛି ଦକ୍ଷିଣା ପାଇନାହିଁ । ଦକ୍ଷିଣା ଦେଇ ଶୀଘ୍ର ହତାରୁ ବାହାରି ଯାଅ ।''

ଏତିକି ଶୁଣିବା ପରେ ୫/୬ ଜଣ ପିଲା ତଳକୁ ଡେଇଁ ପଡ଼ି ଦୌଡ଼ି ପଳାଇଲେ । ତା ପରେ ଧୀରେ ଧୀରେ ସବୁପିଲା ବିନା ବାକ୍ୟ ବ୍ୟୟରେ ସ୍କୁଲ ପରିସରରୁ ପଳାଇ ଯାଇଥିଲେ ।

ସେହି ପିଲାମାନଙ୍କ ଦ୍ୱାରା କଥାଟି ରାଷ୍ଟ୍ର ହୋଇଗଲା । ଉଦ୍ଦେଶ୍ୟ ଥିଲା - ମୋତେ ଅପମାନିତ କରି କୌଣସି ମତେ ଏଠାରୁ ବାହାର କରିଦେଲେ ପ୍ରାଇମେରୀ ସ୍କୁଲର ନୂତନ ଗୃହକୁ ହାଇସ୍କୁଲ ଦଖଲ କରି ଅସପତ୍ନ ରାଜତ୍ୱ ଜାହିର କରିବ ।

ସମସ୍ତ ଷଡଯନ୍ତ୍ରରେ ଅସଫଳ ହେବା ପରେ ହାଇସ୍କୁଲର କମିଟି ଓ ହେଡ୍‌ମାଷ୍ଟର ଅନ୍ୟ ଏକ ବ୍ରହ୍ମାସ୍ତ୍ର ପ୍ରୟୋଗ କରିବାର ପ୍ରଚେଷ୍ଟା କରୁଥିବା ବିଷୟରେ ମୁଁ ଆଦୌ ଅବହିତ ନଥିଲି ।

୧୯୪୮ ମସିହାର ଗୋଟିଏ ମାତ୍ର ଲମ୍ବା ବଖରାରେ ୨୯ ଜଣ ପିଲାଙ୍କୁ ନେଇ ଆମେ ଦୁଇଜଣ ଶିକ୍ଷକ କାର୍ଯ୍ୟରତ ଥିଲୁ । ବର୍ତ୍ତମାନ ସ୍କୁଲ ଛାତ୍ର ସଂଖ୍ୟା ୩୫୦ରୁ ଉର୍ଦ୍ଧ୍ୱ । ଦଶଜଣ ଶିକ୍ଷକ କାର୍ଯ୍ୟରତ । ସର୍ବଦା ମୁଁ ମୋ ସ୍କୁଲ ଓ ଛାତ୍ରଛାତ୍ରୀଙ୍କ ଅଧ୍ୟାପନାରେ ଏତେ ନିବିଷ୍ଟ ଥାଏ ଯେ ମୋ ନିଜ ପରିବାର କଥା ବୁଝିବା ପାଇଁ ମଧ୍ୟ ମୋର ସମୟ ନଥାଏ ।

ହାଇସ୍କୁଲ କର୍ତ୍ତୃପକ୍ଷ ମୋର ଉପସ୍ଥିତି ଆଉ ସହ୍ୟ କରି ପାରିଲେ ନାହିଁ । ତେଣୁ ସେମାନେ ବହୁ ତଥ୍ୟ ସମ୍ବଳିତ ମୋର ଅନ୍ୟାୟ କାର୍ଯ୍ୟର ଦଫାଓ୍ୱାରୀ ତାଲିକା କରି ସିଧା ଡି.ପି.ଆଇ.ଙ୍କ ନିକଟକୁ ପଠାଇ ଦେଲେ । ମୁଁ ଏ ସଂପର୍କରେ ସାମାନ୍ୟତମ ସୂଚନା ମଧ୍ୟ ପାଇନଥିଲି ।

ବାଳକାଟି ପରି ଏକ ଶିକ୍ଷାନ୍ଧକାରାଚ୍ଛନ୍ନ ଅଞ୍ଚଳକୁ ନିମାପଡ଼ା ପରି ଏକ ଅତ୍ୟାଧୁନିକ ସ୍ଥାନରୁ ଆସି ମୁଁ ପ୍ରଥମେ ପ୍ରଥମେ ଘୋର ଅବସାଦଗ୍ରସ୍ତ ହୋଇ ପଡ଼ିଥିଲି । ମୁଁ ମୋର ଅଦମ୍ୟ ଚେଷ୍ଟା ବଳରେ ଘରେ ଘରେ ଲକ୍ଷ୍ମୀଙ୍କ ସହିତ ସରସ୍ୱତୀଙ୍କର ସହାବସ୍ଥାନ ସୃଷ୍ଟି କରିବାର ସଂକଳ୍ପକୁ ଯଥାର୍ଥ ଭାବରେ କାର୍ଯ୍ୟକାରୀ କରି ସର୍ବତ୍ର ପ୍ରଶଂସିତ ହେବା ସହିତ ମା ଜଗଜ୍ଜନନୀ ମୋ କାର୍ଯ୍ୟରେ ପ୍ରୀତ ହୋଇ ଶିକ୍ଷକ ଜୀବନର ସର୍ବଶ୍ରେଷ୍ଠ ସମ୍ମାନ ପ୍ରଦାନ କରି ମୋତେ ଅଧିକ ଉତ୍ସାହ ଓ ଅଧିକ କିଛି କରିବାର ପ୍ରେରଣା ଯୋଗାଇ ଦେଇଥିଲେ ।

ଦୁଃଖର କଥା. ନି.ପ୍ରା.ରୁ ଉ.ପ୍ରା. ଓ ମାଇନର ସ୍କୁଲରେ ସନ୍ତୁଷ୍ଟ ନହୋଇ ମୁଁ ମି.ଇ. ସ୍କୁଲ ଶିକ୍ଷକ ତଥା ମୋ ଗୁରୁଦେବଙ୍କ ସହିତ ମିଶି ହାଇସ୍କୁଲଟିଏ ପ୍ରତିଷ୍ଠା କରିବା

ପାଇଁ ଆପ୍ରାଣ ଚେଷ୍ଟା କରିଥିଲି । ମୋର ଲୋକପ୍ରିୟତା ବହୁ ଅଞ୍ଚଳର ଲୋକଙ୍କୁ ବାଳକାଟି ହାଇସ୍କୁଲ ପ୍ରତି ଗଭୀର ଭାବରେ ଆକୃଷ୍ଟ କରି ପାରିଥିଲା । ମୁଁ ଘୁଣାକ୍ଷରେ ଜାଣି ନଥିଲି - ଗୁନ୍ଥିଥିବା ଫୁଲହାରଟା ଗଳାରେ ପକାଇବାର ଅବ୍ୟବହିତ ପରେ ପରେ କାଳ-ସର୍ପରେ ରୂପାନ୍ତରିତ ହୋଇଯିବ ବୋଲି ।

ମୁଁ ସଂପୂର୍ଣ୍ଣ ପକ୍ଷହୀନ ନହେଲେ ହାଇସ୍କୁଲର ହୀନ ଚକ୍ରାନ୍ତ କଦାପି ସାକାର ହୋଇ ପାରିବ ନାହିଁ ଏକଥା କର୍ତ୍ତୃପକ୍ଷ ଉତ୍ତମରୂପେ ଉପଲବ୍ଧି କରି ଭିତରେ ଭିତରେ ମୋର ଚେର କାଟିବାର ହୀନ ଉଦ୍ୟମରୁ ନିବୃତ୍ତ ନଥିଲେ । ଏହି ନୀଚ ଏବଂ ଘୃଣ୍ୟ ମନୋଭାବର ପରିପ୍ରକାଶ ଓ ପରିଣତି ସଂପର୍କରେ କିଛି ଉପସ୍ଥାପନ କରିବା ମୋର ଇଚ୍ଛା ବିରୁଦ୍ଧ ଥିଲେ ମଧ୍ୟ ଅପରିହାର୍ଯ୍ୟ ଆବଶ୍ୟକତାକୁ ଉପେକ୍ଷା କରିପାରୁ ନାହିଁ ।

ଡ଼ି.ପି.ଆଇ.ଙ୍କ ନିର୍ଦ୍ଦେଶ ପାଇଁ ଇନ୍ସପେକ୍ଟର ଅଫ୍ ସ୍କୁଲସ୍ ତାଙ୍କ ପରିଦର୍ଶନର ତାରିଖ ସର୍କଲ ଇନ୍ସପେକ୍ଟରଙ୍କ ଜରିଆରେ ମୋତେ ଜଣାଇ ଦେଲେ । ଚେୟାରମେନ୍ ହରିବାବୁ ସମସ୍ତ ବିଷୟରେ ଅବଗତ ହୋଇ କହିଲେ, "ଆପଣ ଆଦୌ ବିବ୍ରତ ନହୋଇ ଏ ଅନ୍ୟାୟ, ଅବାନ୍ତର ଏବଂ କପୋଳକଳ୍ପିତ ଅଭିଯୋଗର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୁଅନ୍ତୁ । ସତ୍ୟ, ନ୍ୟାୟ, ଧର୍ମର କେବେ ବି କେଉଁଠି ପରାଜୟ ହୋଇନାହିଁ। ଚିନ୍ତା କରିବାର କାରଣ ନାହିଁ । ଯଦି ସେପରି କିଛି ଅଘଟଣ ହୁଏ, ତେବେ ଏ ଅଞ୍ଚଳରୁ ସରସ୍ୱତୀଙ୍କୁ ସବୁଦିନ ପାଇଁ ବିଦାୟ ଦିଆଯିବ । ପ୍ରାଇମେରୀ ନରହିଲେ ଅନ୍ୟ କୌଣସି ଶିକ୍ଷାନୁଷ୍ଠାନ ବାଳକାଟିରେ ରଖାଇ ଦିଆଯିବ ନାହିଁ ।''

ହରିବାବୁ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ଏ ବିଷୟରେ ବହୁ ଲୋକଙ୍କୁ ଅବଗତ କରାଇଥିଲେ ।

ନିର୍ଦ୍ଦିଷ୍ଟ ଦିନ, ଉପସ୍ଥିତ ହେଲା । ଉ.ପ୍ରା. ବିଦ୍ୟାଳୟର ନବନିର୍ମିତ ଗୃହ ସମ୍ମୁଖରେ ଥିବା ପ୍ରଶସ୍ତ ପଡ଼ିଆରେ ହାଇସ୍କୁଲ ହେଡ୍‌ମାଷ୍ଟର ଓ ଅନ୍ୟ କିଛି ଶିକ୍ଷକ ପରିଚାଳନା କମିଟିର ସଭ୍ୟ, ଉ.ପ୍ରା.ର କମିଟି ସଭ୍ୟ ଓ ସାଧାରଣ ଅଭିଭାବକଙ୍କ ଗହଣରେ Inspector, D.I., S.I. ଆଦି ମଞ୍ଚାସୀନ ହୋଇଥିଲେ । ମୁଁ ମୋ ଶିକ୍ଷକମାନଙ୍କ ସହିତ ତଳେ ପଡ଼ିଥିବା ଦରି ଉପରେ ବସିଥାଏ ଏବଂ ମାନସିକ ଅବସାଦଗ୍ରସ୍ତ ହୋଇ ପଡ଼ିଥାଏ ।

କିଛି ସମୟ ପରେ ଇନ୍ସପେକ୍ଟର ମୋତେ ଡାକି କହିଲେ, "ଆପଣଙ୍କ ସୁବିଧା ଦୃଷ୍ଟିରୁ କେଉଁ ସ୍କୁଲକୁ ଯିବେ ପ୍ରକାଶ କରନ୍ତୁ ।'' ମୁଁ ବିନୟ ସହିତ କହିଲି,

" - ଏ ଯାଏ ମୁଁ ଜାଣିଥିଲି ମୋ ବିରୁଦ୍ଧରେ ବହୁ ଦଫା ସମ୍ବଳିତ ଏକ ଆବେଦନ ଶିକ୍ଷା ବିଭାଗର ତୁଙ୍ଗ କର୍ତ୍ତୃପକ୍ଷଙ୍କ ନିକଟକୁ ଯାଇଛି ଓ ଆପଣ ଉକ୍ତ ଅଭିଯୋଗ ପ୍ରମାଣ କରିବା ପାଇଁ ଆସିଛନ୍ତି । ମାତ୍ର ସେ ସମ୍ପର୍କରେ କୌଣସି ଆଲୋଚନା ନ ହୋଇ ହଠାତ୍ କେଉଁ ଅପରାଧ ପାଇଁ ମୋତେ ବଦଳି କରାଯିବାର ନିଷ୍ପତ୍ତି ଗ୍ରହଣ କରାଯାଇଛି ମୁଁ ଜାଣି ପାରୁନାହିଁ । ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ପ୍ରଶ୍ନର ଉତ୍ତରରେ ଏତିକି କହିବି - ବଦଳି ଏକ ଦଣ୍ଡ ନୁହେଁ । ଏଥିରେ ଅପରାଧୀର ଚରିତ୍ର ବା ଆଚରଣରେ ଆଦୌ ପରିବର୍ତ୍ତନ ହୁଏ ନାହିଁ ବୋଲି ମୋର ବ୍ୟକ୍ତିଗତ ଧାରଣା ସୁସ୍ପଷ୍ଟ । ଯଦି ମୋ ବିରୁଦ୍ଧରେ ଆଗତ ଅଭିଯୋଗମାନ ପ୍ରମାଣିତ ହୁଏ, ତେବେ ମୁଁ ନିୟମ କରି କହୁଛି, ଆପଣ ଏ ସ୍ଥାନ ତ୍ୟାଗ କରିବା ପୂର୍ବରୁ ମୁଁ ବଦଳି ନୁହେଁ, ଇସ୍ତଫା ପତ୍ର ଦ୍ୱାରା ମୋ ପାପ କ୍ଷାଳନ କରିବି ।''

ଏଥର ଅଫିସର କିଛିତ ଗମ୍ଭୀର ହୋଇ ପଚାରିଲେ, " ଆପଣ ଜଣେ ଅଭିଜ୍ଞ ବହୁଦର୍ଶୀ ଶିକ୍ଷକ ହୋଇ ଶିକ୍ଷା ବିଭାଗର ନିୟମ ପ୍ରତି ବେଖାତିର କରି କୌଣସି ଏକ ଛାତ୍ରୀକୁ ପ୍ରଥମ ଶ୍ରେଣୀରେ ନାମ ଲେଖାଇବାର ଉପଯୁକ୍ତ ବୟସ ହୋଇ ନଥିଲେ ମଧ୍ୟ ତାକୁ ବିଭାଗୀୟ ନୀତି ନିୟମକୁ ସଂପୂର୍ଣ୍ଣ ଉଲ୍ଲଘଂନ କରି ୨ୟ ଶ୍ରେଣୀରେ ଆଡ଼ମିସନ କରିଛନ୍ତି ।

ଉତ୍ତର : ଅଭିଯୋଗ ସମ୍ପୂର୍ଣ୍ଣ ସତ୍ୟ । ମାତ୍ର ଏହା ଏପରି ପୁରୁଣା ଘଟଣା ହୋଇ ବାରମ୍ବାର ବିଭିନ୍ନ ଅଫିସର ଏହା ଉପରେ ମୋ ସହିତ ଆଲୋଚନା କରି ସାରିଛନ୍ତି । ବୋଧହୁଏ ଏବେ ଉକ୍ତ ଛାତ୍ରୀ କାପିଟାଲର କୌଣସି ବିଦ୍ୟାଳୟର ସପ୍ତମ ଶ୍ରେଣୀରେ ଅଧ୍ୟୟନ କରୁଥିବ । ମୋ ଦୀର୍ଘ ଚାକିରି କାଳ ମଧ୍ୟରେ ମୁଁ ଏଇ ଗୋଟିଏ ମାତ୍ର ତଥାକଥିତ ବେନିୟମ କାର୍ଯ୍ୟ କରିବାକୁ ଏକପ୍ରକାର ବାଧ୍ୟ ହୋଇଛି । ଉକ୍ତ ଛାତ୍ରୀଟିର ମାଆ ମୋର ଛାତ୍ରୀ । ସେଥିପାଇଁ ମୁଁ ଅନୁପ୍ରାଣିତ ଆଦୌ ହୋଇ ନାହିଁ । ପିଲାଟିର ଅସାଧାରଣ ବିଦ୍‌ବତାହିଁ ମୋତେ ଆଶ୍ଚର୍ଯ୍ୟ ଚକିତ କରିବା ପରେ ମୁଁ କେତେକ ବିଷୟର ପରୀକ୍ଷା କରି ଆପେ ଆପେ ପ୍ରଭାବିତ ହୋଇ ପଡ଼ିଛି । କହିବା ନିଷ୍ପ୍ରୟୋଜନ ଯେ ପିଲାଟିର ହସ୍ତାକ୍ଷର, ଗଣିତ, ଲିଖନ ପ୍ରଣାଳୀ ସର୍ବୋପରି ପ୍ରତି କଥାରେ ତା'ର ନିର୍ଭୀକ ଉତ୍ତର ମୋତେ ମୁଗ୍ଧ କରିଥିଲା । ତା'ର ଲିଖନ, ଆଦି କିଛି ବିଷୟରେ କାଗଜ ମୁଁ ଏ ପର୍ଯ୍ୟନ୍ତ ଯତ୍ନର ସହିତ ସମ୍ପାଦି ରକ୍ଷିଛି । ହୁଏତ ମୋ ଶିକ୍ଷକତା ମଧ୍ୟରେ ଏପରି ଏକ ଅସାଧାରଣ ବ୍ୟୁତ୍ପନ୍ନ ଛାତ୍ରୀ ମୁଁ ଆଉ ଦେଖିବାର ସୌଭାଗ୍ୟ ଲାଭ କରିନପାରେ । ତେଣୁ ମୁଁ ନିୟମକୁ ବିବେକର ତାଡ଼ନାରେ ଉପେକ୍ଷା କରିଛି ।

ନିୟମକୁ ଦୃଢ଼ଭାବରେ ଅନୁସରଣ କଲେ ଈଶ୍ୱରଙ୍କର ଅମୂଲ୍ୟ ଅବଦାନର ଅସମ୍ମାନ କଲାପରି ଉପଲବ୍ଧି କରିଥାନ୍ତି । ପ୍ରତିଭାର ବିକାଶ ଧାରାକୁ ପ୍ରତିହତ କରିବା ମଧ୍ୟ ଏକ ଅପରାଧ ବୋଲି ମୋର ଧାରଣା । ଯେଉଁ ଛାତ୍ରୀଟିକୁ କାପିଟାଲର କୃତୀ ଶିକ୍ଷକମାନେ (ପ୍ରଭାକର ଦାସ, ରାଧାମୋହନ ବାବୁ, ଦେବରାଜବାବୁ ଆଦି) ହତାଶ କରି ଫେରାଇ ଦେଇଥିଲେ, ମୁଁ ସେଇ ଛାତ୍ରୀଟି ତଥା ତା'ର ଅଭିଭାବକମାନଙ୍କ ମନରେ ଆନନ୍ଦ ଦେଇଥିବାରୁ ନିଜେ ମଧ୍ୟ ଆନନ୍ଦିତ । ନିୟମକୁ ଉଲ୍ଲଙ୍ଘନ କରି କିଛି କରିବା ଅନ୍ୟାୟ ଓ ପାପରୂପେ ବିବେଚିତ ହୁଏ । ମାତ୍ର ମୋର ଏପ୍ରକାର ପାପ ବା ଅନ୍ୟାୟକୁ ମୁଁ ପବିତ୍ର ପାପ ଭାବରେ ଗ୍ରହଣ କରି ନେଇଛି । ସ.ଇ, ଡ଼ି.ଆଇ ଏ ସଂବାଦ ପାଇବାକୁ ଆଦୌ ବିଳମ୍ବ ହୋଇନଥିଲା । ମୋତେ ପ୍ରବେଶିକା (ad-mission register )ବହିରୁ ଉକ୍ତ ପିଲାର ନାମ କାଟି ଦେବାପାଇଁ ବାରମ୍ବାର କୁହାଯିବାରେ ମୁଁ ସ୍ପଷ୍ଟ କରିଥିଲି, " - ଯାହାକୁ ମୁଁ ବହୁଚିନ୍ତା ପରେ ଠିକ୍ ବୋଲି ଗ୍ରହଣ କରି ନେଇଛି, ତାକୁ ମୁଁ କାଟି ପାରିବି ନାହିଁ । ଉଚ୍ଚ କର୍ତ୍ତୃପକ୍ଷଙ୍କର ଯଥେଷ୍ଟ କ୍ଷମତା ଓ ଅଧିକାର ଅଛି ଜଣେ ଶିକ୍ଷକର ଭୁଲକୁ ସଂଶୋଧନ କରିବା ପାଇଁ । ଆପଣ, ଡ଼ି. ଆଇ., ଇନ୍ସପେକ୍ଟର ଯେ କେହି ମୋର ଏ ଭୁଲକୁ ସଂଶୋଧନ କରି ଦିଅନ୍ତୁ । ମାତ୍ର ଆଶ୍ଚର୍ଯ୍ୟର କଥା, ଛାତ୍ରୀଟି ଯାଇ ୬ଷ୍ଠ ବା ୭ମ ଶ୍ରେଣୀରେ ଅଧ୍ୟୟନ କରୁଛି ଓ ତା'ର ଅସାଧାରଣ ବ୍ୟୁତ୍ପତ୍ତି ଲାଗି ସେ ଆଶାତୀତ ଭାବରେ ପୁରସ୍କୃତ ହେଉଛି । କୌଣସି ଉଚ୍ଚ କର୍ତ୍ତୃପକ୍ଷ ମୋ ଭୁଲ୍‌କୁ ସଂଶୋଧନ ଚାରିବର୍ଷ ମଧ୍ୟରେ କରି ପାରୁନଥିବାରୁ ମୁଁ ଭୁଲ୍ କରି ନାହିଁ ଓ ମୋ ବିବେକର ଆହ୍ୱାନ ଯଥାର୍ଥ ବୋଲି ମୋର ଦୃଢ଼ ଧାରଣା ହୋଇଛି ।'' କହିବା ନିଷ୍ପ୍ରୟୋଜନ ଯେ ଛାତ୍ରୀଟି ବାଳକାଟି ବେତନାସିଆ ସାହିର ବୈଷ୍ଣବଚରଣ ଦାସ - ଡେପୁଟୀ ଡାଇରେକ୍ଟର, ଆନିମଲ ହଜବ୍ୟାଣ୍ଡରୀଙ୍କର ନାତୁଣୀ ଅଟେ । ଇନ୍ସିପେକ୍ଟର କିଛି ପ୍ରତିକ୍ରିୟା ପ୍ରକାଶ ନକରି ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବା ପାଇଁ କହିଲେ ।

୨ୟ ପ୍ରଶ୍ନ : ପ୍ରାଇମେରୀ ଶିକ୍ଷା ସଂପୂର୍ଣ୍ଣ ଅବୈତନିକ ଥିବା ବେଳେ ଆପଣ ୪ର୍ଥ ଓ ୫ମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କଠାରୁ ମାସିକ ଏକ ଟଙ୍କା ଲେଖାଏଁ ଅନ୍ୟାୟ ପାଉଣା ଆଦାୟ କରି ଆତ୍ମସାତ୍ କରିଛନ୍ତି ।

ଉତ୍ତର: ଅର୍ଥ ଆଦାୟ କରାଯାଉଥିବା କଥାଟି ସତ୍ୟ । ମାତ୍ର ତାହା ଦରମା ନୁହେ କିମ୍ବା ଆତ୍ମସାତ୍‌ର ପ୍ରଶ୍ନ ନାହିଁ । ଏ ବ୍ୟବସ୍ଥା ସ୍କୁଲ କମିଟିର ଏକ ନିଷ୍ପତ୍ତି । ଏଥିପାଇଁ ଛପା ରସିଦ ଦିଆଯାଏ । ଆଦାୟୀକୃତ ଅର୍ଥ ଡାକଘରେ ପାଶବୁକ୍‌ରେ ଜମା କରାଯାଏ । ରୀତିମତ cash-book ରେ ଜମାଖର୍ଚ୍ଚ ଲିପିବଦ୍ଧ କରାଯାଇଛି ।

ତୃତୀୟ ପ୍ରଶ୍ନ : ହରିଜନ ପିଲାଙ୍କ ପାଇଁ ଆସୁଥିବା ମାଗଣା ପାଠ୍ୟପୁସ୍ତକ ଉକ୍ତ ପିଲାମାନଙ୍କୁ ଦିଆ ନଯାଇ ବିକ୍ରି କରାଯାଇଛି ।

ଉତ୍ତର : ଏ ପ୍ରକାର ଅଭିଯୋଗ ସଂପୂର୍ଣ୍ଣ ଅମୂଳକ ଓ ଉଦ୍ଦେଶ୍ୟ ପ୍ରଣୋଦିତ । ସରକାର ପ୍ରାୟତଃ ମାଗଣା ପାଠ୍ୟପୁସ୍ତକ ଯୋଗାଇବା ବେଳକୁ ବର୍ଷାରମ୍ଭର ୩/୪ ମାସ ଅତୀତ ହୋଇଯାଇଥାଏ । ସେତେବେଳକୁ ସଂଗତିସଂପନ୍ନ ହରିଜନ ଛାତ୍ରଛାତ୍ରୀ, ସେମାନଙ୍କର ପାଠ୍ୟ-ପୁସ୍ତକ କିଣିସାରିଥାନ୍ତି । ମୁଁ ମାଗଣା ପାଠ୍ୟପୁସ୍ତକ ପାଇବା ପରେ ଯେଉଁ ପିଲା ଆଗରୁ ବହି କିଣି ସାରିଥାନ୍ତି ତାଙ୍କୁ ନୂତନ ବହିତକ ଦେଇ ତାଙ୍କଠାରୁ ପୁରୁଣା ବହିତକ ମାଗିନିଏ । ଶ୍ରେଣୀର ଅତି ଦୁର୍ବଳ ଅବସ୍ଥାର ସବର୍ଣ୍ଣ ପିଲାମାନଙ୍କୁ ଉକ୍ତ ବହି ଦାନ କରିଦିଏ । ଏ ସଂପର୍କରେ ଦୁଇଜଣ ହରିଜନ ଅଭିଭାବକ ଆପତ୍ତି କରିଥିଲେ ଓ ମୁଁ ତାଙ୍କୁ ଠିକ୍ କଥାଟି ବୁଝାଇ ଦେଇଥିଲି । ଏହାର ରେକର୍ଡ଼ ମଧ୍ୟ ରଖାଯାଇଛି ।

ଚତୁର୍ଥ ପ୍ରଶ୍ନ : ମନଇଚ୍ଛା ସ୍କୁଲ ଛୁଟି କରିଦେବା । (ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ) ।

ଉତ୍ତର : ଏହା ମଧ୍ୟ ନିରାଟ ସତ୍ୟ ଉପରେ ଆଧାରିତ ଏକ ଅଭିଯୋଗ । ଦୁଃଖରକଥା, ମୋ ବିଦ୍ୟାଳୟର ଆବଶ୍ୟକତା ସଂପର୍କରେ ମୁଁ ସର୍ବଦା ସାବଧାନ ଓ ସଚେତନ ଥାଏ । ବର୍ଷରୁ ଛ ମାସ ମନଇଚ୍ଛା ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସ୍କୁଲ ଛୁଟି କରିନାହିଁ । ଦୁଇତିନି ପିରିଅଡ଼ ଥାଇ ଯଦି ଅପରିହାର୍ଯ୍ୟ ଆବଶ୍ୟକତା ଉପଲବ୍ଧି କରେ ତେବେ ସ୍କୁଲ ଛୁଟି କରିଦିଏ । ଏହା ବର୍ଷରେ ହୁଏତ ୪/୫ ଥରରୁ ଅଧିକ ହୋଇ ନଥିବ । କାହିଁକି ଏପରି କରାଗଲା, ତାହା ସ୍କୁଲ ଇତିହାସରେ ଉଲ୍ଲେଖ କରାଯାଇଥାଏ ।

ସାଧାରଣତଃ ପ୍ରାଇମେରୀ ସ୍କୁଲର ଗୃହଗୁଡ଼ିକ ଦୁର୍ବଳ । ଅନେକ ଗୃହ ପ୍ରତିବର୍ଷ ଛପର ହୋଇ ପାରିନଥାଏ । ଝଡ଼ପବନ, ତୋଫାନର ଆଶଙ୍କା ଆଦି ଦେଖିଲେ ମୁଁ ସଙ୍ଗେ ସଙ୍ଗେ ସ୍କୁଲ ଛୁଟି କରିଦିଏ । ନିକଟବର୍ତ୍ତୀ ସ୍ଥାନର ପିଲାଙ୍କୁ ବିଦାକରି ଦେଲେ ମଧ୍ୟ ୨-୩ କିଲୋମିଟର ଦୂରତାରୁ ଆସିଥିବା ପିଲାମାନଙ୍କୁ ସ୍ଥାନୀୟ ଲାଇବ୍ରେରୀ ଗୃହରେ ରଖାଇ ଅବସ୍ଥାକୁ ଲକ୍ଷ୍ୟ କରେ । ବର୍ଷା, ପବନ ବା ତୋଫାନର ଅବସାନ ବା ଆଦୌ ନହେବା ଜାଣି ପାରିଲେ ଦୂର ପିଲାମାନଙ୍କୁ ଛାଡ଼ିଦିଏ । ଏହା ଆଇନ ସମ୍ମତ ନହେଲେ ମଧ୍ୟ ମୋ ବିବେକାନୁମୋଦିତ ଅଟେ ।

ମୋର ଏପରି ମାନସିକତା ପଛରେ ଏକ ବଳିଷ୍ଠ ଅନୁଭୂତିରୁ ମୁଁ ବିଶେଷ ଅଭିଜ୍ଞତା ଅର୍ଜନ କରିଛି ।

ଘଟଣାଟି - ମୋ ନିଜ ଗ୍ରାମ ନିକଟସ୍ଥ କୁଂଜର ଗ୍ରାମସ୍ଥ ନି.ପ୍ରା. ବିଦ୍ୟାଳୟ ଗୃହଟି ପ୍ରାୟ ଅନ୍ୟ ଅନେକ ବିଦ୍ୟାଳୟ ଅନୁରୂପ ହୋଇଥାଏ । ଦୈବାତ୍ ଦିନେ କଳାହାଣ୍ଡିଆ ମେଘ ଉଠାଇବା ସହିତ ଯୋରରେ ପବନ ବହିବା ଆରମ୍ଭ ହୋଇଗଲା । ସମୟ ଦିନ ୧୨ଟା, ଘରର ଚାଳ ଠାଏ ଠାଏ ଉଡ଼ିଗଲା । ଘର ଭିତରେ ଟୋପା ଟୋପା ବର୍ଷା ପଡ଼ିଲା । ମାତ୍ର ପବନର ପ୍ରକୋପ ଏତେ ବଢ଼ିଗଲା ଯେ ଘରର ପଥର ଖୁଣ୍ଟି ଦୋହଲି ଉଠିଲା । ଶିକ୍ଷକ କାଶାବିଏଙ୍କା ପରି ସରକାରୀ ଆଦେଶ ଅମାନ୍ୟ କରି ସ୍କୁଲ ଛୁଟି କରିଦେବାକୁ ଏକ ଗୁରୁତର ଆଇନ୍ ବହିର୍ଭୂତ କାର୍ଯ୍ୟ ବୋଲି ବିଚାରିଲେ । ଚାହୁଁ ଚାହୁଁ ପଥର ଖୁଣ୍ଟି ଭାଙ୍ଗି ଓରା ଖସି ପଡ଼ିଲା । ଓଃ, ସଙ୍ଗେ ସଙ୍ଗେ ତିନୋଟି ନିଷ୍ପାପ କୋମଳ ଜୀବନ ଓରାତଳେ ଚାପି ହୋଇ ସବୁଦିନ ପାଇଁ ଅଦୃଶ୍ୟ ହୋଇଗଲା । ନିୟମାନୁବର୍ତ୍ତୀ ଶିକ୍ଷକ ମଧ୍ୟ ଖୁବ୍ କ୍ଷତ ବିକ୍ଷତ ହୋଇଥିଲେ । ସାମାନ୍ୟ ବିଚାର ବୁଦ୍ଧି ବା ସତର୍କତା ଅବଲମ୍ବନ କରିଥିଲେ ହୁଏତ ତିନୋଟି ଅମୂଲ୍ୟ ଜୀବନ ରକ୍ଷା ପାଇ ଯାଇଥାନ୍ତା । ଏହି ଦାରୁଣ ଦୁର୍ଘଟଣା ମୋର ମନେ ପଡ଼ିଯାଏ ଯେତେବେଳେ ଆକାଶରେ ମେଘ ଘଡ଼ଘଡ଼ି ଓ ଯୋର୍‌ରେ ପବନ ବହିବାର ଅଗ୍ରସୂଚନା ମିଳେ । ସେତେବେଳେ ମୁଁ ଯେଉଁ ନିଷ୍ପତ୍ତି ନିଏ, ତାହା ସଂପୂର୍ଣ୍ଣ ମୋ ନିଜସ୍ୱ ବିଚାର ଓ ବିବେକ ଅନୁମୋଦିତ । କାହାରି ଆଦେଶକୁ ଅପେକ୍ଷା କରିବାର ଆବଶ୍ୟକତା କଥା ଭାବିଲେ କୁଂଜର ବିଦ୍ୟାଳୟର ଲୋମହର୍ଷଣକାରୀ ଦୁର୍ଘଟଣା ମୋ ଚକ୍ଷୁ ସମକ୍ଷରେ ଉଦ୍‌ଭାସିତ ହୋଇ ଉଠେ ।

ମୁଁ ଏସବୁକୁ ଅତ୍ୟନ୍ତ ଆବେଗଭରା କଣ୍ଠରେ କହୁଥିବା ବେଳେ କେଜାଣି କାହିଁକି ମୋ ଦେହ ହାତ ଥରି ଉଠୁଥାଏ । ଭୟରେ ଆଦୌ ନୁହେଁ । ଅତି ଅବାନ୍ତର କଥାର ଅବତାରଣା ମୋତେ ଖୁବ୍ କ୍ରୁଦ୍ଧ କରି ପକାଇଥାଏ ।

ମୋ ଅବସ୍ଥା ଲକ୍ଷ୍ୟ କରି ଇନ୍‌ସ୍ପେକ୍ଟର କହିଲେ, "ଆପଣ କିଛି ସମୟ ପାଖ ଚଉକିରେ ବସି ପଡ଼ନ୍ତୁ । ପରେ ଯାହା କହିବେ ।'' ମୋ ମନରେ ଦୁଃଖ, ଅବସାଦ, କ୍ରୋଧ ଓ ଘୃଣାରେ ଜର୍ଜରିତ ହୋଇଯାଇଥାଏ । ମୁଁ ସଙ୍ଗେ ସଙ୍ଗେ ସେଇପରି ଚଢ଼ା କଳାରେ କହିଲି । "କୌଣସି ଅଭିଯୁକ୍ତ ବିଚାରକଙ୍କ ସମ୍ମୁଖରେ ଚଉକିରେ ବସିବାର ପରଂପରା ଆମର ନାହିଁ । ମୁଁ ଦୋଷମୁକ୍ତ ହେବା ପରେ ଚଉକିରେ ବସିବି । ନଚେତ୍ ଇସ୍ତଫା ପ୍ରଦାନ କରି କଳଙ୍କିତ ମୁଖ ଅଧିକ ସମୟ ଏ ମହାନ୍ ବ୍ୟକ୍ତିମାନଙ୍କ ସମ୍ମୁଖରେ ଦେଖାଇବି ନାହିଁ ।''

କିଛି ସମୟ ପରେ ଅନ୍ୟ ଏକ ଅଭିଯୋଗ ଆଗତ କରି ସି.ଆଇ. ପଚାରିଲେ,

"ଆପଣ ଅଧିକାଂଶ ଦିନ ଖେଳଛୁଟି ପରେ ସ୍କୁଲକୁ ଛାଡ଼ି ଦିଅନ୍ତି ?''

ମୁଁ କହିଲି - "ଅଧିକାଂଶ ଶବ୍ଦଟି ଉଦ୍ଦେଶ୍ୟ ପ୍ରଣୋଦିତ । ମୁଁ ମାସ ମଧ୍ୟରେ ୩/୪ ଥର ଖେଳଛୁଟି ପୂର୍ବରୁ ସ୍କୁଲରୁ ଯାଇ ୪ଟା ପୂର୍ବରୁ ଆସିଥାଏ । ଏପରି କରିବାର କାରଣ ସ୍ୱରୂପ ଏତିକି କହିବି ଯେ - ମୋ ସ୍କୁଲରେ କୌଣସି ଛାତ୍ର କ୍ରମାଗତ ୪ ଦିନରୁ ଅଧିକ ଅନୁପସ୍ଥିତ ରହିଲେ, ତାହାର କାରଣ ଜାଣିବା ପାଇଁ ପାର୍ଶ୍ୱବର୍ତ୍ତୀ ସାହି ହୋଇଥିଲେ ମୁଁ school mother ପଠାଇଥାଏ । ମାତ୍ର ମୋ ସ୍କୁଲକୁ ଉତ୍ତରା, ଧଉଳି, ପୁବା, ବୁଧିପଡ଼ା, ପୂରଣ, ରଣପୁର ଆଦି ଦୂରବର୍ତ୍ତୀ ସ୍ଥାନରୁ ପିଲା ଆସୁଥିବାରୁ ୩ ଦିନ କ୍ରମାଗତ ଅନୁପସ୍ଥିତ ଛାତ୍ରର ଅଭିଭାବକ ପାଖରୁ ୪ର୍ଥ ଦିନ ଅନୁପସ୍ଥିତିର କାରଣ ଜଣାଇବାକୁ ଚିଠି ପଠାଇଥାଏ । ପଞ୍ଚମଦିନ ମଧ୍ୟ ଉତ୍ତର ନପାଇଲେ ମୁଁ ଖେଳଛୁଟି ପୂର୍ବରୁ ଯାଇ ସ୍କୁଲଛୁଟି ପୂର୍ବରୁ ସ୍କୁଲକୁ ଫେରିଅସେ । ଏହି କାର୍ଯ୍ୟ ଯୋଗୁ ବିଭିନ୍ନ ଅଞ୍ଚଳର ଲୋକ ମୋ ଉପରେ ଗଭୀର ଆସ୍ଥାସ୍ଥାପନ କରିଥାନ୍ତି । ପୁନଶ୍ଚ ମୋ ଅନୁପସ୍ଥିତିରେ attach teacher ମୋ ଶ୍ରେଣୀର ଦାୟିତ୍ୱ ନେଉଥିବାରୁ ଅଧ୍ୟାପନା କାର୍ଯ୍ୟ ଆଦୌ ବ୍ୟାହତ ହୋଇ ନଥାଏ । ମୋର ଅନୁପସ୍ଥିତି ବ୍ୟକ୍ତିଗତ ନୁହେ । ସ୍କୁଲର ସ୍ୱାର୍ଥ ପାଇଁ ମୁଁ ଏ କଷ୍ଟ ବରଣ କରିଥାଏ । ଅନ୍ୟ ଏକ ଏକାନ୍ତ ଅବାନ୍ତର ଅଭିଯୋଗ - ମୁଁ ସକାଳେ ପୁଣି ସନ୍ଧ୍ୟାରୁ ରାତି ୯ଟା ଯାଏ ୪ର୍ଥ ୫ମ ଶ୍ରେଣୀର ଅନେକ ଛାତ୍ରଛାତ୍ରୀଙ୍କୁ ଟିଉସନ କରି ବହୁ ଅର୍ଥ ରୋଜଗାର କରେ । ପୁନଶ୍ଚ ୧୧-୧୨ ବର୍ଷର ଛାତ୍ରୀମାନଙ୍କୁ ରାତିରେ ଟିଉସନ କରୁଥିବାରୁ ନାନା କଥା ଓ ଚାପାଗୁଞ୍ଜରଣ ଶୁଣିବାକୁ ମିଳେ ।

ଏ ପ୍ରଶ୍ନଟିରେ ଜଣେ ଶିକ୍ଷକର ଆତ୍ମସମ୍ମାନ ଓ ଚରିତ୍ର ଉପରେ ପ୍ରଚ୍ଛନ୍ନ ଆକ୍ରମଣର ଅନ୍ତଃସ୍ୱର ସ୍ପଷ୍ଟ ଲକ୍ଷ୍ୟ କରି ମୁଁ ହଠାତ୍ ବିଚଳିତ ହୋଇ ଉଠିଲି । ବିଶେଷ କରି ଜଣେ ଦାୟିତ୍ୱସଂପନ୍ନ ଉଚ୍ଚ ଶିକ୍ଷିତ ସମ୍ମାନିତ ଶିକ୍ଷକଙ୍କ ଦ୍ୱାରା ଅନ୍ୟ ଜଣେ ଶିକ୍ଷକଙ୍କର ଚରିତ୍ର ସଂହାର ପୁଣି ଅତି ବୀଭତ୍ସ ଭାବରେ କରାଯାଇଥିବାରୁ ମୁଁ ଉତ୍ୟକ୍ତ ହୋଇ ତୁରନ୍ତ ସ୍ଥାନତ୍ୟାଗ କରିବାର ନିଷ୍ପତ୍ତି ନେଉଥିବା ବେଳେ ମୋର କାଳିଦାସଙ୍କର ଉକ୍ତ ମହାନ୍ ବାଣୀ - ନ କେବଳ ଯୋ ମହତୋପଭାଷତେ, ଶୃଣ୍ୱନ୍ତୁ ସ୍ୱୋଦପି ପାପଭାକ୍'' । କୁ ମନେ ପକାଇ ପ୍ରକୃତିସ୍ଥ ହେବାକୁ ଚେଷ୍ଟା କଲି । ସୁଦୀର୍ଘ ଅତୀତର ଏତାଦୃଶ ଘୃଣ୍ୟ ସ୍ମୃତିଚାରଣ କଲାବେଳେ ମୋର ମନେ ପଡୁଛି " – ମୁଁ ଏ ପ୍ରଶ୍ନର ଉତ୍ତରରେ ଯାହା କହିଥିଲି, ତାହା ଆଦୌ ମୋର ବକ୍ତବ୍ୟ ନଥିଲା । ସତେ ଯେପରି କୌଣସି ଦେବୀ (ଠାକୁରାଣୀ) ମୋ ଭିତରେ ଉଭାହୋଇ ଯାଇଥିଲେ । ମୁଁ ଯାହା

ଉତ୍ତର ଦେଇଥିଲି, ସେ ସବୁ ସେଇ ଦେବୀ ମୋ ତୁଣ୍ଡରେ କୁହାଇ ଥିଲେ ବୋଲି ମୁଁ ନିଶ୍ଚିତ ହୋଇଥିଲି ।

ଆଗରୁ ବହୁବାର କହି ଆସିଛି, - ମୋ ସ୍କୁଲକୁ ଏକ ଆଦର୍ଶ ସ୍କୁଲରେ ପରିଣତ କରିବା ପାଇଁ ନିଜକୁ ଓ ମୋ ପରିବାରକୁ ସଂପୂର୍ଣ୍ଣ ବିସ୍ମୃତ ହୋଇ ଯାଇଥିଲି । ଘୋର ଅଜ୍ଞାନ ଅନ୍ଧକାରର ଗହ୍ବର ମଧ୍ୟରୁ ମୁଁ ଏ ଅଞ୍ଚଳର ଅଗଣିତ ଛାତ୍ର ଛାତ୍ରୀଙ୍କୁ ଜ୍ଞାନାଲୋକର ଉଜ୍ଜ୍ୱଳ ବର୍ତ୍ତିକା ଦେଖାଇ ଆଶାତୀତ ଭାବରେ ସଫଳକାମ ହୋଇଥିଲି । ଏଇ ସଫଳତାକୁ ପାଥେୟ କରି ମୁଁ ନିୟତ ଅଗ୍ରସର ହୋଇଥାଏ ଅଧିକ କିଛି ପ୍ରାପ୍ତି ଆଶାରେ ।

ମୋ ସ୍କୁଲରୁ ଛାତ୍ରଛାତ୍ରୀମାନେ ପ୍ରତିବର୍ଷ ଉ.ପ୍ରା ଓ ନି.ପ୍ରା.ବୃତ୍ତି ନିୟମିତ ପାଇ ଆସୁଥାନ୍ତି । ସ୍କୁଲରୁ ଆଉ ଅଧିକ ସୁନାମ ଓ ପିଲାମାନଙ୍କର ଉନ୍ନତି ପାଇଁ ମୁଁ ମୋ ସ୍କୁଲର ସହକାରୀ ଇନ୍ଦ୍ରମଣି ନାୟକଙ୍କୁ ମୋ ଆଦର୍ଶରେ ଅନୁପ୍ରାଣିତ କରି ୪ର୍ଥ ୫ମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କୁ ସକାଳେ ଓ ରାତିରେ ପଢ଼ାଇବାର ବ୍ୟବସ୍ଥା କରିଥିଲି, ଯାହାକୁ ଟିଉସନ ଆଖ୍ୟା ଦିଆଯାଇଛି । ଏଥିପାଇଁ କୌଣସି ଗୋଟିଏ ଛାତ୍ର ବା ଛାତ୍ରୀ ମୋତେ ବା ମୋ ସହକାରୀଙ୍କୁ ପଇସାଟିଏ ଦେଇଥିବାର ପ୍ରମାଣ ଦେଲେ ମୁଁ ଏହି ମହାମିଳନର ବେଳାଭୂମିରେ ଆତ୍ମହତ୍ୟା କରିବି । ମୁଁ ସ୍ୱପ୍ନରେ ମଧ୍ୟ ଭାବି ନଥିଲି ତ୍ୟାଗର ପୁରସ୍କାର ଏହିପରି ଭାବରେ ନିଲାମ ହୁଏ ବୋଲି ।

ଅଧିକ ବୟସର ଝିଅପିଲାମାଙ୍କୁ ପଢ଼ାଇବାରେ ମୋ ବିରୁଦ୍ଧରେ ଚାପାଗୁଂଜରଣର ଅବତାରଣା ଅତ୍ୟନ୍ତ ଘୃଣ୍ୟ ମାନସିକତାର ପରିଚାୟକ ।

ଏ ଅନ୍ଧାରି ଅଞ୍ଚଳରେ ପୁଅପିଲାମାନେ ପାଠପଢୁ ନଥିବା ବେଳେ ଝିଅପିଲାଙ୍କ ପଢ଼ାର ପ୍ରଶ୍ନ ନ ଉଠିବା ସ୍ୱାଭାବିକ । ୧୯୪୮ରୁ ଏଠାରେ ପ୍ରଥମ କାର୍ଯ୍ୟାରମ୍ଭ କରିବା ବେଳେ ଗୋଟିଏ ହେଲେ ଛାତ୍ରୀ ବିଦ୍ୟାଳୟକୁ ଆସୁନଥିଲେ । ଅଥଚ ମୁଁ ନିମାପଡ଼ା ପ୍ରାକ୍ଟିସିଂରେ, ଦେଖିଲି ଯଥେଷ୍ଟ ଛାତ୍ରୀ ଅଧ୍ୟୟନ କରିବାକୁ ଦୂରବର୍ତ୍ତୀ ସ୍ଥାନମାନଙ୍କରୁ ନିଃସଙ୍କୋଚରେ ଆସୁଥିଲେ । ସେହି କଥାକୁ ଚିନ୍ତା କରି ମୁଁ ଛାତ୍ରୀମାନଙ୍କୁ ଅଧିକ ପରିମାଣରେ ସ୍କୁଲକୁ ଆଣିବାକୁ ବଦ୍ଧପରିକର ହୋଇ ବିଭିନ୍ନ ଉପାୟ ଅବଲମ୍ବନ କଲି । ସାହି, ସାହି ବୁଲି ଅଭିଭାବକମାନଙ୍କୁ ପ୍ରଭାବିତ କରିବାରେ ଲାଗିଲି । ପରେ ପରେ ମୋତେ ଆଉ କାହାରି ଘରକୁ ଯାଇ ବୁଝାଇବାକୁ ପଡ଼ିନଥିଲା । ଅବାରିତ ଗତିରେ, ସମୟ ଅସମୟରେ ଝିଅପିଲାମାନେ ଆସିବାରେ ଲାଗିଲେ । ଏପରିକି ୨ୟ

ଶ୍ରେଣୀରେ ୮-୯ ବର୍ଷର ଝିଅପିଲା ଅଧ୍ୟୟନ କଲେ । ପ୍ରଥମେ ୫ ବର୍ଷ ପରେ ନାମ ଲେଖାଇବା ନିୟମ ଥିଲେ ମଧ୍ୟ ମୁଁ ୭-୮ ବର୍ଷ ପିଲାଙ୍କୁ ବିନା ଦ୍ୱିଧାରେ ଗ୍ରହଣ କରିଥିଲି। ଫଳରେ ଏହି ଛାତ୍ରୀମାନେ ୫ମରେ ପହଞ୍ଚିବା ବେଳେ ୧୧-୧୨ ବର୍ଷ ବୟସର ହୋଇଥିବା ସ୍ୱାଭାବିକ ଥିଲା । ଝିଅପିଲାମାନଙ୍କୁ ନେଇ ଯେଉଁ ଅବାନ୍ତର ଅଭିଯୋଗ ଆରୋପ କରାଯାଇଛି, ତାହା ଆପେ ଆପେ ଅପ୍ରମାଣିତ ହୋଇ ଯାଉଛି। ଏବେ ମଧ୍ୟ ମୋର ୫ମ ଶ୍ରେଣୀର ୧୧-୧୨ ବର୍ଷ ବୟସର ଛାତ୍ରୀ କେତେଜଣ ରାତିରେ ମୋ ପାଖକୁ ପଢ଼ିବା ପାଇଁ ଆସୁଛନ୍ତି । ତଥାକଥିତ ଅଭିଯୋଗରେ ବିନ୍ଦୁମାତ୍ର ସତ୍ୟତା ଥିଲେ ସ୍କୁଲରେ ତାଲା ପଡ଼ିସାରନ୍ତାଣି ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଜଣେ ହେଲେ କେହି ଅଭିଭାବକ ଏ ପର୍ଯ୍ୟନ୍ତ ସ୍ୱରଉତ୍ତୋଳନ କରିନାହାନ୍ତି ।

ଠିକ୍ ରାତି ୯ଟା ପରେ ମୁଁ ଓ ମୋର ସହକାରୀ ଇନ୍ଦ୍ରମଣି ପିଲାମାନଙ୍କୁ ନେଇ ପଣସପାଟଣା, କେଉଟସାହି, ଡିଗୋଟି ସାହି ଓ ମାହାଳ ସାହିରେ ପିଲାମାନଙ୍କୁ ସେମାନଙ୍କ ଘରେ ଛାଡ଼ି ସର୍ବଶେଷରେ ନୂଆପାଟଣା (ପ୍ରାୟ ୧ ମାଇଲ ଦୂର)ରେ ପିଲାମାନଙ୍କୁ ପହଞ୍ଚାଇ ଆମେ ଫେରି ଆସୁ । ଫଳରେ ମି.ଇ. ଓ ହାଇସ୍କୁଲରେ ମୋ ସ୍କୁଲ ଛାତ୍ରଛାତ୍ରୀମାନେ ଶ୍ରେଣୀରେ ୧ମରୁ ୭ମ ବା ୮ମ ପର୍ଯ୍ୟନ୍ତ ସ୍ଥାନ ଅଧିକାର କରି ଆମ ନିଃସ୍ୱାର୍ଥପର ପରିଶ୍ରମର ମୂଲ୍ୟ ପ୍ରଦାନ କରିଥାନ୍ତି । ସଫଳତା ହିଁ ଶିକ୍ଷକ ଜୀବନର ମାପକାଠି ।

ମୁଁ ଅତ୍ୟନ୍ତ ବେପରୁଆ ଓ ଦ୍ୱିଧାହୀନ ଭାବରେ ଏ ସବୁ କଥା କିପରି କହି ପାରିଲି ଏବେ ମଧ୍ୟ ସେ କଥା ଭାବି ବିସ୍ମିତ ହୋଇ ଉଠୁଛି ।

ମୋର ବକ୍ତବ୍ୟ ଶେଷ ହେବା ପରେ କୃଷ୍ଣଚନ୍ଦ୍ର ପୃଷ୍ଟି ଇନ୍ସପେକ୍ଟରଙ୍କୁ ଲକ୍ଷ୍ୟ କରି କହିଲେ, " - ଆଜ୍ଞା, ଭୟ ଥିଲା - ସାତ ନୁହେ ସତର ରଥୀ ଏକତ୍ର ହୋଇ ଅଭିମନ୍ୟୁକୁ ବଧ କରିବେ ବୋଲି । ମାତ୍ର ମହାଭାରତ ଓଲଟି ଗଲା । ରଥୀ ମହାରଥୀମାନେ ବିଷର୍ଣ୍ଣ ବଦନରେ ମଥାପୋତି ବିସୃଜ୍ୟଂ ସଶରଂ ଚାପ ହୋଇ ପଡ଼ିଛନ୍ତି ।

ଚେୟାରମେନ୍ ହରିବାକୁ ଅତ୍ୟନ୍ତ ଉତ୍ୟକ୍ତ ହୋଇ କହିଲେ, "- ଆମ୍ଭମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲାଣି । ଏ ଫାର୍ସ ଏଇଠି ବନ୍ଦ କରାନଗଲେ ନିଶ୍ଚୟ ଶାନ୍ତି ଭଙ୍ଗ ହେବ। ଆମେ ଆଉ ଏ ପ୍ରହସନ ଅଧିକ ସମୟ ବରଦାସ୍ତ କରିବା

ଅବସ୍ଥାରେ ନାହୁଁ ।'' ଏତିକି କଥାରେ ଉତ୍ତେଜିତ ହୋଇ ବହୁ ବ୍ୟକ୍ତି ଠିଆ ହୋଇ ପାଟି କଲେ । ଇନ୍ସପେକ୍ଟର ସମସ୍ତଙ୍କୁ ଶାନ୍ତ କରାଇ କହିଲେ, "ଆଉ ମାତ୍ର ଗୋଟିଏ ପ୍ରଶ୍ନ ଅଛି । ସେଇଟି ପଚାରିବା ପରେ ମୁଁ ମୋ କର୍ତ୍ତବ୍ୟ ଶେଷ କରିବି । ଦୟାକରି ଶାନ୍ତିରକ୍ଷା କରିବାକୁ ଅନୁରୋଧ ।'' ମୁଁ ସମସ୍ତଙ୍କୁ ହାତଯୋଡ଼ି ନୀରବ ରହିବା ପାଇଁ ଜଣାଇଥିଲି । ଅତି ଉଦ୍ଧତ ଭାବରେ କୃଷ୍ଣଚନ୍ଦ୍ର କୃଷ୍ଣି କହିଲେ, "– ଆଜ୍ଞା, ସବୁ ଶର ଅକାମୀ ହୋଇଯିବା ପରେ ଏହା ନିଶ୍ଚୟ ବ୍ରହ୍ମଶର ହୋଇଥିବ । ଶୀଘ୍ର ପ୍ରୟୋଗ କରି ଦିଅନ୍ତୁ ।''

ଇନ୍ସପେକ୍ଟର ମୋର ମାନସିକ ଅବସ୍ଥା ଲକ୍ଷ୍ୟକରି କହିଲେ, "– ବହୁତ ସମୟ ହେଲା ଆପଣ ଅତ୍ୟନ୍ତ ଧୈର୍ଯ୍ୟର ସହିତ ଉତ୍ତର ଦେଇ ଚାଲିଛନ୍ତି । ଏଥର ଚୌକିରେ ବସି ଯାହା କହିବାର କଥା କହନ୍ତୁ ।''

ମୁଁ ସଙ୍ଗେ ସଙ୍ଗେ କହି ଉଠିଲି - "ବ୍ରିଟିଶ୍ ସରକାର ମୋ ଜାଣିବାରେ ଥରଟିଏ ପାଇଁ ଏ ପରଂପରା ଭାଙ୍ଗିଥିଲେ । ଆଜି ଆପଣ ମୋତେ ସେହି ସୁଯୋଗ ଦେଇଥିବାରୁ ମୁଁ କୃତଜ୍ଞ ।

"ପୁରୀର ଗଜପତି ମହାରାଜା ଦିବ୍ୟସିଂହ ଦେବ ନରହତ୍ୟା ପରି ଜଘନ୍ୟ ଅପରାଧରେ କଟକର ନ୍ୟାୟାଳୟରେ ବାରମ୍ବାର ହାଜର ହେଉଥାନ୍ତି ଓ ପ୍ରତିଥର ତାଙ୍କୁ ବସିବା ପାଇଁ ଚଉକି ଦିଆଯାଉଥିଲା । ସମସ୍ତେ ଏହି କାର୍ଯ୍ୟକୁ ସରକାରଙ୍କର ଉଦାରତା କହୁଥିଲେ । ସର୍ବଶେଷ ତାରିଖରେ ଦୋଷୀ ସାବ୍ୟସ୍ତ ହେବାପରେ ମହାରାଜାଙ୍କୁ ଚଉକି ଦିଆ ନଯାଇ ଠିଆ କରାଇ କଠିନ ଦଣ୍ଡାଦେଶ (କଳାପାଣି) ଶୁଣାଇ ଦିଆଯାଇଥିଲା । ଆଜି ମୋ ପାଇଁ କଅଣ ଅଛି, ତାହା ଭଗବାନ ଜାଣନ୍ତି'' ମୁଁ ଚଉକିରେ ବସିଲି । ଏହା ଶେଷ ଅଭିଯୋଗ ହୋଇଥିବାରୁ ମୁଁ ଖୁବ୍ ଚିନ୍ତିତ ହୋଇ ପଡ଼ିଥାଏ । ଏତିକି କହି ପାଖ ଚଉକିରେ ବସି ଯାଇଥିଲି ।

ଇନ୍ସିପେକ୍ଟର କହିଲେ, "ଆପଣ ଏଠାରେ ପ୍ରାୟ ୧୪-୨୦ ବର୍ଷ ହେଲାଣି ଅଛନ୍ତି । ଏ ଅଞ୍ଚଳ କାହିଁକି ବହୁ ଦୂରବର୍ତ୍ତୀ ସ୍ଥାନ ଲୋକମାନଙ୍କ ସହିତ ଆପଣଙ୍କର ନିବିଡ଼ ସଂପର୍କ ଅଛି । ଏହି ସୁଯୋଗରେ ଆପଣ ଏ ଅଞ୍ଚଳର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନକୁ ବଦନାମ କରି ପିଲା ଏବଂ ଅଭିଭାବକମାନଙ୍କୁ ନାନା କଥା କହି ଏପରିକି ହେଡ୍‌ମାଷ୍ଟରଙ୍କ ଚରିତ୍ରସଂହାର କରିବାକୁ ପଛେଇ ନାହାନ୍ତି । ଏ ସ୍କୁଲ ଅତି ଅଳ୍ପ ଦିନରେ ନିଶ୍ଚୟ ଭାଙ୍ଗିଯିବ, ପିଲାମାନେ ଏବହୁଁ ଏ ସ୍କୁଲରୁ ଅନ୍ୟତ୍ର ଚାଲି ନଗଲେ ଘୋର ଅସୁବିଧାରେ ପଡ଼ିବେ । ଏହିପରି ବହୁ ମିଥ୍ୟା ପ୍ରଚାର କରି ପିଲାମାନଙ୍କ ମନରେ

ବିଦ୍ୟାଳୟ ପ୍ରତି ବିତୃଷ୍ଣା ସୃଷ୍ଟି କରୁଥିବା କଥା ଖୋଦ ପିଲାମାନେ ପ୍ରମାଣ ଦେବେ ।'' ଏତିକି କହି ସେ ହେଡ୍‌ମାଷ୍ଟରଙ୍କୁ ପିଲାଙ୍କୁ ଡାକିବାକୁ ଜଣାଇ ଦେଲେ । ୨/୪ ଜଣ ପିଲା ଗୋଟିଏ ଘର ଭିତରେ ବହୁ ବେଳୁ ରହି 'କଅଣ କହିବେ' ସେହି କଥା ତାଲିମ ପାଉଥାନ୍ତି । ଏ ପ୍ରକାର ପ୍ରକ୍ରିୟା ଆଠ ଦଶଦିନ ଆଗରୁ ରିହରସାଲ୍ ରୂପେ ଅବ୍ୟାହତ ଚାଲି ଆସୁଥିବା କଥା ପରେ ଶୁଣିବାକୁ ପାଇଲି ।

୨/୩ ଜଣ ପିଲା ସଭାକୁ ଆସିଲେ । ସେମାନେ କୌଣସି ଦୂରବର୍ତ୍ତୀ ମି.ଇ. ସ୍କୁଲରୁ ଏଠାକୁ ଆସିଥିବାରୁ ମୋର ତାଙ୍କ ସହିତ ଆଦୌ ପରିଚୟ ନଥିଲା । ଇନ୍‌ସପେକ୍ଟର ପଚାରିବାରେ ପ୍ରଥମେ ପିଲାଟିଏ ଥିଏଟର ବା ଯାତ୍ରାର ସଂଳାପ ମୁଖସ୍ଥ କଲାପରି ଏକା ନିଶ୍ୱାସକେ କଥାଗୁଡ଼ାକ ଗାଇ ଦେଇଗଲା ।

ପିଲାଟି ନୀରବ ହେବା ପରେ ହରିବାବୁ (ଚେୟାରମେନ୍ ଉ.ପ୍ରା) ହଠାତ୍ ଠିଆ ହୋଇ ପଚାରିଲେ, "ତୋ ଘର କେଉଁଠି ?'' ପିଲାଟି କହିଲା, "ସରକଣା''(ରଣପୁର କି ସରକଣା ମୋର ଠିକ୍ ମନେ ପଡୁନାହିଁ ) । ହରିବାବୁ ପଚାରିଲେ - "ତୁ ଯାହା ସବୁ ଗାଇଗଲୁ ସେ ସବୁକଥା ତୁମକୁ କିଏ କହୁଥିଲେ ?'' ପିଲାଟି କହିଲା, - "କାଶୀବାବୁ ।'' ହରିବାବୁ ପୁଣି ପଚାରିଲେ, - "ତୁ କାଶୀବାବୁଙ୍କୁ ଚିହ୍ନିଛୁ ?'' ପିଲାଟି କାଳ ବିଳମ୍ବ ନକରି କହିଲେ, - "ହଁ, ସେ ଆମ ହେଡ୍‌ମାଷ୍ଟରଙ୍କ ନିକଟରେ ବସିଛନ୍ତି । ସେ ଆମ ସ୍କୁଲକୁ ଆସି ଅଫିସ ଘରେ ବସନ୍ତି । ପିଲାମାନଙ୍କ କ୍ଲାସ ଆଡ଼େ ଯାଆନ୍ତି ।'' ହରିବାବୁ ଉତ୍ୟକ୍ତ ହୋଇ କହିଲେ, " - ସାର୍, ଆଉ ଅଧିକ ଭଣ୍ଡାମିକୁ ପ୍ରଶ୍ରୟ ଦେଲେ ପରିଣତି ଭୟାବହ ହେବ ।''

ପୂର୍ବରୁ ଇନ୍‌ସପେକ୍ଟରଙ୍କ ସନ୍ଦେହ ଘନୀଭୂତ ହୋଇଥିଲା । ସେ ହରିବାବୁଙ୍କ ଆଡ଼କୁ ଚାହିଁବାରୁ ସେ କହିଲେ, " — ପିଲାଟି ଯାହାକୁ ଦେଖାଇଲା, ସେ ମଧ୍ୟ କାଶୀବାବୁ । କାଶୀନାଥ ମହାନ୍ତି, ସରପଞ୍ଚ ପ୍ରତାପଶାସନ । କାଶୀନାଥ ନାୟକ ନୁହନ୍ତି । ସତ୍ୟ କିପରି ଆତ୍ମପ୍ରକାଶ କରେ ଆଜି ତାହାର ପ୍ରକୃଷ୍ଟ ପ୍ରମାଣ ପାଇଲେ । ଏଥର ସରପଞ୍ଚ କି ହାଇସ୍କୁଲର କମିଟିକୁ ଦଣ୍ଡ ଦେବେ ଦେଖିବାକୁ ବାକି ରହିଲା ।'' ଏତିକି କହି ସେ ମୋତେ ଏକ ପ୍ରକାର ଭିଡ଼ି ଆଣିଲେ । କିଛି ସମୟ ପାଇଁ ବାତାବରଣ ବେଶ୍ ସରଗରମ ହୋଇ ଉଠିଥିଲା ।

## ସ୍ତମ୍ଭରୁ ହୋଇଲେ ବାହାର

ମୁଁ ମାତ୍ର ଦୁଇମିନିଟ୍ ପାଇଁ ନୀରବ ରହିବାକୁ ଜଣାଇ କହିଲି, " —ମହାଶୟ, ଅନ୍ୟାୟ ଅତ୍ୟାଚାରର ପରିମାଣ ଅତ୍ୟଧିକ ହୋଇଥିବାରୁ ପ୍ରଭୁ ନିଜେ ସ୍ତମ୍ଭରୁ ବାହାରି

ହିରଣ୍ୟକୁ ହତ୍ୟା କରିଥିଲେ । ଆଜି କେତେ ସହସ୍ର ବର୍ଷ ପରେ ପୁଣି ସେଇ ପୁରୁଣା କଥାର ପୁନରାବୃତ୍ତି ହୋଇ ମୋତେ ଆଶାତୀତ ଶାନ୍ତି ଓ ସନ୍ତୋଷ ପ୍ରଦାନ କରିଛି । ମୋର ଆଉ ଅଧିକ କିଛି କହିବାର ପ୍ରୟୋଜନ ନାହିଁ ।

ମୁଁ ହାତଯୋଡ଼ି କହିଲି – "ଆଜିର ଆଲୋଚନା ସବୁଦିନ ପାଇଁ ଏ ଅଞ୍ଚଳର ଲୋକମାନଙ୍କ ମନରେ ଗଭୀର ରେଖାପାତ କରିବ । ବିଶେଷ କରି "ସ୍ତମ୍ଭରୁ ହୋଇଲେ ବାହାର, ମାଇଲେ ହିରଣ୍ୟଅସୁର'' କଥାଟି ସମସ୍ତଙ୍କ ପାଇଁ ବେଶ୍ ଉପଭୋଗ୍ୟ ହୋଇଛି । ଆମେ ପ୍ରତିହିଂସା ପ୍ରତିଶୋଧ ବିଷୟରେ ଚିନ୍ତା ନକରି ପ୍ରଗତି ପାଇଁ ଯୋଜନା କରିବା । ମୁଁ ଆସିବାର ୧୭ ବର୍ଷ ଅତିବାହିତ ହୋଇଗଲାଣି । ଏ ଦୀର୍ଘ ସମୟଭିତରେ ମାତ୍ର ଗୋଟିଏ ପୁରସ୍କାର ବିତରଣ ଉତ୍ସବ ଅନୁଷ୍ଠିତ ହୋଇଥିଲା । ମୋର ଅନୁରୋଧ, ଆପଣମାନେ ପୂର୍ଣ୍ଣ ସହଯୋଗ ଓ ସାହାଯ୍ୟ ପ୍ରଦାନ କଲେ ମୁଁ ଅତିଶୀଘ୍ର ପୁଣି ଏକ ବଡ଼ଧରଣର ପୁରସ୍କାର ବିତରଣ ସଭା କରି ପାରିବି ଓ ତାହା ପୂର୍ବ ସଭାଠାରୁ ଆହୁରି ସୁନ୍ଦର ଆହୁରି ଆକର୍ଷଣୀୟ ହେବ ।'' ଖେଳ, କୁଦ, ନାଚ, ଗୀତ ଏବଂ ଅଭିନୟ ଆଦିର ପରିକଳ୍ପନା ସମସ୍ତଙ୍କୁ ଆକର୍ଷିତ କରିଥିଲା । ବିଶେଷ କରି ମୋ ସ୍କୁଲର ଶିକ୍ଷକମାନେ ଏଥିରେ ଅତ୍ୟନ୍ତ ଉତ୍ସାହିତ ହୋଇଥିଲେ । କହିବା ନିଷ୍ପ୍ରୟୋଜନ ଯେ ସେତେବେଳେ ସେ ସହକାରୀମାନଙ୍କ ମଧ୍ୟରେ କ୍ରୀଡ଼ାବିତ୍ ସଙ୍ଗୀତ ଏବଂ ନୃତ୍ୟାଭିନୟରେ ପାରଦର୍ଶିତା ଲାଭ କରିଥିବା କୃତୀଶିକ୍ଷକଙ୍କର ଅଭାବ ନଥିଲା ।

ସଭାରେ ସଭାପତିତ୍ୱ କରିବା ପାଇଁ ମୁଁ ତତ୍କାଳୀନ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ନାମ ପ୍ରସ୍ତାବ କରିବାରେ କମିଟି ସଭ୍ୟମାନେ ନାପସନ୍ଦ କଲେ । କାରଣ ପ୍ରାଇମେରୀ ସ୍କୁଲକୁ ଶିକ୍ଷାମନ୍ତ୍ରୀ ଆସିବାକୁ ଆଦୌ ଇଚ୍ଛା କରିବେ ନାହିଁ ।

ମୁଁ ନିମାପଡ଼ାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପାରଳା ମହାରାଜଙ୍କୁ ଆଣି ପାରିଥିବା ବିଷୟ କହିବାରେ ହରିବାବୁ କହିଲେ, " – ଚେଷ୍ଟା କରାଯାଉ । ଅକୃତକାର୍ଯ୍ୟ ହେଲେ ବିକଳ୍ପ ଚିନ୍ତା କରାଯିବ ତାହାହିଁ ହେଲା ।

## ସ୍କୁଲର ପୁରସ୍କାର ବିତରଣ

ଦୁଇଦିନ ପରେ ହରିବାବୁ ଓ ଆଉ ଦୁଇଜଣ ସଭ୍ୟ ବନମାଳୀ ବାବୁଙ୍କୁ ତାଙ୍କ ସରକାରୀ ବାସଭବନରେ ସାକ୍ଷାତ କରିବାକୁ ଗଲେ । ସାକ୍ଷାତ ମଧ୍ୟ ହେଲା । ମାତ୍ର ମନ୍ତ୍ରୀ ସମୟ ନାହିଁ କହି ଫେରାଇ ଦେଲେ ।

ସବୁ ବ୍ୟବସ୍ଥା କରିଥିଲେ ମଧ୍ୟ ମୋ ମନରେ ଆଦୌ ଶାନ୍ତି ନଥାଏ ।

ଏଣେ ଲାଇବ୍ରେରୀ ଘରେ ଖେଳଛୁଟି ପରଠାରୁ ନୃତ୍ୟ, ଗୀତ ଓ ଅଭିନୟ ଅଭ୍ୟାସ ଆରମ୍ଭ ହୋଇଗଲା । ଚାନ୍ଦା ଆଦାୟ, ପେଣ୍ଡାଲ କାର୍ଯ୍ୟ, ଆଲୋକ ବ୍ୟବସ୍ଥା ଆଦି ଯଥାରୀତି ବିଭିନ୍ନ ବ୍ୟକ୍ତିଙ୍କ ଦାୟିତ୍ୱରେ ଦିଆ ହୋଇଗଲା ।

ସବୁ ହୋଇମଧ୍ୟ ମୋ ମନ ସମ୍ଭାଳି ହେଲା ନାହିଁ । ମୁଁ କାହାକୁ ନକହି ଏକା ବନମାଳୀ ବାବୁଙ୍କୁ ସାକ୍ଷାତ କରିବାକୁ ଚାଲିଗଲି । ବନମାଳୀ ବାବୁ ଆମ ପିପିଲି ନିର୍ବାଚନ ମଣ୍ଡଳୀର ବିଧାୟକ । ମୋ ସହିତ ତାଙ୍କର ସଂପର୍କ ଅତ୍ୟନ୍ତ ନିବିଡ଼ । ମୁଁ ତାଙ୍କ କ୍ୱାର୍ଟରରେ ପହଞ୍ଚି ଭିତରକୁ ଗଲି । ଖବର ପାଇ ବନମାଳୀବାବୁ ବୈଠକଖାନାକୁ ଆସି ବହୁତ ଖୁସି ହେଲେ । କିନ୍ତୁ ମୋର ଶୁଖିଲା ମୁହଁ ଦେଖି "କଣ ଅସୁବିଧା ହୋଇଛି'' ବୋଲି ପ୍ରଶ୍ନ କଲେ । ମୁଁ ପୂର୍ବକଥା କହିବାକୁ ସେ ଆଶ୍ଚର୍ଯ୍ୟଚକିତ ହୋଇ କହିଲେ, "ନା' ଏପରିକି କେହି ଲୋକ ମୋ ପାଖକୁ ଆସି ନାହାନ୍ତି । ଆପଣ ଆସିଲେ ମୁଁ ନଯିବା ପ୍ରଶ୍ନ ଉଠୁଛି କୋଉଁଠି ?'' ମୁଁ ତାଙ୍କ ମନେ ପକାଇବା ପାଇଁ ହରିବାବୁଙ୍କ କଥା କହିଲି । କିଛି ସମୟ ଚିନ୍ତା କରି କହିଲେ, " – ମନେ ପଡ଼ିଲା । "ସେମାନେ ତ ବାଳକାଟି ନାମ ଉଚ୍ଚାରଣ କରିନାହାନ୍ତି । ଆଉ କେଉଁଠା କଥା କହିଛନ୍ତି । ମନା କରି ଦେଇଛି ।''

ମୁଁ କହିଲି, "ସେମାନେ ହୁଏତ ପ୍ରତାପଶାସନ ଉ.ପ୍ରା. ବୋଲି କହିଥିବେ । ପ୍ରତାପଶାସନ ବାସ୍ତବ ରେଭିନ୍ୟୁ ଗ୍ରାମ ହେଲେ ମଧ୍ୟ ସେ କଥା କେହି ଜାଣନ୍ତି ନାହିଁ । ବାଳକାଟି କହିଲେ ଓଡ଼ିଶା କାହିଁକି ସୁଦୂର, କଲିକତା, ବମ୍ବେ ଆଦି ସ୍ଥାନରେ ବେଶ୍ ଜଣାଶୁଣା । ବାଳକାଟି ନାମଟି ଇତିହାସ ପୃଷ୍ଠାରେ ଥିଲେ ମଧ୍ୟ ଭୂଗୋଳରେ ନାହିଁ । ସନ୍ଦେହରେ ପଡ଼ି ମୁଁ ଆସିବାକୁ ବାଧ୍ୟ ହେଲି । କୁଂଜବାବୁ ମଧ୍ୟ ଆପଣଙ୍କୁ ଦେଖିବା ପାଇଁ ଖୁବ୍ ଆଶାୟୀ ଥିଲେ ।''

କୁଂଜବାବୁ (କୁଂଜ ବିହାରୀ ମହାନ୍ତି) ବନମାଳୀ ବାବୁଙ୍କ ଖୋର୍ଦ୍ଧା ହାଇସ୍କୁଲର ଗୁରୁ । ତାଙ୍କ ଯୋଗୁ ବନମାଳୀବାବୁ ବାଳକାଟିକୁ ଏକ ତୀର୍ଥ ବୋଲି ଜ୍ଞାନ କରନ୍ତି । ତାଙ୍କ ନାମ ଉଚ୍ଚାରଣ କରିବା ମାତ୍ରେ ସେ ଠିଆ ହୋଇ ଆଖିବୁଜି ପ୍ରଣତି ନିବେଦନ କରିଥିଲେ । ମୋତେ କହିଲେ, "– ମୁଁ ନିଶ୍ଚୟ ଯିବି । ଆପଣ ଦିନ ସ୍ଥିର କରନ୍ତୁ ।'' ମୁଁ କହିଲି, " ମୁଁ କ'ଣ ଶିକ୍ଷାମନ୍ତ୍ରୀ କି ? ଆପଣ ଡାଏରୀ ଦେଖି ଆଜିଠାରୁ ଠିକ୍ ୨୦ ଦିନପରେ ଏକ ଦିନ ନିର୍ଦ୍ଦିଷ୍ଟ କରିବାକୁ ଅନୁରୋଧ ।''

ଏତିକି ମାତ୍ର କଥା - ମନ୍ତ୍ରୀ କହିଲେ: "ଆପଣ ଯାଆନ୍ତୁ ମୁଁ ୩/୪ ଦିନ ଭିତରେ consent letter ପଠାଇ ଦେବି । ପ୍ରତାପଶାସନ ଯେ ବାଳକାଟି ଏହା

ମୋ ଧାରଣାରେ ମଧ୍ୟ ନାହିଁ ।'' ମୁଁ ଅତ୍ୟନ୍ତ ହୃଷ୍ଟଚିତ୍ତରେ ଫେରି ଆସିଲି ।

ହରିବାବୁ, କୃଷ୍ଣବାବୁ ସମସ୍ତେ ଥିଲେ । ମୁଁ ତାଙ୍କୁ ହସି ହସି କହିଲି, "ପ୍ରତାପଶାସନ କହି ଆପଣ ଯେଉଁ ଭୁଲ୍ କରିଥିଲେ, ମୁଁ ତାକୁ ବାଲକାଟି କହି ଠିକ୍ କରିଦେଇ ଆସିଛି । ଏଥର କାମ ଯୋରରେ ଚାଲୁ ।''

ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସମସ୍ତ କାର୍ଯ୍ୟ ଶୃଙ୍ଖଳିତ ଭାବରେ ଚାଲିଥାଏ । ସମସ୍ତେ ଆନନ୍ଦ ଉତ୍ସାହ ମଧ୍ୟରେ ସଭାଟିକୁ ସାଫଲ୍ୟ ମଣ୍ଡିତ କରିବା ପାଇଁ ଆନ୍ତରିକତାର ସହିତ ଲାଗିଥାନ୍ତି ।

ଠିକ୍ ସଭା ହେବା ଦିନକୁ ମଞ୍ଚସଜ୍ଜା, ଆଲୋକ ବ୍ୟବସ୍ଥା ବିବରଣୀ ଲେଖା କିଛି ହେଲେ କାମ ବାକି ରହିନଥାଏ ।

ନିର୍ଦ୍ଦିଷ୍ଟ ସମୟରେ ମନ୍ତ୍ରୀ ଆସିଲେ । ପିଲାମାନେ ଅତ୍ୟନ୍ତ ଆନନ୍ଦର ସହିତ ତାଙ୍କୁ ମଞ୍ଚାସୀନ କରାଇବାକୁ ନେବା ସମୟରେ ସେ ଗୁରୁ କୁଂଜବାବୁଙ୍କୁ ଦେଖି ତାଙ୍କ ପାଦସ୍ପର୍ଶ କରି ପ୍ରଣତି ନିବେଦନ କରିଥିଲେ ।

ସଭାକାର୍ଯ୍ୟ ଆରମ୍ଭ ହେଲା । ମୁଁ ବାର୍ଷିକ ବିବରଣୀରେ ଅନେକ କଥା ବର୍ଣ୍ଣନା କରିଥାଏ । ଏହା ସଭା ଆରମ୍ଭର ପ୍ରଥମ କାର୍ଯ୍ୟ ହୋଇଥିବାରୁ ସମସ୍ତେ ନିବିଷ୍ଟ ମନରେ ଶୁଣୁଥାନ୍ତି । ସ.ଇ. ଡି.ଆଇ, ବି.ଡ଼ି.ଓ.ଙ୍କ ସହିତ ଆମ ସର୍କଲର ପ୍ରାୟ ସମସ୍ତ ଶିକ୍ଷକଙ୍କ ଗହଣରେ ସଭାସ୍ଥଳୀଟି ପୂରି ଉଠିଥାଏ । ଏଠାରେ ଛାତ୍ରାବାସ କରି ତହିଁରେ ତୃତୀୟ ଶ୍ରେଣୀରୁ ପଞ୍ଚମ ପର୍ଯ୍ୟନ୍ତ ୧୩ ଜଣ ଓ ମି.ଇ.ସ୍କୁଲରୁ ଛାତ୍ର ୧୫-୧୬ ଜଣଙ୍କୁ ସ୍ଥାନ ଦେଇଛି ବୋଲି ଉଲ୍ଲେଖ କରିଥିବା ଶୁଣି ସଭାପତି ପାଖରେ ବସିଥିବା ଗୁରୁ କୁଂଜବାବୁଙ୍କୁ କିଛି ପଚାରିବା ମୁଁ ଲକ୍ଷ୍ୟ କରିଛି । ବିବରଣୀ ପାଠପରେ ମୁଁ କହିଲି :

"ମାନନୀୟ ସଭାପତି ମହୋଦୟଙ୍କ ସନ୍ଦେହ ହେବା ଯଥାର୍ଥ । ମୁଁ ନିମାପଡ଼ାରେ ୪ର୍ଥ ଓ ୫ମରୁ ମାଟ୍ରିକ ଶ୍ରେଣୀର ଛାତ୍ରଙ୍କୁ ଛାତ୍ରାବାସରେ ରଖି ଅତ୍ୟନ୍ତ ସୁଚାରୁ ଭାବେ ପରିଚାଳନା କରିଥିବା କଥା ତତ୍ରତ୍ୟ ଅନୁଷ୍ଠିତ କରିଥିବା ପୁରସ୍କାର ବିତରଣ ସଭାରେ ବାର୍ଷିକ ବିବରଣୀରେ ପାଠ କଲାବେଳେ ତତ୍-କାଳୀନ ପ୍ରଧାନମନ୍ତ୍ରୀ ପାରଳା ମହାରାଜା ଆମର ସଭାପତି ଥାଇ ଠିକ୍ ଏହିପରି ଭାବରେ ସନ୍ଦୀହାନ ହୋଇପଡ଼ି ଏମ୍.ଏଲ୍.ଏ. ମୋହନ ଦାସଙ୍କୁ ପଚାରିଥିଲେ ଓ ମୋହନ ବାବୁ କହିଲେ - ଆମ ପରିବାରର ୫ ଜଣ ଛାତ୍ର ଏହି ଉ.ପ୍ରା.ର ଛାତ୍ରାବାସରେ ଅଛନ୍ତି ।

ଆପଣ ଯିବା ପୂର୍ବରୁ ମୁଁ ଏଠିକାର ଛାତ୍ରାବାସ କିପରି ଆଶ୍ରମ ଢ଼ାଞ୍ଚାରେ ପରିଚାଳିତ ହୁଏ ଦେଖାଇଦେବି ।''

ଆଜି ମଧ୍ୟ ଉପସ୍ଥିତ ମନ୍ତ୍ରୀ ମହୋଦୟଙ୍କ ସନ୍ଦେହ ମୋଚନ ପାଇଁ ଜଣାଉଛି ବିଜୟାନନ୍ଦ ମହାନ୍ତି, ବଂଶୀଧର ମିଶ୍ର, ମଧୁସୂଦନ ଜେନା ଆଦି ପାଞ୍ଚଜଣ ପିଲା ଏହି ଛାତ୍ରାବାସରେ ତୃତୀୟ ଶ୍ରେଣୀରୁ ଅଧ୍ୟୟନ କରି ଉପର ଶ୍ରେଣୀକୁ ଗଲେଣି । ସେମାନଙ୍କ ମଧ୍ୟରୁ ୩ ଜଣ ଛାତ୍ର ନି.ପ୍ରା. ବୃତ୍ତି ପ୍ରାପ୍ତ ହୋଇଛନ୍ତି ।

ତୃତୀୟ ଶ୍ରେଣୀର ପିଲାଙ୍କୁ ହଷ୍ଟେଲ ପରି ଏକ ଶୃଙ୍ଖଳିତ ପରିବେଶରେ ରଖିବା ନିଶ୍ଚିତ ଆୟାସସାଧ୍ୟ । ମାତ୍ର ଆଦୌ ଅସମ୍ଭବ ନୁହେଁ । ଶିକ୍ଷକ ଦାୟିତ୍ୱସଂପନ୍ନ ନହେଲେ ଛୋଟ ପିଲାଙ୍କୁ ଚଳାଇବା ଅସମ୍ଭବ ହୋଇ ପଡ଼ିବ । ମୋର ସଂକଳ୍ପ ଯେ ପ୍ରତିଭାସଂପନ୍ନ ଛାତ୍ରଛାତ୍ରୀଙ୍କୁ ମୁଁ ଯାବତୀୟ କଷ୍ଟସ୍ୱୀକାର ପୂର୍ବକ ସେମାନଙ୍କୁ ପାଖରେ ରଖି ତାଲିମ୍ ଦେବି । ଏହା ମୋର ଏକ ପ୍ରଧାନ ଆଗ୍ରହ ।''

ଏହାପରେ ନୃତ୍ୟ, ଗୀତ, ଅଭିନୟ ଆଦି ଅତ୍ୟନ୍ତ ଶୃଙ୍ଖଳିତ ଭାବରେ ଚାଲିଲା । ପ୍ରାୟ ଘଣ୍ଟାଏ ପରେ ସଭାପତି ଅନ୍ୟତ୍ର ଯିବାର ପ୍ରୋଗ୍ରାମ ଥିବାରୁ ତାଙ୍କ ବକ୍ତବ୍ୟ ରଖି ପୂଜ୍ୟ କୁଂଜବାବୁଙ୍କୁ ସଭାପତିର ଦାୟିତ୍ୱ ଅର୍ପଣ କରି ଚାଲିଯାଇଥିଲେ । ବକ୍ତବ୍ୟରେ ସେ ଯାହାସବୁ କହିଥିଲେ ତାହା ଏକାନ୍ତ ପ୍ରଣିଧାନଯୋଗ୍ୟ ଓ ମୋ କାର୍ଯ୍ୟର ଏକ ଅତି ମୂଲ୍ୟବାନ ସାର୍ଟିଫିକେଟ୍ ରୂପେ ରହିଥିଲା ।

ସର୍କଲ ସ.ଇ., ଡ଼ି.ଆଇ. ବିଡ଼ିଓ ଅନ୍ୟ ଅନେକ କିଛି କିଛି କହିଥିଲେ । ତେବେ ମନ୍ତ୍ରୀ ଯିବା ପରେ ସଭାର ଗୁରୁତ୍ୱ କିଛି ପରିମାଣରେ ଊଣା ପଡ଼ିଯାଇଥିଲା ।

ପିଲାମାନେ ବିଭିନ୍ନ ବିଷୟରେ ଅନେକ ପ୍ରାଇଜ ପାଇଥିଲେ । ଅଭିଭାବକଭାବେ ଉପସ୍ଥିତ ଥିଲେ । ଏହି ଉତ୍ସବହିଁ ବାଲକାଟି ଅଞ୍ଚଳରେ ଅତ୍ୟଧିକ ପ୍ରଭାବ ପକାଇଥିଲା । ସମସ୍ତଙ୍କ ମୁଖରୁ ପ୍ରଶଂସା ଶୁଣି ମୁଁ ଅପ୍ୟାୟିତ ହୋଇ ଉଠୁଥିଲି ।

## ସ୍କୁଲର ରେକର୍ଡ଼ ପତ୍ରର ନବୀକରଣ

ପୁରସ୍କାର ବିତରଣୀ ସଭାଟି ଅତ୍ୟନ୍ତ ଆକର୍ଷଣୀୟ ତଥା ପ୍ରଶଂସନୀୟ ହୋଇ ସମାହିତ ହେବା ପରେ ମୁଁ ସ୍କୁଲର ଅଧ୍ୟାପନା ପ୍ରତି ସମଧିକ ଦୃଷ୍ଟି ଦେଲି । ପୂର୍ବରୁ ଯେଉଁ କିଛି record ଥିଲା, ସେ ସମସ୍ତ ବଦଳାଇ ନୂଆ ବନ୍ଧେଇ ଖାତା ଓ ନୂଆ

ଫାଇଲମାନ ଆଣି ସେ ସବୁକୁ ନିଜ ହାତରେ ଲେଖି ଗୋଟିଏ ସ୍ୱତନ୍ତ୍ର ଆଲମାରିରେ ସଂରକ୍ଷିତ କଲି । ଗୋଟିଏ ସରକାରୀ ଅଫିସରେ କିମ୍ବା ହାଇସ୍କୁଲରେ ଯେଉଁ ସବୁ ରେକର୍ଡ଼ ଆବଶ୍ୟକ ହୋଇଥାଏ, ମୁଁ ପ୍ରାଇମେରୀ ସ୍କୁଲରେ ସେ ସବୁ କରି ରଖିଦେଲି ।

## ଦୈନିକ ସଂକ୍ଷିପ୍ତ ପାଠଟୀକା (Daily Lesson Notes )

ପ୍ରାୟ ସବୁ ସ୍କୁଲରେ ଶିକ୍ଷକମାନେ ଶ୍ରେଣୀକୁ ଆସି ପିଲାଙ୍କଠାରୁ ବହି ନେଇ ପାଠ ପଢ଼ାଇଥାନ୍ତି । ମୁଁ ଛୋଟ ଲାଇବ୍ରେରୀଟିଏ କରି ସେଥିରେ ସବୁ ଶ୍ରେଣୀର ପାଠ୍ୟ-ପୁସ୍ତକ ରଖିଥାଏ । ପୂର୍ବପ୍ରସ୍ତୁତି ଥିଲେ ଶ୍ରେଣୀରେ ଅଧ୍ୟାପନା କାର୍ଯ୍ୟ ସରସ, ସୁନ୍ଦର ଓ ପ୍ରାଣବନ୍ତ ହୋଇଥାଏ । ଏ କଥା ପ୍ରତ୍ୟେକ ଶିକ୍ଷକ ଜାଣିଥିଲେ ମଧ୍ୟ ଏହା ଆୟାସସାଧ୍ୟ ଥିବାରୁ ଶିକ୍ଷକମାନେ ପୂର୍ବ ଗତାନୁଗତିକାକୁ ଭୁଲି ପାରନ୍ତି ନାହିଁ ।

ମୁଁ ପ୍ରତି ଶିକ୍ଷକଙ୍କ ପାଇଁ ଗୋଟିଏ ଲେଖାଏଁ ବନ୍ଧେଇ ଖାତା ଆଣି ଆସନ୍ତା କାଲି ଯାହାର ଯେଉଁ ଶ୍ରେଣୀରେ ଯେଉଁ ବିଷୟ ପଢ଼ାଇବାକୁ ଅଛି, ସେ ଉକ୍ତ ବିଷୟର ସଂକ୍ଷିପ୍ତ ଟୀକା ଲେଖିବା ପାଇଁ କହିଲି ଓ କିପରି ଲେଖାଯିବ, ତାହାର ଆଦର୍ଶ ମଧ୍ୟ ଦେଇଥିଲି । ସମସ୍ତେ ଅନିଚ୍ଛାକୃତ ସ୍ୱୀକୃତି ଦେଲେ । ଏଥିରେ କାହାର ଆନ୍ତରିକତା ନଥିଲା । ଯେ ହେତୁ ଏହା ଏକ ଅଭିନବ ଉଦ୍ୟମ ଓ ଶିକ୍ଷକମାନଙ୍କ ଉପରେ ଅଧିକା ବୋଝ ବୋଲି ବିଚାରି ସେମାନେ ବେଠି ତୁଲାଇଲା ପରି କାମ କଲେ । ମୁଁ ପ୍ରତି ଶିକ୍ଷକଙ୍କ ଖାତା ଦେଖି ସଂଶୋଧନ କରିବା ସହିତ କିଛି ମନ୍ତବ୍ୟ ମଧ୍ୟ ଲେଖି ଦେଉଥିଲି । କହିବା ନିଷ୍ପ୍ରୟୋଜନ ଯେ ଶିକ୍ଷକମାନଙ୍କର ଯୋଗ୍ୟତା ଆକାଶଚୁମ୍ବୀ ହୋଇଥିଲେ ମଧ୍ୟ ଲେଖାରେ ଅଜସ୍ର ପ୍ରମାଦ ପରିଦୃଷ୍ଟ ହେଉଥିଲା । କିଛିଦିନ ପରେ ମୋର ସଂଶୋଧନ ସହିତ ମନ୍ତବ୍ୟ ମଧ୍ୟ ରୁଚିକର ହେଲା ନାହିଁ । ଶିକ୍ଷକମାନଙ୍କ ମଧ୍ୟରେ ଗୁଞ୍ଜରଣ ସୃଷ୍ଟି ହେଲା । ବିଶେଷ କରି ବି.ଇଡ଼ି ଜଣେ, ଦୁଇଜଣ ଆଇ.ଏ.ସି.ଟି ଓ ଅନ୍ୟମାନେ ମାଟ୍ରିକ୍ ସି.ଟି. ଥିଲେ । ଅଥଚ ପ୍ରଧାନ ଶିକ୍ଷକର ଦାୟିତ୍ୱ ମୁଁ ନେଇଥିଲେ ମଧ୍ୟ ମୁଁ ମି.ଇ. ଟ୍ରେଣ୍ଡ ଥିଲି । ମୋର ଯଥାର୍ଥ ମନ୍ତବ୍ୟ ଉଚ୍ଚଶିକ୍ଷିତ ଶିକ୍ଷକମାନଙ୍କୁ ଅସମ୍ମାନଜନକ ବୋଧ ହେଲା । ମାତ୍ର କେହି ଜଣେ ହେଲେ ମୋ ସଂଶୋଧନ କିମ୍ବା ପ୍ରଦତ୍ତ ମନ୍ତବ୍ୟ ଉପରେ ଆଲୋଚନା କରିବାକୁ ସାହସ କରିନଥିଲେ । ଛଅ ସାତମାସ ଏହିପରି ଚକ୍ଷୁ କୁଟିବା ପରେ ମୁଁ ଉକ୍ତ କାର୍ଯ୍ୟକୁ ବନ୍ଦ କରିଦେଲି । ଦୈନିକ ପୂର୍ବପ୍ରସ୍ତୁତି ନିମନ୍ତେ ବିଧାନ ଥିଲେ ମଧ୍ୟ ତାହା କୌଣସିଠାରେ ଅନୁସୃତ ନହେଉଥିବା ଦୃଷ୍ଟିରୁ ମୁଁ ଅଧିକ ଗୁରୁତ୍ୱ ଆରୋପ କରିବାକୁ ଇଚ୍ଛା କରିନଥିଲି ।

## ଦଣ୍ଡନିରୋଧ ବ୍ୟବସ୍ଥା

ନିମାପଡ଼ାରୁ ମୋର ମଟୋ (Motto) ଥିଲା, Spare the rod, spoil the child ନୁହେଁ build the child(ବେତ ଛାଡ଼, ଛାତ୍ର ଗଢ଼) ସେ କଥା ମୁଁ ପୂର୍ବରୁ ଲେଖିଛି । ମାତ୍ର ଏଠାରେ ପରିବେଶ କିଞ୍ଚିତ୍ ପୃଥକ ଥିଲା । ନୂଆ ଘରକୁ ଆସିବା ପୂର୍ବରୁ U.P., M.E. ଓ High School ଗୋଟିଏ ହତା ମଧ୍ୟରେ ପରିଚାଳିତ ହେଉ ଥିବାରୁ ପ୍ରାଇମେରୀ ପିଲା ମାଡ଼ଖାଇ ଚିତ୍କାର କଲେ ଅନ୍ୟ ସ୍କୁଲର ଶିକ୍ଷକ ଆପତ୍ତି କରିଥାନ୍ତି । ମାତ୍ର ଏବେ ଉ.ପ୍ରା. ବିଦ୍ୟାଳୟଟି ତା'ର ସ୍ୱତନ୍ତ୍ର ଗୃହକୁ ସ୍ଥାନାନ୍ତରିତ ହେବା ପରେ ମୋ ଶିକ୍ଷକମାନେ, ଏପରିକି ପ୍ରଥମ ଶ୍ରେଣୀର ପିଲାଙ୍କୁ ବେତ୍ରାଘାତ କରିବାକୁ ସଂକୋଚବୋଧ କରୁନଥିଲେ । ଏଥିରେ ଯେତେବେଳେ ଆମ ଶିକ୍ଷକମାନଙ୍କ ମଧ୍ୟରୁ କାହାଠାରେ ହଠାତ୍ ଦୁର୍ବାସା ଆବିର୍ଭାବ ହୋଇପଡ଼ନ୍ତି, ସେତେବେଳେ ମେଣ୍ଢାଗୁହାଳରେ ନିଆଁ ଲାଗିଯାଏ । ପଥଚାରୀ ବ୍ୟକ୍ତି ଏପରିକି ରାସ୍ତା କଡ଼ର ଦୋକାନୀ ଏ ପ୍ରକାର ନିଷ୍ଠୁରତାକୁ ସହ୍ୟ କରି ପାରନ୍ତି ନାହିଁ । ମୋ ପାଖକୁ ଖବର ଆସେ । ମୁଁ ସବୁଠିକ୍ କରିଦେବି କହି ଅଭିଯୋକ୍ତାଙ୍କୁ ସନ୍ତୁଷ୍ଟ କରିଦିଏ । ୨/୩ ଥର ଏପ୍ରକାର ଦୁର୍ବାସାଙ୍କ ଅତ୍ୟାଚାର ଦେଖି ମୁଁ ଆଉ ଥୟଧରି ପାରିଲି ନାହିଁ ।

ମୁଁ ଏକ ନୋଟିସ ଲେଖି ପ୍ରତି ଶିକ୍ଷକଙ୍କ ପାଖକୁ ସ୍ୱାକ୍ଷର କରିବା ପାଇଁ ପଠାଇ ଦେଲି । କୌଣସି ଶିକ୍ଷକ ଶ୍ରେଣୀରେ ବେତ ବ୍ୟବହାର କରିପାରିବେ ନାହିଁ । ଛୋଟ ଛୋଟ ପିଲାମାନଙ୍କୁ କଠିନଦଣ୍ଡ ଦ୍ୱାରା ନୁହେଁ ସ୍ନେହ, ଆଦର କଲେ ଅଧିକ ସୁଫଳ ମିଳେ । ମୋର ଏ ପ୍ରକାର ସତର୍କତାକୁ ଯେଉଁ ଶିକ୍ଷକ ଗ୍ରହଣ କରି ପାରିବେନାହିଁ ସେ ବା ସେମାନେ ମୋତେ ଲିଖିତ ଭାବରେ ଜଣାଇଲେ ମୁଁ ତାଙ୍କ ବଦଳି ପାଇଁ ସୁପାରିଶ୍ କରିବି ।

ଏ ନୋଟିସ୍‌ଟି ପାଇ ପୁଣି ଏକ ମୃଦୁଗୁଞ୍ଜରଣ ସୃଷ୍ଟି ହେଲା । ଜଣେ ଦିଜଣ ଆସି କହିଲେ, ମାଡ଼ ନଦେଲେ ଏ ହାତୁଆଳୁଆ ଯାବତୀୟ ବଦମାସ କରିବେ । ମୁଁ ସ୍ପଷ୍ଟ କହିଦେଲି ପ୍ରଥମେ ବିନା ଦଣ୍ଡରେ ପାଠପଢ଼ା ଚାଲୁ । ପରେ କଅଣ କରାଯିବ ସେ କଥା ବୁଝିବା । ଏ ସ୍କୁଲକୁ ଆସିବା ପାଇଁ ଶିକ୍ଷକମାନେ ନାନା ପ୍ରକାର ଉଦ୍ୟମ କରୁଥିବା ବେଳେ ଏଠାରୁ ବଦଳି ହୋଇ କେଉଁ ଏକ ଅନାମଧେୟ ସ୍କୁଲକୁ ଯିବାକୁ କେହି ଇଚ୍ଛା କରିନଥିଲେ ।

ମୋର ଧାରଣା ସ୍କୁଲରେ ହେଉଥିବା ଅପଚୟ (drop-out) ପାଇଁ ଯେତେଗୁଡ଼ିଏ କାରଣ ଅଛି ତନ୍ମଧ୍ୟରେ ପିଲାମାନଙ୍କୁ ଦିଆଯାଉଥିବା ନୃଶଂସ ଦଣ୍ଡ ହିଁ ଏକ ମୁଖ୍ୟ କାରଣ ଅଟେ ।

କିଛିଦିନ ବେଶ୍ ସତର୍କତା ଅବଲମ୍ବନ କରିଥିଲେ ଶିକ୍ଷକମାନେ । ମାତ୍ର ଦୀର୍ଘଦିନର ସେହି ନିନ୍ଦନୀୟ ଅଭ୍ୟାସ ବେଳେ ବେଳେ ବିଧା, ଚାପୁଡ଼ା ଆକାରରେ ଆତ୍ମପ୍ରକାଶ କରୁଥିବା ମୋତେ ଅବିଦିତ ରହିଲା ନାହିଁ ।

ଏଥରକ ମୁଁ ସତର୍କ କରାଇବା କିମ୍ବା ନୋଟିସ୍ ଦେବାକୁ ଇଚ୍ଛା ନକରି ପ୍ରତିଦିନ ବିଭିନ୍ନ ଶ୍ରେଣୀ ପରିଦର୍ଶନ କରି ପରିଦର୍ଶନର ଫଳାଫଳ ମନ୍ତବ୍ୟ ଖାତାରେ ଉଲ୍ଲେଖ କଲି ଓ ଶିକ୍ଷକମାନେ ସେଥିରେ ସ୍ୱାକ୍ଷର କରୁଥିଲେ ।

ଏ ପ୍ରକାର କାର୍ଯ୍ୟ ମଧ୍ୟ ଆମ ସ୍କୁଲର ଶିକ୍ଷକମାନଙ୍କର ହଜମ ହେଲା ନାହିଁ। କାରଣ ସ୍ୱରୂପ ଏତିକି ଜାଣିଲି ଯେ ସର୍କଲ ବା ଜିଲ୍ଲାର କେଉଁ ସ୍କୁଲରେ ଏ ପ୍ରକାର ବ୍ୟବସ୍ଥା ଅନୁସୃତ ହେଉ ନଥିଲେ ମଧ୍ୟ ଏଠାରେ କରାଯାଉଥିବାରୁ ପ୍ରତିବାଦର ସ୍ୱର ଉଠିଲା । ବିଶେଷ କରି ମୁଁ ପରିଦର୍ଶନ କରିବା ପରେ ଯେଉଁ ମନ୍ତବ୍ୟ ଲେଖିଥାଏ, ତାହା ଅନ୍ୟ ଶିକ୍ଷକମାନଙ୍କ ଆତ୍ମସମ୍ମାନ କ୍ଷୁଣ୍ଣ କରୁଥିବା ଅନୁଭୂତ ହେଲା । ଏକଥା ସତ ଯେ ମୋ ମନ୍ତବ୍ୟ ଶିକ୍ଷକମାନେ ସହଜରେ ଗ୍ରହଣ କରି ପାରୁନଥିଲେ । ସମସ୍ତେ ନହେଲେ ମଧ୍ୟ ଅପାରଗ ଶିକ୍ଷକ ତିନିଚାରିଜଣ ବିଭିନ୍ନ ଶିକ୍ଷକଙ୍କ ଆଗରେ ଏପରିକି ସାଧାରଣ ଲୋକଙ୍କୁ ମଧ୍ୟ ସେମାନଙ୍କର ଅସନ୍ତୋଷ ବ୍ୟକ୍ତ କରିଥିଲେ। ମୁଁ ମଧ୍ୟ ମୋର ନୀତି ପରିବର୍ତ୍ତନ କରି ମନ୍ତବ୍ୟକୁ ଗ୍ରହଣୀୟ ଢ଼ଙ୍ଗରେ ଲେଖିଲି। ମୋର ଇଚ୍ଛା ଥିଲା, ଶିକ୍ଷାଦାନରେ ଅନାଗ୍ରହୀ, ଜ୍ଞାନରେ ଦୁର୍ବଳ ଥିବା ଶିକ୍ଷକମାନଙ୍କର ଅନେକ ତ୍ରୁଟି ଆପେ ଆପେ ସଂଶୋଧିତ ହୋଇଯିବ, ମାତ୍ର ସେପରି ହୋଇ ନଥିଲା । ଯେଉଁ ଶିକ୍ଷକମାନେ ମୋ ମତାମତକୁ ଗ୍ରହଣ କରୁଥିଲେ ସେମାନେ ଜଣକ ପରେ ଜଣେ ଅନ୍ୟ ଉ.ପ୍ରା.କୁ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ଲାଭ କରୁଥିଲେ ।

## S.C.E.R.T ବା ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ ଓ ଆମ ସ୍କୁଲ

କେନ୍ଦ୍ରର N.C.E.R.T ଦ୍ୱାରାରେ ଆମ ରାଜ୍ୟର ଯେଉଁ ଅନୁଷ୍ଠାନଟି ଖୋଲାଗଲା, ତା'ର ନାମ ହେଲା ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ । ଏହାର ମୁଖ୍ୟ କାର୍ଯ୍ୟ ବିଶେଷ କରି ମଫସଲ ଅଞ୍ଚଳର ପ୍ରାଥମିକ ଶିକ୍ଷକମାନଙ୍କୁ ଏକତ୍ର କରି କୃତବିଦ୍ୟ ପ୍ରଫେସର ଓ ଲେକ୍‌ଚରଙ୍କ ଜରିଆରେ ପରିବର୍ତ୍ତିତ ଶିକ୍ଷାପଦ୍ଧତି ସଂପର୍କରେ ଅବହିତ କରିବା ।

ସର୍ବ ପ୍ରଥମେ ପ୍ରଫେସର ଶତ୍ରୁଘ୍ନ ନାଥ ପ୍ରତିଷ୍ଠାନର ମୁଖ୍ୟ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ବହୁ ଅନୁସନ୍ଧାନ ପରେ ସେ ବାଳକାଟି ସ୍କୁଲ ସଂପର୍କରେ ଶୁଣି ଦିନେ ହଠାତ୍ ଆସି ମୋ ସହିତ ସାକ୍ଷାତ କଲେ ଓ ଦୀର୍ଘ ସମୟ ବିଭିନ୍ନ ବିଷୟ

ଆଲୋଚନା କଲେ । ସେ ଦିନ ମୁଁ ୫ମ ଶ୍ରେଣୀରେ ବିଜ୍ଞାନ ପଢ଼ାଉଥିଲି । ତାଙ୍କ ସହିତ ମୋର ଆଗରୁ ପରିଚୟ ଥିଲା । ମୁଁ ବିଜ୍ଞାନ ପଢ଼ାଉଥିବା ସଂପର୍କରେ ସେ ମୋତେ ପଚାରିଲେ, "ଆପଣ ବିଜ୍ଞାନ ଶିକ୍ଷା ବିଷୟରେ କିପରି ଧାରଣା ପାଇଲେ ?'' ମୁଁ କହିଲି, "ଏ ବିଷୟରେ ମୋର ଆଦୌ ଧାରଣା ନଥିଲା । ପାଠ୍ୟପୁସ୍ତକ ପାଇବା ପରେ ମୁଁ ସର୍ବପ୍ରଥମେ ବହି ଦୁଇଟି ହାଇସ୍କୁଲର ବିଜ୍ଞାନ ଶିକ୍ଷକଙ୍କୁ ଦେଇ ଆବଶ୍ୟକ ଉପକରଣର ଏକ ଲିଷ୍ଟ କରାଇ ଆଣି ସଙ୍ଗେ ସଙ୍ଗେ କଟକରୁ ନେଇ ଆସିଲି । ଅବସର ସମୟରେ ଉକ୍ତ ବିଜ୍ଞାନ ଶିକ୍ଷକଙ୍କ ସହାୟତାରେ ଯଥାର୍ଥ ଜ୍ଞାନ ଆହରଣ କରିପାରିଥିଲି ।''

ଶତ୍ରୁଘ୍ନ ବାବୁ ୨/୪ ଥର ଆମ ସ୍କୁଲକୁ ଆସିଛନ୍ତି ଓ ସର୍କଲ ଶିକ୍ଷକମାନଙ୍କୁ ଟ୍ରେନିଂ ଦେବାର ବ୍ୟବସ୍ଥା କରିଛନ୍ତି । ତାଙ୍କ ପରେ ଅନ୍ୟମାନେ ପ୍ରତିଷ୍ଠାନର ଅଧ୍ୟକ୍ଷ ହୋଇ ଆସିଛନ୍ତି । ସେମାନେ ସମସ୍ତେ ଆମରି ସ୍କୁଲକୁ ଶିକ୍ଷାଦାନର ଉପଯୁକ୍ତ ସ୍ଥାନ ଭାବରେ ଗ୍ରହଣ କରି ନେଇଥାନ୍ତି । ସେମାନଙ୍କ ନାମ ମୋର ମନେ ପଡୁନାହିଁ । ମାତ୍ର ଯେଉଁ ବିଶେଷ ବ୍ୟକ୍ତି ଅଧ୍ୟକ୍ଷରୂପେ ଆସି ଆମ ସ୍କୁଲରେ ପଦାର୍ପଣ କଲେ ତାଙ୍କ ନାମ ଦୀନବନ୍ଧୁ ପାଣିଗ୍ରାହୀ । ଅନ୍ୟ ଅଧ୍ୟକ୍ଷମାନଙ୍କ ତୁଳନାରେ ଦୀନବନ୍ଧୁ ବାବୁ ଏକ ସ୍ୱତନ୍ତ୍ର ବ୍ୟକ୍ତି ଭାବରେ ବିବେଚିତ ହୁଅନ୍ତି ।

ପ୍ରଥମ ଦିନ ସେ ଆମ ସ୍କୁଲ ଗୃହକୁ ହାଇସ୍କୁଲ ମନେ କରି ରାସ୍ତାକଡ଼ କେବିନରୁ ବୁଝି ଭିତରକୁ ଗଲେ । ସଂପୂର୍ଣ୍ଣ ଅପରିଚିତ ହେଲେ ମଧ୍ୟ ମୁଁ ତାଙ୍କୁ ଅଫିସରେ ଯଥାସମ୍ମାନ ଦେଇ ବସାଇବା ପରେ ପ୍ରଥମେ ଅଫିସ ଗୃହର ଚତୁର୍ଦ୍ଦିଗ ନିରୀକ୍ଷଣ କରିବା ପରେ ନିଜର ପରିଚୟ ଦେଇ କହିଲେ, "ପ୍ରତିଷ୍ଠାନର କାଗଜପତ୍ର ଦେଖି ମୁଁ ବହୁତ କିଛି ଜାଣିଥିଲି । ଆପଣଙ୍କ ପରିଚାଳିତ ସ୍କୁଲର ଫଳାଫଳ ଏକ ସ୍ୱତନ୍ତ୍ର ମାନ୍ୟତା ଦାବୀ କରେ । ଏହି ସ୍କୁଲକୁ ସ୍ଥାୟୀ ଭାବରେ ଏକ ପ୍ରଶିକ୍ଷଣ ରୂପେ ଅନ୍ତତଃ ୨ ମାସରେ ମାତ୍ର ୪/୫ ଦିନ ପାଇଁ ପ୍ରଶସ୍ତ ହଲଟିଏ ଆବଶ୍ୟକ । ଆସନ୍ତୁ ମୁଁ ସମୁଦାୟ କୋଠରୀଗୁଡ଼ିକ ଦେଖିବା ପରେ ଆପଣଙ୍କୁ ଯାହା କହିବି ।''

ଶ୍ରେଣୀ ଭିତରକୁ ପଶିବା ମାତ୍ରେ ସେ ଶିକ୍ଷକଙ୍କ ଟେବୁଲ୍ ଉପରେ daily lesson note ଦେଖି ଆଗ୍ରହର ସହିତ ଉକ୍ତ ପୁସ୍ତକକୁ ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ଯଥାସ୍ଥାନରେ ଥୋଇ ପରବର୍ତ୍ତୀ ଶ୍ରେଣୀମାନଙ୍କୁ ପର୍ଯ୍ୟାୟ କ୍ରମେ ପ୍ରବେଶ କରି ଅନୁରୂପ daily lesson note ଦେଖିବାକୁ ପାଇଥିଲେ । ସ୍କୁଲର ଉତ୍ତର ଦକ୍ଷିଣ ବ୍ଲକ୍‌ଟି ଦେଖିବା ପରେ କିଛି ନକହି ସିଧା ଅଫିସ ଗୃହକୁ ଫେରଆସି କହିଲେ, "ଆପଣଙ୍କ ହଲଟି

ମୋ ଆବଶ୍ୟକତା ପୂରଣ କରିବା ଉପଯୁକ୍ତ ଅଟେ। ଆପଣ ସମ୍ମତ ହେଲେ ୨ ମାସରେ ମାତ୍ର ୪/୫ ଦିନ ଆମେ ସେଇ ହଲଟିରେ ଶିକ୍ଷକମାନଙ୍କୁ ପ୍ରଶିକ୍ଷଣ ଦେବୁ।''

ଏହାପରେ ସେ ଅଫିସକୁ ଆସି ଆସନ ଗ୍ରହଣ ପରେ କହିଲେ, " ଆପଣଙ୍କ ସ୍କୁଲ, ଶିକ୍ଷକ, ଛାତ୍ରସଂଖ୍ୟା ଓ ଶୃଙ୍ଖଳା ଦେଖି ମୁଁ ବହୁତ ଖୁସି । ଗୋଟିଏ ଏପରି ସ୍କୁଲର ରେକର୍ଡ଼ ପତ୍ର ଦେଖିବା ଉଚିତ । ତେଣୁ ଆପଣ ବିଦ୍ୟାଳୟର ସମସ୍ତ କାଗଜପତ୍ର ଆଣନ୍ତୁ । ମୁଁ ଆଲମାରିରୁ ଗୋଟିକ ପରେ ଗୋଟିଏ ଯଥା : Admission Register, Attendance, Teachers' attendance, Log book, despatch register, letters received, cash book ଏବଂ ଅନେକ ଫାଇଲ ଗଦାକରି ଦେଲି । ଗୋଟିକ ପରେ ଗୋଟିଏ ଦେଖି ଦେଖି ଯେତେବେଳେ ସେ cash book ଟି ଧରିଲେ ତାଙ୍କର ସନ୍ଦେହ ହେଲା । ସେ ପଚାରିଲେ ପ୍ରାଇମେରୀରେ cash book କଅଣ ?'' ମୁଁ କହିଲି, ଏହି ବିରାଟ ଗୃହନିର୍ମାଣ ପାଇଁ ୪ର୍ଥ ୫ମ ଶ୍ରେଣୀ ଛାତ୍ରଛାତ୍ରୀମାନଙ୍କ ଠାରୁ ମାସିକ ଏକ ଟଙ୍କା କରି ଛପା ରସିଦ ମାଧ୍ୟମରେ ଆଦାୟ କରାଯାଏ । ଏହା ସ୍କୁଲ କମିଟିଙ୍କ ଅନୁମୋଦନ କ୍ରମେ କାର୍ଯ୍ୟକାରୀ ହୋଇଛି । ଏଥିରୁ ସଂଗୃହୀତ ଚାନ୍ଦା ବହୁତ ସାହାଯ୍ୟ କରିଛି ।''

ତାପରେ ପଚାରିଲେ, "ଏତେଗୁଡ଼ିଏ ରେକର୍ଡ଼ ଓ ଫାଇଲରେ କେବଳ ଆପଣଙ୍କ ସୁନ୍ଦର ହସ୍ତାକ୍ଷର ସ୍ଥାନ ପାଇଛି । ଏସବୁ କରିବାକୁ ଆପଣ କିପରି ସମୟ ସୃଷ୍ଟି କରନ୍ତି କହନ୍ତୁ ।''

ମୁଁ କହିଲି, "ସବୁବେଳେ ଏକ ଆଦର୍ଶ ପନ୍ଥରେ ଅନୁଧାବନ କରିବା ଓ ଅଧିକରୁ ଅଧିକ ଅଗ୍ରଗତି କରିବା ପାଇଁ ମୁଁ ସର୍ବଦା ଚେଷ୍ଟିତ । ପ୍ରବଳ ଇଚ୍ଛା ଶକ୍ତି, ନିଷ୍ଠା ଓ ପ୍ରଶଂସିତ ହେବା ଲକ୍ଷ୍ୟ ରଖିଲେ ଏପରି କାର୍ଯ୍ୟ ପାଇଁ ସମୟ ଆପେ ଆପେ ସୃଷ୍ଟି ହୋଇଯିବ । କେବଳ ଆବଶ୍ୟକ ଆନ୍ତରିକତା ଓ ଦୃଢ଼ଇଚ୍ଛା ଶକ୍ତି । ମୁଁ ଦିନରାତି ଏଠାରେ ରହେ । ତେଣୁ ଟିକିଏ ସମୟ ପାଇଲେ କିଛି ଗୋଟାଏ କରିବାରେ ମନୋନିବେଶ କରେ । ଅବସାଦ ବା କ୍ଳାନ୍ତି ଅନୁଭବ କରି ମୁଁ କେବେ ମୋ ଲକ୍ଷ୍ୟ ପଥରୁ ବିଚ୍ୟୁତ ହୋଇନାହିଁ ।''

ସେଦିନ ଆମ ବିଦ୍ୟାଳୟ ପରିଦର୍ଶନ ପରେ ଅଫିସ ଘରେ ବସି ମୋର ଯାବତୀୟ ରେକର୍ଡ଼ ଓ ଫାଇଲଇତ୍ୟାଦି ଦେଖି ଖୁବ୍ ଆନନ୍ଦିତ ହେଲେ । ଯିବା ପୂର୍ବରୁ ସେ ମୋତେ ପଚାରିଲେ, "ଆପଣଙ୍କ ଯୋଗ୍ୟତା ବିଷୟରେ କିଛି ପଚାରି ନାହିଁ।

କହିବେ କି ?'' ଏହି ଗୋଟିଏ ଦିନରେ ଆମ ଦୁହିଁଙ୍କ ମଧ୍ୟରେ ବେଶ୍ ଆତ୍ମୀୟତା ସୃଷ୍ଟି ହୋଇ ଯାଇଥାଏ । ତେଣୁ ମୁଁ କହିଲି ମୋର ଯୋଗ୍ୟତା ଏମ୍.ଏସ୍.ସି । ହଠାତ୍ ସେ ଚମକି ପଡ଼ି କହିଲେ, "ହ୍ୱାଟ୍ ? ଏ ଆପଣ କଅଣ କହୁଛନ୍ତି । ଆପଣ କୌଣସି କଲେଜ ବା ୟୁନିଭରସିଟିରେ ଯୋଗ ନଦେଇ ଏ ପ୍ରାଇମେରୀ ସ୍କୁଲରେ କେଉଁଥି ପାଇଁ ?''

ମୁଁ ହସି ହସି କହିଲି - "ମୁଁ ମୋ ଯୋଗ୍ୟତା ଅନୁରୂପ ଚାକିରିଟିଏ ପାଇଁ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ । 'ଏହାହିଁ ମୋର କଲେଜ ଏବଂ ୟୁନିଭର୍ସିଟି ମଧ୍ୟ ।''

ତଥାପି ସେ ମୋ ମୁଖକୁ ପ୍ରଶ୍ନିଳ ଦୃଷ୍ଟିରେ ଅନାଇବାରୁ ମୁଁ କହିଲି, "ମୋ ଏମ୍.ଏସ୍.ସି. ଏକ ସ୍ୱତନ୍ତ୍ର ଡ଼ିଗ୍ରୀ । ତେଣୁ ଆପଣ ତାକୁ ସହଜରେ ବୁଝିଯିବା ପାଇଁ କହୁଛି - ଏମ୍ ରୁ ମିଡ଼ିଲ୍ ଏସ୍‌ରୁ ସ୍କୁଲ ଏବଂ ସିରୁ ସାର୍ଟିଫିକେଟ । ମୁଁ ମିଡ଼ିଲ ସ୍କୁଲ ସାର୍ଟିଫିକେଟ ପାଇ ଟ୍ରେନିଂ ଅଧ୍ୟାୟ ପରେ ବିଧିବଦ୍ଧ ଭାବରେ ଶିକ୍ଷକତା କରୁଛି । ମୋର ଆପଣମାନଙ୍କ ପରି M.Sc.ନହୋଇ M.S.C. ଅଟେ ।'' ସେତେବେଳକୁ ମୋ ଶିକ୍ଷକମାନେ ସମସ୍ତେ ଅଫିସ ଦୁଆର ମୁହଁରେ ଛିଡ଼ା ହୋଇଥାନ୍ତି । ମୋ କଥା ସରିବା ପରେ ଦୀନବନ୍ଧୁ ବାବୁଙ୍କ ସହିତ ସମସ୍ତେ ଠୋ, ଠୋ ହସି ଉଠିଥିଲେ । ଏହି କୌତୁକାବହ ଘଟଣାଟି ମୋର ଅନେକ ସମୟରେ ମନେ ପଡ଼ିଯାଏ ।

କହିବା ନିଷ୍ପ୍ରୟୋଜନ ଯେ ଦୀନବନ୍ଧୁ ବାବୁ ଅଧ୍ୟକ୍ଷ ଥିବା ପର୍ଯ୍ୟନ୍ତ ଆମ ସ୍କୁଲରେ ଅନେକ ଥର ଶିକ୍ଷକ ପ୍ରଶିକ୍ଷଣ ଅବାରିତ ଗତିରେ ଚାଲିଥିଲା । ଯୋଗ ଦେଉଥିବା ଶିକ୍ଷକମାନେ ଦୈନିକ ଭତ୍ତା ମଧ୍ୟ ପାଉଥିଲେ ।

ଦୀନବନ୍ଧୁ ବାବୁ ଆମ ସ୍କୁଲରୁ ଯିବାପୂର୍ବରୁ ପୁଣିଥରେ ସ୍କୁଲର କୋଠରୀଗୁଡ଼ିକ, କାନ୍ଥରେ ଥିବା ଚିତ୍ର ମଟୋ, ଫଟୋ ଓ ନୀତିବାଣୀଗୁଡ଼ିକ ପ୍ରତି ଦୃଷ୍ଟି ନିକ୍ଷେପକରି ପୁନର୍ବାର ଅଫିସକୁ ଫେରିଆସି କହିଲେ, "– ସୁଦୂର ମଫସଲରେ ଏପରି ଗୋଟିଏ ବିଦ୍ୟାଳୟ ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ । ଆପଣ ଦୁଇଦିନ ପରେ ଆମ ଶିକ୍ଷା ପ୍ରତିଷ୍ଠାନ ୮ ନମ୍ବର ୟୁନିଟ୍‌କୁ ଯିବେ । ହୁଏତ ଅନ୍ତତଃ ୩/୪ ଦିନ ଯିବାକୁ ପଡ଼ିପାରେ । ଆପଣ କିପରି ଏତେବଡ଼ ବିଲ୍‌ଡ଼ିଂ, ଏପରି ଅଫିସ ଓ ଶୃଙ୍ଖଳିତ ଢ଼ଙ୍ଗରେ ୧୨ ଜଣ ଶିକ୍ଷକଙ୍କୁ ନେଇ ଆଶାତୀତ ସଫଳତା ଲାଭ କରିପାରିଛନ୍ତି, ତାହା ଜାଣିବା ପାଇଁ ମୁଁ ଏକ ଇଣ୍ଟରଭିଉ କରିବି ଓ ପ୍ରତ୍ୟେକ ବିଷୟକୁ ଭାଗ ଭାଗ କରି ଆମ

'ଶିକ୍ଷାଲୋକ' ପତ୍ରିକାରେ ସ୍ଥାନ ଦେବି । ବିଶେଷ କରି ସ୍କୁଲର ନୂତନ ଗୃହ ପାଇଁ ଆପଣ ଏତେ ପରିମାଣର ଅର୍ଥ ସଂଗ୍ରହ କରିଥିବା ମୋତେ ଆଶ୍ଚର୍ଯ୍ୟ ଚକିତ କରି ପକାଇଛି । ପ୍ରାଇମେରୀ ବିଦ୍ୟାଳୟରେ କ୍ୟାସ୍ ବୁକ୍ ମୋ ପାଇଁ ସ୍ୱପ୍ନର ବିଷୟ ହୋଇ ପଡ଼ିଛି ।''

ମୁଁ ଯଥା ସମୟରେ ଅଫିସରେ ଉପସ୍ଥିତ ହେଲି । ସେଠାରେ ମୋର ପ୍ରିୟ ପ୍ରଫେସର ଜଗନ୍ନାଥ ମହାନ୍ତି ଓ ଛାତ୍ର (ପ୍ରଫେସର) ଭାଗ୍ୟଧର ମହାନ୍ତି କାର୍ଯ୍ୟରତ ଥାଆନ୍ତି । ମୋତେ ବହୁ ଆଦର ସମ୍ମାନ ଦେଖାଇବାରେ ସେ ଦୁହେଁ ଆଦୌ ତ୍ରୁଟି କରି ନଥିଲେ । ମୁଁ କ୍ରମାଗତ ଚାରିଦିନ ଇଣ୍ଟରଭିଉ ଦେଲି । 'ଶିକ୍ଷାଲୋକ'ରେ ଗୋଟିଏ ଥର ମୋ ଇଣ୍ଟରଭିଉକୁ ଆଧାର କରି ଲେଖାଟିଏ ବାହାରିବା ଦେଖିଛି । ତାହାପରେ 'ଶିକ୍ଷାଲୋକ'ରେ କେତେଥର ବାହାରିଲା ଜାଣିପାରି ନଥିଲି ।

ମୁଁ ପ୍ରତିଷ୍ଠାନକୁ ଚାରିଥର ଯାଇଛି । ପ୍ରତିଦିନର ଯାତାୟତ ଖର୍ଚ୍ଚ ସଙ୍ଗେ ସଙ୍ଗେ ମୋତେ ଦିଆ ଯାଉଥିଲା । ଚା' ଓ ଜଳଖିଆତ ସାଧାରଣ କଥା ।

ମୋ ସଂପର୍କରେ ଦୀନବନ୍ଧୁ ବାବୁ ଗୁଡ଼ିଏ ସ୍କୁଲରେ ପ୍ରଚାର କରି ଆତ୍ମସନ୍ତୋଷ ଲାଭ କରିଥିଲେ । ମାତ୍ର ଶିକ୍ଷକମାନେ ମୋର କାର୍ଯ୍ୟ ପ୍ରଣାଳୀକୁ ଭଲ ଦୃଷ୍ଟିରେ ଦେଖି ନଥିବାର ଖବର ମୁଁ ପାଇଲି ।

ସଂସ୍କାରପ୍ରୟାସୀ, ଅନୁସନ୍ଧିତ୍ସୁ ଦୀନବନ୍ଧୁବାବୁ ଭୁବନେଶ୍ୱରର ଅନେକ ସ୍କୁଲରେ ମେଟ୍ରିକ ପଦ୍ଧତି, ବିଜ୍ଞାନ ଶିକ୍ଷାଦାନ ଆଦି ଆୟୋଜନ କରି ତହିଁରେ ନିଜେ ଶିକ୍ଷାଦାନ ଦେଉଥିଲେ । ମୋତେ ଓ ଅନ୍ୟ କେତେଜଣ ମଫସଲର ଶିକ୍ଷକଙ୍କୁ ଉକ୍ତ ଶିକ୍ଷାଦାନ କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରୁଥିଲେ ।

ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ବିଭିନ୍ନ ପ୍ରୋଜେକ୍ଟ ଯଥା - ହସ୍ତାକ୍ଷର ଲିଖନ ପ୍ରଣାଳୀ, ଛାତ୍ରସଂଖ୍ୟା ବୃଦ୍ଧି ପାଇଁ ଅପଚୟ(Drop-out) ନିରାକରଣ, ବିଭିନ୍ନ ଶିକ୍ଷା ସମ୍ବନ୍ଧୀୟ ପ୍ରବନ୍ଧ, ସିଲାବସ୍‌ରେ ପରିବର୍ତ୍ତନ ଆଦି ବହୁ ପ୍ରୋଜେକ୍ଟ ଓ ତହିଁରେ ପୁରସ୍କାରର ବ୍ୟବସ୍ଥା କରିଥିଲେ । ମୁଁ ୨/୩ ପ୍ରୋଜେକ୍ଟରେ କାମ କରିଥିଲେ ମଧ୍ୟ Drop-out ସମ୍ପର୍କରେ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲି ।

ଦୀନବନ୍ଧୁ ବାବୁ ପ୍ରଥମ ଶ୍ରେଣୀପାଇଁ ଏକ ଅକ୍ଷର ଶିକ୍ଷାବହିର ପାଣ୍ଡୁଲିପି ଲେଖି ତାହାକୁ ଦେଖିବାପାଇଁ ମୋତେ ଓ ରାଧାମୋହନ ବାବୁଙ୍କୁ ଡାକିଥିଲେ ତାଙ୍କ କ୍ୱାର୍ଟରକୁ ।

ମୁଁ ସେଥିରେ ଯୋଗ ଦେଇ କେତେକ ପରିବର୍ତ୍ତନ ପାଇଁ ପ୍ରସ୍ତାବ (suggestion) ଦେଲି ଓ ସେ ତାହା ସାଦରେ ସ୍ୱୀକାର କରି ମୁଁ ଯେ ବହୁ ପାଠ୍ୟପୁସ୍ତକ ରଚନା କରି ଯଥେଷ୍ଟ ଅଭିଜ୍ଞତା ଲାଭ କରିଛି, ଏକଥା ମଧ୍ୟ କହିବାକୁ ଭୁଲି ନଥିଲେ ।

ଦୀନବନ୍ଧୁ ବାବୁଙ୍କ ପରେ ଆଉ କିଏ କିଏ ପ୍ରତିଷ୍ଠାନର ଡାଇରେକ୍ଟର ହୋଇ ଆସିଥିଲେ ମୋର ମନେ ନାହିଁ; ମାତ୍ର ସେମାନେ ସମସ୍ତେ ଆମରି ପ୍ରତାପଶାସନ ଉ.ପ୍ରା.ରେ ସେମାନଙ୍କର ଯାବତୀୟ ସ୍କିମ୍‌କୁ କାର୍ଯ୍ୟକାରୀ କରୁଥିଲେ ।

ଶେଷରେ ପ୍ରଫେସର ବିଧୁଭୂଷଣ ଦାସ ଡାଇରେକ୍ଟର ହୋଇ ଆସିବା ପରେ ଆମ ସ୍କୁଲ ପରିଦର୍ଶନରେ ଆସିଥିଲେ । ମୋ ସହିତ ବହୁ ଯୁକ୍ତିତର୍କ ହେଲା । ସେ ମୁଁ ଅନୁସରଣ କରିଥିବା ପଦ୍ଧତି ଦ୍ୱାରା ବହୁଳାଂଶରେ ଅପଚୟ (Drop-out)ନିରାକରଣ ହେଉଛି ଏହା ସ୍ୱୀକାର କରିନଥିଲେ । ଦୂରବର୍ତ୍ତୀ ଏକ ବିଦ୍ୟାଳୟ (ସରକଣା ଉ.ପ୍ରା.ରେ) ମୁଁ ଏଠାରେ ଯେପରି ଯାହା କରିଛି, ସେହି ନୀତି ପ୍ରୟୋଗ କରି ସଫଳତା ଦେଖାଇବା ପାଇଁ ଖୁବ୍ ଜିଦ୍ କରିଥିଲେ । ଅବଶ୍ୟ ଏକଥା ସତ ଯେ ସରକଣା ବାଲକାଟି ନୁହେଁ । ତତ୍ରତ୍ୟ ଶିକ୍ଷକମାନେ ମୋ ଅଧୀନରେ ନଥିଲେ ତେଣୁ ବାଲକାଟିରେ ଯେଉଁ ସଫଳତା ମିଳିଲା, ତାହା ସରକଣାରେ ସଂପୂର୍ଣ୍ଣ କାର୍ଯ୍ୟକାରୀ ହେବା ଆଦୌ ସମ୍ଭବ ନୁହେଁ ।

ତଥାପି ମୁଁ ଦୃଢ଼ ମନୋବଳ ନେଇ ଅଗ୍ରସର ହେବାର ପ୍ରତିଶ୍ରୁତି ଦେଲି । ସରକଣାର ପ୍ରଧାନ ଶିକ୍ଷକ ମୋର ଛାତ୍ର, ତାକୁ ଡକାଇ ସବିଶେଷ ଆଲୋଚନା କଲି ଓ ନିଜେ କ୍ରମାଗତ ଏକମାସ ପର୍ଯ୍ୟନ୍ତ ସରକଣା ଯାଇ ଅନୁପସ୍ଥିତ ରହୁଥିବା ଛାତ୍ରମାନଙ୍କ ଘରକୁ ଯାଇ ସେମାନଙ୍କୁ ପୁନର୍ବାର ବିଦ୍ୟାଳୟକୁ ଆଣିବାର ବ୍ୟବସ୍ଥା କରିଥିଲି । ପ୍ରାୟ ୬୦-୬୭ ଭାଗ କୃତକାର୍ଯ୍ୟ ହୋଇଥିବା ପ୍ରମାଣିତ ହୋଇଥିଲା ।

ମୋର ଦୃଢ଼ମତ ଓ ଅଭିଜ୍ଞତାରୁ ଜାଣିଛି ଶିକ୍ଷକ / ଶିକ୍ଷକମାନେ ଆନ୍ତରିକତା ପ୍ରକାଶ ପୂର୍ବକ ନିଷ୍ଠାପର ଉଦ୍ୟମ କଲେ ବିଦ୍ୟାଳୟର ଉନ୍ନତି ଅବଶ୍ୟମ୍ଭାବୀ - ଏଥିରେ ମୋର ତିଳେ ବି ସନ୍ଦେହ ନାହିଁ ।

## ପାଠ୍ୟପୁସ୍ତକର ଜାତୀୟକରଣରେ ମୋର ଭୂମିକା

ସରକାରୀ ପାଠ୍ୟପୁସ୍ତକକୁ ଜାତୀୟକରଣ କରିବା ନିଷ୍ପତ୍ତି ମୋ ପରି ପାଠ୍ୟପୁସ୍ତକ ଲେଖକମାନଙ୍କର ଗୁରୁତର ଆର୍ଥିକ କ୍ଷତି ସାଧନ କଲା । ତଥାପି ସାହସର ସହିତ ମୁଁ କେତେକ ପାଣ୍ଡୁଲିପି ଲେଖି ଦାଖଲ କରିଥିଲି । ଆଶାଥିଲା, ଖଣ୍ଡେ ଦିଖଣ୍ଡ

ମଂଜୁର ହେବ; ମାତ୍ର ଲେଖାଗୁଡ଼ିକରୁ ମାତ୍ର ୨/୩ ଟି ବିଷୟ ଗୃହୀତ ହେଲା ଓ ସେ ବାବଦରେ କିଛି ଟଙ୍କା ଏକକାଳୀନ ଦିଆଯାଇଥିଲା । ମୁଁ ଆଉ ସେ ଦିଗରେ ମନୋନିବେଶ କରିନଥିଲି ।

କିଛିଦିନ ପରେ ଦିନେ ଭୁବନେଶ୍ୱର ଡି.ଆଇ.ବାମନ ଚରଣ ଦାସ ମୋତେ ଡକାଇ କହିଲେ – "ପ୍ରଚଳିତ ସରକାରୀ ପାଠ୍ୟପୁସ୍ତକରେ ଅନେକ ତ୍ରୁଟି ବିଚ୍ୟୁତି ଅଛି । ସେ ସମସ୍ତ ତୁମ ନଜରରୁ ବର୍ତ୍ତି ନଥିବ । ସେ ସବୁକୁ ଏକ ପ୍ରବନ୍ଧ ଆକାରରେ ଲେଖିରଖ । ମୁଁ ଆମ ଶିକ୍ଷାଜିଲାରୁ ତୁମକୁ ସମ୍ବଲପୁର ବୁକ୍ସ ହିଲର ଟ୍ରେନିଂ ସ୍କୁଲକୁ ପଠାଇବି । ଡି.ପି.ଆଇ. ଓ ବୁର୍ଲା ବିଶ୍ୱବିଦ୍ୟାଳୟର କିଛି ଶିକ୍ଷାବିତ୍ ବାହାରୁ ମହାପାତ୍ର ନୀଳମଣି ବାବୁ ଓ ଅନ୍ୟକିଛି ସାହିତ୍ୟିକଙ୍କ ଉପସ୍ଥିତିରେ ଏକ ଆଲୋଚନା ହେବ । ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ଜଣାଇବି । ତୁମେ ସବୁ ପାଠ୍ୟପୁସ୍ତକର ତ୍ରୁଟି ସଂପର୍କରେ ଏକ ବିବରଣୀ ଲେଖିରଖ ।"

ତାହାହିଁ ହେଲା । ମୁଁ ୧ମରୁ ୫ମ ପର୍ଯ୍ୟନ୍ତ ବହିରେ ଅନେକ ତ୍ରୁଟିକୁ ଲେଖି ନେଇ ଉପସ୍ଥାପିତ କରିଥିଲି । ବହି ମଧ୍ୟ ସେଠାରେ ମୁକାବିଲା ପାଇଁ ରଖା ଯାଇଥାଏ । ସବୁ ଶୁଣିବା ପରେ ବିଶେଷଜ୍ଞ ମଣ୍ଡଳୀ ମୁଁ ଖୁବ୍ ଉତ୍ତମ ଭାବରେ ବହିଗୁଡ଼ିକର ତ୍ରୁଟିକୁ ଅନୁଧ୍ୟାନ କରିଥିବାରୁ ପ୍ରଶଂସା କଲେ ।

ସର୍ବଶେଷରେ ମୁଁ ୪ର୍ଥ ଶ୍ରେଣୀର ସାମାଜିକ ପାଠରେ ଓଡ଼ିଶାର ଲୋକସଂଖ୍ୟା ଦିଆଯାଇ ପରେ ପରେ ସ୍ତ୍ରୀ ଓ ପୁରୁଷଙ୍କ ସଂଖ୍ୟା ପୃଥକ ଭାବରେ ଉଲ୍ଲେଖ କରାଯାଇଥାଏ । ମାତ୍ର ପୁରୁଷ + ସ୍ତ୍ରୀ କରି ଦେଖିଲେ ମୋଟ ଲୋକ ସଂଖ୍ୟାରୁ ୭ ବା ୮ ଜଣ ଅଧିକ ଥିବାର ଦେଖାଗଲା । ଏଥିରେ ପ୍ରଫୁଲ୍ଲ ପତି ହସି ହସି କହିଲେ, – "ପିଲାମାନେ ଯଦି ପଚାରନ୍ତି ୮ ଜଣ ପୁରୁଷ ନା ସ୍ତ୍ରୀ, ଆପଣ କି ଉତ୍ତର ଦେବେ ?" ମୁଁ ଆଦୌ ଚିନ୍ତା ନକରି କହିଲି, ପିଲାଙ୍କୁ କହିବି ଏମାନେ ପାଠ୍ୟପୁସ୍ତକ ଲେଖକ । ତେଣୁ ସ୍ତ୍ରୀ କିମ୍ବା ପୁରୁଷ ନୁହନ୍ତି ।" ଅଳ୍ପ ସମୟ ପାଇଁ ଏକ ହାସ୍ୟରୋଳ ସୃଷ୍ଟି ହୋଇଥିଲା ।

## ଅବସର ଗ୍ରହଣ

୧୯୮୦ ମସିହା ନଭେମ୍ବର ୩୦ ତାରିଖ ଏକ ସ୍ମରଣୀୟ ଦିବସ । ମୁଁ ନିୟମ ଦୃଷ୍ଟିରୁ ୧୯୭୮ ନଭେମ୍ବରରେ ଅବସର ନେବା କଥା । ମାତ୍ର national

award ପାଇଥିବା ଶିକ୍ଷକରୂପେ ମୋତେ ଅଧିକ ଦୁଇବର୍ଷ ଅର୍ଥାତ୍ ୧୯୮୦ ପର୍ଯ୍ୟନ୍ତ ଚାକିରି କରିବାର ସୁଯୋଗ ମିଳିଥିଲା ।

ମୁଁ ସ୍କୁଲରୁ ମୋ ପ୍ରାଣପ୍ରିୟ ଛାତ୍ରଛାତ୍ରୀମାନଙ୍କଠାରୁ ମୋ ହାତଗଢ଼ା ସୁଦୃଶ୍ୟ ବିଶାଳ ଗୃହ, ଦୀର୍ଘ ୩୩ ବର୍ଷ ଧରି ବାଳକାଟି ଲୋକମାନଙ୍କ ସହିତ ଗଢ଼ି ଉଠିଥିବା ମଧୁର ସଂପର୍କ ଆଦିକୁ ପଛରେ ପକାଇ ଘରମୁହାଁ ହେବି ଏଇ ଚିନ୍ତା ମୋତେ ବ୍ୟଥିତ କରୁଥାଏ । ମୋର ପୁରାତନ ଛାତ୍ରଛାତ୍ରୀମାନେ କେତେ ବଡ଼ ବଡ଼ ଚାକିରୀରେ ନିଯୁକ୍ତ ଥାନ୍ତି । ପ୍ରାୟ ଅଧିକାଂଶଙ୍କ ପାଖକୁ ଏ ସଂବାଦ ଗଲା, ବାଳକାଟିର ଯୁବକମାନେ ସତ୍ୟପ୍ରିୟ ମହାନ୍ତିଙ୍କୁ ବିଦାୟ ସଂବର୍ଦ୍ଧନା ସଭାରେ ପୌରୋହିତ୍ୟ କରିବା ପାଇଁ ଅନୁରୋଧ କଲେ ଓ ସେ ଅତ୍ୟନ୍ତ ଆଗ୍ରହରେ ବିଦ୍ୟାଳୟରେ କରାଯାଇଥିବା ସୁସଜ୍ଜିତ ମଞ୍ଚରେ ତାଙ୍କ ଭାବପ୍ରବଣ ସାରଗର୍ଭକ ତଥା ଶିକ୍ଷଣୀୟ ଭାଷଣରେ ସମବେତ ସମଗ୍ର ଜନତାଙ୍କୁ ମନ୍ତ୍ରମୁଗ୍ଧ କରି ପକାଇଥିଲେ । ସତ୍ୟପ୍ରିୟ ବାବୁଙ୍କ ଭାଷଣରେ କି ଯାଦୁନିହିତ ଥାଏ, ତାହା ଶୁଣିଥିବା ଲୋକେ ହିଁ ଉପଲବ୍ଧି କରିଥିବେ । ତାଙ୍କ ସମୟରେ ଓଡ଼ିଶାରେ ଯେଉଁମାନେ ଅନର୍ଗଳ ବକ୍ତା ଭାବରେ ସୁପ୍ରତିଷ୍ଠିତ ଓ ପରିଚିତ ଥିଲେ, ସେମାନଙ୍କ ମଧ୍ୟରେ ସତ୍ୟପ୍ରିୟ ବାବୁ ଥିଲେ ଅନ୍ୟତମ । ଗୋଟିଏ ଶୁଖି ଆସୁଥିବା ପତ୍ର ଝଡ଼ା ଦେଇଥିବା ବୃକ୍ଷକୁ ମୁଁ ନିରତିଶୟ ଉଦ୍ୟମ କରି କିପରି ନୂତନ ପଲ୍ଲବ ପୁଷ୍ପ ଓ ଫଳଭାରରେ ମଣ୍ଡିତ କରି ସମଗ୍ର ଜିଲ୍ଲା ତଥା ରାଜ୍ୟର ଦୃଷ୍ଟି ଆକର୍ଷଣ କରି ପାରିଥିଲି ଓ ସେ କିପରି ଏକ ମରୁ ପ୍ରାନ୍ତରକୁ ଶସ୍ୟଶ୍ୟାମଳା କରିବାର ସ୍ୱପ୍ନକୁ ସାକାର କରିବା ପାଇଁ ମୋତେ ନିମାପଡ଼ା ପ୍ରାକ୍ଟିସିଂ ଉ.ପ୍ରା.ରୁ ବହୁ ବାଧା ଅତିକ୍ରମ କରି ବାଳକାଟିକୁ ଆଣିଥିଲେ ତାହା ବର୍ଣ୍ଣନା କରି ମୋତେ ପ୍ରଶଂସାରେ ପୋତି ପକାଇଥିଲେ ।

ବହୁ ଉପଢୌକନ, ବସ୍ତ୍ର, ଛତା ବିଶେଷ କରି ବାଳକାଟିର ପ୍ରସିଦ୍ଧ ଅନେକ କଂସାବାସନ, ମୋତେ ଉପହାର ରୂପେ ଦିଆ ଯାଇଥିଲା । ମୁଁ ସପ୍ତାହରେ ୨/୩ ଦିନ ନିଶ୍ଚୟ ଏହି ସ୍କୁଲକୁ ଆସିବି ବୋଲି ଗ୍ରାମବାସୀମାନଙ୍କୁ ଜଣାଇଥିଲି ଓ ମୋ କଥା ରକ୍ଷା କରିଥିଲି ।

△△△



୧୯୬୨ ମସିହାରେ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଠାରୁ
ରାଷ୍ଟ୍ରପତି ପୁରସ୍କାର ଗ୍ରହଣ...



ନିଜ ସହକର୍ମୀ ମାନଙ୍କ ଗହଣରେ ପ୍ରତାପ ଶାସନ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ନାୟକ...



ଶିକ୍ଷା ସନ୍ଧାନ ପରିସରରେ ବେଙ୍ଗୁଲୀ ହେଲା ରାଣୀ ଓ ଲୁହ ପାଲଟିଲା ମୁକ୍ତା
ପୁସ୍ତକଦ୍ୱୟର ଉନ୍ମୋଚନ ଉତ୍ସବରେ ଶ୍ରୀଯୁକ୍ତ ନାୟକ...

ପରିସ୍ଥିତି ଚାପରେ ଅଳ୍ପବୟସରେ ପାଠପଢା ଛାଡିବା ପରେ ନିମାପଡା ଅଞ୍ଚଳରେ ଗୋଟିଏ ଛୋଟ ପ୍ରାଥମିକ ବିଦ୍ୟାଳୟରେ ୧୯୩୫ ମସିହାରେ ଆରମ୍ଭ ହୋଇଥିଲା ଜଣେ ଶିକ୍ଷକଙ୍କର ଜୀବନ । ଘଟଣାଚକ୍ରରେ ଆଦରି ନେଇଥିବା ଜୀବିକା ପାଲଟିଗଲା ଅନଗ୍ରସର ଅଞ୍ଚଳରେ ଶିକ୍ଷା ପ୍ରସାର କରିବା ପାଇଁ ଏକ ଆହ୍ୱାନରେ, ନିଜ ଚେଷ୍ଟାରେ ଅଧିକରୁ ଅଧିକ ଜ୍ଞାନ ଅର୍ଜନ କରିବାର ଉଦ୍ୟମରେ ଓ ଅଦମ୍ୟ ଉତ୍ସାହରେ ନୂତନ ଶିକ୍ଷାନୁଷ୍ଠାନ ଓ ଛାତ୍ରଛାତ୍ରୀଙ୍କ ଜୀବନ ଗଢିବାରେ । ଏ ପ୍ରଚେଷ୍ଟାରେ ନୂଆ କିଛି କରିବାର ଆଶା ଉନ୍ମାଦନା ତ ଥିଲା, ଥିଲା ବି ବିଫଳତାର ବହୁ ଅଭିଜ୍ଞତା ଓ ସଂଘର୍ଷ । **ଶିକ୍ଷକର ଜୀବନସ୍ମୃତି** ଏଇ ସଂଘର୍ଷର କାହାଣୀ ।

ଶ୍ରୀ କାଶୀନାଥ ନାୟକ (ଜନ୍ମ ୧୯୧୯ ମସିହା) । ଦୀର୍ଘ ୪୫ ବର୍ଷ ଶିକ୍ଷକ ଭାବରେ କାମ କରିବା ପରେ ୧୯୮୦ରେ ଅବସର ଗ୍ରହଣ କରିଥିଲେ । ୧୯୬୨ ମସିହାରେ ଶିକ୍ଷା ଓ ପାଠ୍ୟପୁସ୍ତକ ରଚନା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ତାଙ୍କୁ ରାଷ୍ଟ୍ରପତି ପୁରସ୍କାର ମିଳିଥିଲା ।